# ମନର ମଣିଷ

# ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ର



ସୁଶୀଲ ରଞ୍ଜନ ଦାସ

# ମନର ମଣିଷ
# ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ର

## ପ୍ରଥମ ଭାଗ

ଲେଖକ :— ସୁଶୀଲ ରଞ୍ଜନ ଦାସ

ଲେଖକ: **ସୁଶୀଲ ରଞ୍ଜନ ଦାସ**
ଇଶାମ ନଗର
ପୋଷ୍ଟ:/ଜିଲ୍ଲା: ବାଲେଶ୍ୱର

ପ୍ରକାଶକ: **ଶ୍ରୀଗୁରୁ ଅନୁକୂଳାଶ୍ରମ**
ଇଶାମ ନଗର
ବାଲେଶ୍ୱର– ୭୫୬୦୦୧

ପ୍ରଥମ ସଂସ୍କରଣ: ୧୯୭୭
ଦ୍ୱିତୀୟ ସଂସ୍କରଣ: ୧୯୯୮

ମୁଦ୍ରାକର: ଛାତ୍ରସାଥୀ ପ୍ରେସ, କାଳୀଗଳି, କଟକ – ୨

ମୂଲ୍ୟ: ଟ.୪୫/–



ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ର



ଦେଓଘର ଠାକୁର ବାଂଲା (ବରାଲ୍ ବାଂଲା)ର ବାରନ୍ଦାରେ
ଶ୍ରୀ ଶ୍ରୀ ଠାକୁରଙ୍କ ସମୀପରେ ଲେଖକ

# ପ୍ରଥମ ସଂସ୍କରଣର ଭୂମିକା

ଆଜି ଏହି ଭୂମିକା ଲେଖିବାକୁ ଯାଇ ଯେଉଁ କଥା ସର୍ବ ପ୍ରଥମେ ମନେ ପଡୁଛି, ତାହା ହେଉଛି ଶ୍ରୀମଦ୍ ଭଗବତ ଗୀତାର ସେହି କଥା।

"ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିମ୍
ଯତ୍ କୃପା ତଂ ଅହଂ ବନ୍ଦେ ପରମାନନ୍ଦ ମାଧବ।"

ଆଜି ଯେଉଁ ପୁସ୍ତକଟି ପ୍ରକାଶିତ ହେଲା ତାହା କେବଳ ମାତ୍ର ସମ୍ଭବ ହୋଇ ଉଠିଛି ମୋର ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ତଥା ସେହି ପରମାନନ୍ଦ ମାଧବ ଦୟାଳଙ୍କର ଆନୁକୂଲ୍ୟରେ। ପୁସ୍ତକ ଲେଖିବା ଦୂରେ ଥାଉ, ଖଣ୍ଡିଏ ଦୀର୍ଘ ଚିଠି ଲେଖିବାକୁ ଗଲେ ମୋତେ ଭଲ ଲାଗୁ ନଥାଏ। କିନ୍ତୁ ଇଂ ୧୯୫୩ ମସିହା ନଭେମ୍ବର ମାସରେ ଏକ ପ୍ରଭାତରେ ମଦ୍‌ଗୁରୁ ପୁରୁଷୋତ୍ତମ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଜନୈକ ବ୍ୟକ୍ତି ଦ୍ୱାରା ଦୋକାନରୁ କିଣି ଆଣି ମୋ ହାତରେ ତୋଳି ଦେଲେ ଖଣ୍ଡିଏ ଖାତା ଆଉ କଲମ। ସଙ୍ଗେ ସଙ୍ଗେ କହିଲେ– ଏହି ଖାତାରେ ଲେଖିବୁ ତୋର ମନର ସେହି କଥା ଯାହା ସତ୍ୟବୋଲି ମନେ କରିବୁ। କଳ୍ପନା ବିଳାସୀ ହେବୁନାହିଁ। ସଙ୍ଗେ ସଙ୍ଗେ ଆହୁରି କହିଲେ, ତୁ ମୋ ପରି ମୂର୍ଖ, ବିଦ୍ୟା ବା ଜ୍ଞାନର ଅହଂକାର କରିବାର କିଛି ନାହିଁ। ତେଣୁ ସିଧାସଳଖ ଯାହା ବୁଝିବୁ ମନର ସେହି କଥା ସବୁ ଲେଖି ରଖିବୁ ଆଉ ସୁଯୋଗ ସୁବିଧା କରି ପଢ଼ି ମୋତେ ଶୁଣାଇବୁ। ଅନାଇ ରହିଲି ଶ୍ରୀଶ୍ରୀ ଠାକୁରଙ୍କ ଆଡ଼କୁ। ଭାବିଲି କଣ କହୁଛନ୍ତି ଠାକୁର। ମୂର୍ଖ ହାତରେ ତୋଳି ଦେଲେ କଲମ– ଲେଖିବାକୁ କହିଲେ ମନର କଥା। ସେତେବେଳେ ଏହାର କୌଣସି ଅର୍ଥ ବୁଝିପାରିଲି ନାହିଁ। ଧୀରେ ଧୀରେ ଲେଖିବାକୁ ଆରମ୍ଭ କଲି। ଶ୍ରୀଶ୍ରୀ ଠାକୁର ମନଯୋଗ ସହକାରେ ମୋର ଲେଖିଥିବା କଥାଗୁଡ଼ିକ ଶୁଣନ୍ତି। ପୁରା ପଢ଼ା ହୋଇଯିବା ପରେ ଆହୁରି ଉତ୍ସାହିତ କରନ୍ତି, କହନ୍ତି– ଲେଖିଯାଅ, ଲେଖିଯାଅ, ଆହୁରି ଲେଖିଯାଅ। ସତ୍ୟ ଉପରେ ଯାହା ଜାଣୁଛ, ଯାହା ବୁଝୁଛ ତାହାହିଁ ଲେଖିବ। ମୁଁ ଲେଖକ ବା ସାହିତ୍ୟିକ କିଛି ନୁହେଁ। ତେଣୁ ଲେଖିବାର ବିଷୟ ବସ୍ତୁ ରହିଲା ମୋ ସମ୍ମୁଖରେ ମଦ୍‌ଗୁରୁ, ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର– ମୋର ମନର ମଣିଷ। ମୋର ଏହି ଲେଖା ପ୍ରଥମେ ବାହାରିଲା ଓଡ଼ିଆ ମାସିକ ପତ୍ରିକା ଉର୍ଦ୍ଧନାରେ।

ତାପରେ କ୍ରମାଗତ ବାହାରିବାକୁ ଆରମ୍ଭ କଲା ବଙ୍ଗଳା ସାପ୍ତାହିକ ଧୃତିଦୀପାରେ। ଦୁଇଟି ଯାକ ପତ୍ରିକାରେ ପାଞ୍ଚଛଅଟି ସଂଖ୍ୟାରେ ଲେଖା ବାହାରିବା ପରେ ଜାଣେ ନାହିଁ କାହାର ଅଜ୍ଞାତ ଇଙ୍ଗିତରେ ସେହିସବୁ ବହିରେ ଆଉ ମୋର ଲେଖା 'ମନର ମଣିଷ' ବାହାରିଲା ନାହିଁ। ଶ୍ରୀଶ୍ରୀ ଠାକୁର କିନ୍ତୁ ମୋତେ ଉତ୍ସାହିତ କରିବାକୁ ଲାଗିଲେ। କହିଲେ, ଲେଖିଯାଅ, ଲେଖିଯାଅ, ଯାହା ବୁଝିଛ, ଯାହା ଜାଣିଛ ସତ୍ୟ ଉପରେ ତାହା ଲେଖିବାରୁ ବିରତ ହୁଅ ନାହିଁ। ଏଆଡ଼େ ଚତୁର୍ଦ୍ଦିଗରୁ ବହୁ ଲୋକ ଚିଠି ଦ୍ୱାରା ଓ ମୌଖିକ ଭାବରେ ଉର୍ଜନା ଓ ଧୃତିଦୀପାରେ ଲେଖାଦେବାକୁ ଅନୁରୋଧ କଲେ। କିନ୍ତୁ ପୂର୍ବେ ହିଁ କହିଛି– କୌଣସି ଅଜ୍ଞାତ କାରଣ ବଶତଃ ସମସ୍ତଙ୍କର ଆଗ୍ରହ ସତ୍ତ୍ୱେ ଏହି ଲେଖାର ପ୍ରକାଶ ଓଡ଼ିଆ ଓ ବଙ୍ଗଳାରେ ବନ୍ଦ ହୋଇଛି। ପୂଜ୍ୟପାଦ ଛୋଟଦା, ଶ୍ରୀଯୁକ୍ତ ବିବେକ ରଞ୍ଜନ ଚକ୍ରବର୍ତ୍ତୀ ଯେ କି ସେତେବେଳର ଧୃତିଦୀପାର ସଂପାଦକ ଥିଲେ, ସେ ମଧ୍ୟ ମୋର ଲେଖାର ଖୁବ୍ ଉଚ୍ଚ ପ୍ରଶଂସା କରୁଥିଲେ ଏବଂ ମୋତେ ଲେଖିବାପାଇଁ ଉତ୍ସାହିତ କରୁଥିଲେ। ମାତ୍ର ତାଙ୍କର ବାରମ୍ବାର ଅନୁରୋଧ ସତ୍ତ୍ୱେ ଧୃତିଦୀପାରେ ଲେଖା ବାହାରିଲା ନାହିଁ। ଯାହାହେଉ ଶ୍ରୀଶ୍ରୀ ଠାକୁରଙ୍କର ଆଦେଶରେ ପୂର୍ବପରି ମୁଁ ଲେଖି ଚାଲିଲି। ବହୁ ବର୍ଷ ପରେ ସେହି ଲେଖା ସାର୍ଥକ ରୂପ ପରିଗ୍ରହ କଲା।

ଶ୍ରୀଶ୍ରୀ ଠାକୁରଙ୍କର ଆଦେଶ ଯେ କେତେ ବାସ୍ତବ ତାହାର ପ୍ରମାଣ ହେଲା, ଆଜିର ଏହି ପୁସ୍ତକ **"ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର"**। ଏହି ପୁସ୍ତକର ପ୍ରକାଶନ ପାଇଁ ଶ୍ରୀଶ୍ରୀ ଠାକୁର ଯେଉଁ ମାନଙ୍କ ଦ୍ୱାରା ସବୁଠାରୁ ବେଶୀ ସାହାଯ୍ୟ କରିଛନ୍ତି ତାଙ୍କର ସେ ସନ୍ତାନମାନଙ୍କ ପାଖରେ ମୁଁ କୃତଜ୍ଞ। ଓଡ଼ିଶାର ବିଖ୍ୟାତ ବିପ୍ଳବୀ ସାହିତ୍ୟିକ ଶ୍ରଦ୍ଧେୟ ୰ ଡକ୍ଟର ମାୟାଧର ମାନସିଂ ଏହି ପୁସ୍ତକ ପ୍ରକାଶ କରିବାପାଇଁ ଖୁବ୍ ଚେଷ୍ଟା କରିଥିଲେ। ତାଙ୍କର ସନିର୍ବନ୍ଧ ଅନୁରୋଧ ଓ ତାଙ୍କର ସୁଯୋଗ୍ୟ ଶିଷ୍ୟ ସାହିତ୍ୟିକ ତଥା ଅଧ୍ୟାପକ ଶ୍ରୀଯୁକ୍ତ ମଦନ ମୋହନ ମିଶ୍ର ଯେ କି ପ୍ରଥମ ଏହି ବହି ନିଜ ହସ୍ତରେ ଲେଖିବାକୁ ଆରମ୍ଭ କରିଥିଲେ ଓ ଶ୍ରୀଯୁକ୍ତ ମାୟାଧର ମାନସିଂଙ୍କର ସଂପାଦନାରେ ଓ ଅଧ୍ୟାପକ ଶ୍ରୀ ମଦନମୋହନ ମିଶ୍ରଙ୍କର ସହ ସଂପାଦନାରେ ଏହି ଲେଖା ସର୍ବପ୍ରଥମ ପ୍ରକାଶିତ ହୁଏ ଓଡ଼ିଆ ମାସିକ ପତ୍ରିକା ଉର୍ଜନାରେ। ଏହି ବହି ପ୍ରକାଶିତ ହେବାର ପ୍ରାରମ୍ଭରେ ସର୍ବପ୍ରଥମ ଶ୍ରଦ୍ଧେୟ ଡକ୍ଟର ମାୟାଧର ମାନସିଂ ଏବଂ ଶ୍ରୀଯୁକ୍ତ ମଦନ ମୋହନ ମିଶ୍ରଙ୍କ ପ୍ରତି ଗଭୀର ପ୍ରୀତିପୂର୍ଣ୍ଣ ଶ୍ରଦ୍ଧା ଜଣାଉଛି।

ଏହା ବ୍ୟତୀତ ଶ୍ରୀମାନ ମଧୁସୂଦନ ଦାଶ ଏମ. ଏ, ବି.ଏଡ୍, ଶ୍ରୀମାନ୍ ପରେଶ ଚନ୍ଦ୍ର ପାତ୍ର ବି. ଏସ.ସି, ବି.ଏ.ଡ୍., ଡାଃ. ସତ୍ୟନାରାୟଣ ପଟ୍ଟନାୟକ ଏମ୍. ବି. ବି. ଏସ୍., କୁମାରୀ ଆହୁତୀରାଣୀ ଦାସ ବି.ଏ., ଶ୍ରୀମାନ୍ ଉମେଶ ଚନ୍ଦ୍ର ପାତ୍ର, କଟକ ମେଡ଼ିକାଲ କଲେଜର ଦ୍ୱିତୀୟ ବାର୍ଷିକ ଛାତ୍ର, ପ୍ରିୟନାଥ ମହାକୁଡ଼ ଶିକ୍ଷକ ଇଞ୍ଚୁଡ଼ି ମି. ଇ. ସ୍କୁଲ, ଓ ଶ୍ରୀମାନ ଦେବେଶ ଚନ୍ଦ୍ର ପାତ୍ର, ଏକାଦଶ ଶ୍ରେଣୀର ଛାତ୍ର, ଏମାନଙ୍କର ଅକ୍ଲାନ୍ତ ପରିଶ୍ରମ ଓ ଏହା ସଙ୍ଗରେ ଆହୁରି ବହୁ ଭକ୍ତ ମଣ୍ଡଳୀର ଆନ୍ତରିକ ଇଚ୍ଛା ଓ ସର୍ବଦିଗରେ ସାହାଯ୍ୟ ଦ୍ୱାରାହିଁ ସମ୍ଭବ ହୋଇଛି ଏହି ପୁସ୍ତକ ପ୍ରକାଶ କରିବାକୁ। ଏ ପ୍ରସଙ୍ଗରେ ଆଉ ଜଣକର କଥା ମନେ ପଡ଼େ, ସେ ହେଉଛନ୍ତି ଶ୍ରୀମତୀ ଅନୀତା ପଟ୍ଟନାୟକ, ପାରଳାଖେମୁଣ୍ଡି କଲେଜର ପ୍ରିନ୍ସପାଲ୍ ଶ୍ରୀଯୁକ୍ତ ଶଶାଙ୍କ ଶେଖର ପଟ୍ଟନାୟକଙ୍କର ସହଧର୍ମିଣୀ। ଏ ପୁସ୍ତକ ପ୍ରକାଶରେ ତାଙ୍କର ଐକାନ୍ତିକ ଆଗ୍ରହ ଓ ବାରମ୍ବାର ଅନୁରୋଧ ମୋତେ ଉତ୍ସାହିତ କରିଛି। ଅନୀତା ମା' ବୟସରେ ମୋର କନ୍ୟାର ସମ ହେଲେ ମଧ୍ୟ ତାର ଶ୍ରୀଶ୍ରୀ ଠାକୁରଙ୍କ ଉପରେ ଭକ୍ତିପୂର୍ଣ୍ଣ ଆକର୍ଷଣ, ଈଶ୍ୱରୀୟ ପ୍ରେମ ଓ ଶ୍ରଦ୍ଧା ବହୁଳାଂଶେ ମୋତେ ଉତ୍ସାହିତ କରିଛି ଏହି ବହି ଛାପିବାରେ। କିନ୍ତୁ ପୁନରାୟ ମୁଁ ଜଣାଉଛି ସବୁ କିଛି ମୂଳର ମାଲିକ ସେହି ମୋର ଇଷ୍ଟଦେବତା ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର। ଇଂ ୧୯୬୯ ଜାନୁୟାରୀ ୨୭ ତାରିଖ ତାଙ୍କର ଲୀଳା ସାଙ୍ଗକରି ଭଗବତୀ ତନୁ ତ୍ୟାଗକରି ଚାଲିଗଲେ ମଧ୍ୟ ବିଭିନ୍ନ ପରିସ୍ଥିତି ଓ ଲୋକ ମାଧ୍ୟମରେ ପ୍ରତି ମୁହୂର୍ତ୍ତରେ ମୋତେ ସାହାଯ୍ୟ କରିଛନ୍ତି ଏହି ବହି ଛାପାଇବା ପାଇଁ। ଅଗଣିତ ନାରନାରୀ ତଥା ସେହି ଭକ୍ତ ସନ୍ତାନମାନଙ୍କ ପାଖରେ ମୁଁ ଚିରକୃତଜ୍ଞ ଯେଉଁମାନେ ମୋତେ ସାହାଯ୍ୟ କରିଛନ୍ତି ଶ୍ରୀଶ୍ରୀ ଠାକୁରଙ୍କର ଏହି ଦିବ୍ୟ ଜୀବନ ଛାପିବାରେ। ଆହୁରି ବହୁତ କିଛି ଲେଖାହୋଇ ରହିଛି। ପାଠକବର୍ଗର ଆଗ୍ରହ– ଇଚ୍ଛା ହେଲେ ଏହି ''ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର'' ଦ୍ୱିତୀୟ ସଂଖ୍ୟା ଛାପିବାର ଇଚ୍ଛା ରହିଲା।

**ବନ୍ଦେ ପୁରୁଷୋତ୍ତମମ୍।**

–ସୁଶୀଲ ରଞ୍ଜନ ଦାସ

# ଦ୍ୱିତୀୟ ସଂସ୍କରଣର ଭୂମିକା

ଶ୍ରୀଶ୍ରୀ ଠାକୁରଙ୍କୁ ଭଗବାନ, ପୁରୁଷୋତ୍ତମ କିମ୍ବା ଅବତାର ପୁରୁଷ ଇତ୍ୟାଦି
ଯେକୌଣସି ବିଶେଷଣରେ ବିଭୂଷିତ କଲେ ମଧ୍ୟ ଜଣାପଡ଼େ ଯେପରି ତାଙ୍କୁ
ଠିକ୍ ଭାବରେ ବର୍ଣ୍ଣନା କରାଗଲା ନାହିଁ, କିଛି ଊଣା ରହିଗଲା। ପ୍ରଥମତଃ,
ଶ୍ରୀଶ୍ରୀ ଠାକୁରଙ୍କ ବାସ୍ତବ ସ୍ୱରୂପକୁ ଉପଲବ୍ଧି କରିବା ଅତ୍ୟନ୍ତ କଷ୍ଟକର କଥା।
ଦ୍ୱିତୀୟତଃ, ଯଦିଓ କିଛି ପରିମାଣରେ ଉପଲବ୍ଧି କରିବା କାହାଦ୍ୱାରା ସମ୍ଭବ
ହୋଇପାରିଥାଏ, ତାହାକୁ ଭାଷାରେ ବର୍ଣ୍ଣନା କରିବା ଆହୁରି କଠିନ ହୋଇପଡ଼େ।
ବିଶାଳ ସମୁଦ୍ରର ବେଳାଭୂମିରେ ଛିଡ଼ା ହୋଇ କୂଳରେ ଭାଙ୍ଗି ପଡୁଥିବା ଲହରୀ
ଏବଂ ଦିଗନ୍ତ ବିସ୍ତୃତ ଜଳରାଶିର ପ୍ରଶାନ୍ତିକୁ ଦେଖି ଆମେ ସାମୟିକ ଭାବରେ
ମୁଗ୍ଧ ହୋଇଯାଉ। ସେ ଜଳରାଶିକୁ ବର୍ଣ୍ଣନା କରି ତାର ପରିଚୟ ପ୍ରଦାନ
କରିବାର ଧୃଷ୍ଟତା ଆମେ କରୁନାହୁଁ। ଶ୍ରୀଶ୍ରୀ ଠାକୁରଙ୍କୁ କେତେକାଂଶରେ ଉପଲବ୍ଧି
କରିବା ଏବଂ ତାଙ୍କୁ ବର୍ଣ୍ଣନା କରିବା ସତେ ଯେପରି ସମୁଦ୍ର ଦର୍ଶନ କରିବା
ଓ ବର୍ଣ୍ଣନା କରିବା ଭଳି ବ୍ୟାପାର।

ଜୀବନର ବିଭିନ୍ନ ଅଭିଜ୍ଞତା ମାଧ୍ୟମରେ ଶ୍ରୀଶ୍ରୀ ଠାକୁରଙ୍କୁ ମୁଁ ଯେପରି
ଭାବରେ ଦେଖିପାରିଛି, ତାକୁ ବ୍ୟକ୍ତ କରି ଶ୍ରୀଶ୍ରୀ ଠାକୁରଙ୍କ ବ୍ୟକ୍ତିତ୍ୱ ଓ
ଦର୍ଶନର ଏକ ସଂକ୍ଷେପ ରୂପରେଖ ଦେବା ମୋ ପକ୍ଷରେ ସମ୍ଭବ ହୋଇପାରି
ନାହିଁ। ଯେତେ ପ୍ରକାରେ କହିଲେ ମଧ୍ୟ ଶ୍ରୀଶ୍ରୀ ଠାକୁର ବେଶୀ ଭାଗ ଅବ୍ୟକ୍ତ
ହୋଇ ରହିଯାଆନ୍ତି।

ଶ୍ରୀଶ୍ରୀ ଠାକୁରଙ୍କୁ ବୁଝିବା ଓ ଜାଣିବାର ଏକ ସହଜ ଉପାୟ ହେଉଛି
ତାଙ୍କୁ ତାଙ୍କ ଲୀଳା ମାଧ୍ୟମରେ ଦେଖିବା। ତାଙ୍କ ଲୀଳା ମାଧ୍ୟମରେ ସେ
ପ୍ରକଟ ହୁଅନ୍ତି। ଭକ୍ତ ନିକଟରେ ସେ ଧରାଦିଅନ୍ତି। ସାଧନା ଓ ତପସ୍ୟା
ଦ୍ୱାରା ସେ ଅନୁଭୂତ ହୁଅନ୍ତି।

“ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ର” ହେଉଛି ଶ୍ରୀଶ୍ରୀ
ଠାକୁରଙ୍କ ଲୀଳାର ଗାଥା। ବିଭିନ୍ନ ଜୀବନ୍ତ ଓ ସହଜ ଘଟଣା ମାଧ୍ୟମରେ
ଶ୍ରୀଶ୍ରୀ ଠାକୁରଙ୍କ ବ୍ୟକ୍ତିତ୍ୱ ଏବଂ ଜୀବନ ଦର୍ଶନ ଏଥିବରେ ପରିବେଷଣ
ହୋଇଛି। ଭକ୍ତି, ତ୍ୟାଗ ଓ ତପସ୍ୟା ଦୃଷ୍ଟିକୋଣରୁ ଶ୍ରୀଶ୍ରୀ ଠାକୁରଙ୍କୁ ମୂଲ୍ୟାୟନ
କରିବାର ପ୍ରୟତ୍ନ କରାଯାଇଛି।

ଶ୍ରୀଶ୍ରୀ ଠାକୁରଙ୍କ ଭଗବତ୍ତା ବିଭିନ୍ନ ଆଲୋକରେ ଉଦ୍‌ଭାସିତ ହୋଇଥିଲେ ମଧ୍ୟ ଶ୍ରୀଶ୍ରୀ ଠାକୁରଙ୍କ ଏକ ନିର୍ଦ୍ଦିଷ୍ଟ ରୂପ ଓ ରଙ୍ଗ ଏହି ପୁସ୍ତକରେ ବିଶେଷ ଭାବରେ ପ୍ରତିଭାତ ହୋଇଛି ବୋଲି ପାଠକ ବର୍ଗ ଅନୁଭବ କରନ୍ତି। ଶ୍ରୀଶ୍ରୀ ଠାକୁରଙ୍କ ମଙ୍ଗଳମୟ ମୂର୍ତ୍ତି ଏବଂ କରୁଣାଘନ ବିଗ୍ରହ ଏହି ପୁସ୍ତକରେ ଜୀବନ୍ତ ଭାବରେ ଫୁଟି ଉଠିଛି। ଶ୍ରୀଶ୍ରୀ ଠାକୁରଙ୍କ ସହିତ ଏକ ନିବିଡ଼ ଆତ୍ମୀୟତା ପୂର୍ଣ୍ଣ ବନ୍ଧୁତ୍ୱ ସ୍ଥାପନ କରି ଲେଖକ ଶ୍ରୀଶ୍ରୀ ଠାକୁରଙ୍କୁ 'ମନର ମଣିଷ' ହିସାବରେ ଆଖ୍ୟାୟିତ କରି ସାଧନା ସ୍ତରରେ ଗୁରୁ ଶିଷ୍ୟଙ୍କ ମଧ୍ୟରେ ଏକ ପ୍ରକାର ଏକାନ୍ତ, ଅଛେଦ୍ୟ ଓ ଆନ୍ତରିକ ସମ୍ପର୍କର ସୂଚନା ଦେଇଛନ୍ତି।

ଏହି ପୁସ୍ତକରେ ଦୁଇ ପ୍ରକାର ଅନ୍ତଃସ୍ରୋତ ସମ୍ମିଳୀତ ଭାବରେ ପ୍ରବାହିତ ହୋଇଥିବାର ଜଣାପଡ଼େ। ପ୍ରଥମ ସ୍ରୋତ ହେଉଛନ୍ତି ଶ୍ରୀଶ୍ରୀ ଠାକୁର ସ୍ୱୟଂ, ତାଙ୍କର ଭାଗବତ କ୍ରିୟା ଏବଂ ମଙ୍ଗଳମୟ ଆଶୀଷ। ଏହି ସ୍ରୋତର ଚିରନ୍ତନ ଆବେଗ ଥିଲା ମନୁଷ୍ୟକୁ ସୁଖ, ଶାନ୍ତି, ପ୍ରଗତି ଓ ଆଲୋକ ରାଜ୍ୟକୁ ନେଇଯିବା। ଲେଖକଙ୍କ ଭାଷାରେ– "ଶ୍ରୀଶ୍ରୀ ଠାକୁର ସତେ ଯେପରି ଏକ ଅମୃତର ପାତ୍ର ଆମ ପାଖରେ ଧରି କହୁଛନ୍ତି– ଖାଓ ! ଖାଓ !"

ଦ୍ୱିତୀୟ ସ୍ରୋତ ହେଉଛି ଇଷ୍ଟ ନିଷ୍ଠା ଭିତ୍ତିକ ସାଧନା। ସାଧନା ଓ ତପସ୍ୟା ମାଧ୍ୟମରେ ଆଧ୍ୟାତ୍ମିକ ଓ ଅତିନ୍ଦ୍ରୀୟ ଜଗତର ଅନୁଭୂତିର ସନ୍ଧାନ ହେଉଛି ଏହି ପୁସ୍ତକର ଅନ୍ୟ ଏକ ଅନ୍ତଃସ୍ରୋତ।

ଲେଖକ ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ଅବସ୍ଥାନ କରୁଥିଲେ। ଆପାତ ଦୃଷ୍ଟିରେ ତାଙ୍କର କୌଣସି ଧରାବନ୍ଧା କର୍ମ ନ ଥିଲା। ସମସ୍ତ ପ୍ରକାର ପାର୍ଥିବ ବନ୍ଧନରୁ ନିଜକୁ ଦୂରାଇ ନେଇ, ଗୁରୁଙ୍କ ନିର୍ଦ୍ଦେଶରେ, ସେ ସାଧନା ଜଗତରେ ଗଭୀରରୁ ଗଭୀରତର ପ୍ରଦେଶକୁ ପ୍ରବେଶ କରିଥିଲେ। ଗୁରୁଙ୍କ ଆଦେଶକୁ ଅକ୍ଷରେ ଅକ୍ଷରେ ନିର୍ଦ୍ୱନ୍ଦରେ ପାଳନ କରିବା ମାଧ୍ୟମରେ ଆସାଧ୍ୟ ସାଧନ ହୋଇପାରେ, ଏହି କଥା ଲେଖକ ନିଜ ଜୀବନ ମାଧ୍ୟମରେ ବାସ୍ତବାୟିତ କରି ଏହି ପୁସ୍ତକରେ କିଛିକାଂଶରେ ବର୍ଣ୍ଣନା କରିଯାଇଛନ୍ତି।

ଈଶ୍ୱରଙ୍କ ଆଶୀର୍ବାଦକୁ ଊଣାଧିକେ ସମସ୍ତେ ଚାହାନ୍ତି। କିନ୍ତୁ ସେ ଆଶୀର୍ବାଦର ଅଧିକାରୀ କିପରି ହେବାକୁ ହୁଏ, ସେ କଥା ଏହି ପୁସ୍ତକର ପ୍ରତ୍ୟେକ ଅଧ୍ୟାୟରେ ସୂଚନା ଦିଆଯାଇଛି। ଶ୍ରୀଶ୍ରୀ ଠାକୁର ଦୟାକରି ତାଙ୍କ ଅନ୍ତରଙ୍ଗ ଶିଷ୍ୟଙ୍କୁ

ଯେଉଁ ଶିକ୍ଷା ଦେଇଛନ୍ତି, ତାହା ଆମ ସମସ୍ତଙ୍କ ପାଇଁ ଅତ୍ୟନ୍ତ ମର୍ମସ୍ପର୍ଶୀ ଘଟଣାବଳୀ ମାଧ୍ୟମରେ ବର୍ଣ୍ଣନା କରାଯାଇଛି। କେତେକ ସ୍ଥାନରେ ଶ୍ରୀଶ୍ରୀ ଠାକୁର ନିଜକୁ ଏଭଳି ଭାବରେ ଧରା ଦେଇଛନ୍ତି, ଯାହାକି ଅନ୍ୟତ୍ର ମିଳିବା ଅତ୍ୟନ୍ତ କଷ୍ଟକର। ଆମେ ଯେଉଁମାନେ ଶ୍ରୀଶ୍ରୀ ଠାକୁରଙ୍କ ଜୀବନ୍ତ ଲୀଳାଖେଳାର ପ୍ରତ୍ୟକ୍ଷଦର୍ଶୀ ହେବାର ସୁଯୋଗ ପାଇ ନାହୁଁ, ସେମାନଙ୍କ ପାଇଁ ଏହି ପୁସ୍ତକ ଶ୍ରୀଶ୍ରୀ ଠାକୁରଙ୍କ ଭାଗବତ ଲୀଳାକୁ ମନୋଚକ୍ଷୁରେ ଦେଖିବାର ସୁଯୋଗ ଦେଇଛି।

ଶ୍ରୀଶ୍ରୀ ଠାକୁରଙ୍କ ସମ୍ବନ୍ଧରେ ପ୍ରକୃତ ତଥ୍ୟ ଏବଂ ସାଧନାଗତ ଉପଲବ୍ଧିକୁ ଲେଖି ରଖିବା ପାଇଁ ଶ୍ରୀଶ୍ରୀ ଠାକୁର ସ୍ୱୟଂ ଲେଖକଙ୍କୁ ନିର୍ଦ୍ଦେଶ ଦେଇଥିଲେ। ଲେଖକଙ୍କ ଉଦ୍ଦେଶ୍ୟ ଥିଲା ଶ୍ରୀଶ୍ରୀ ଠାକୁରଙ୍କ ଚରିତ୍ର ଓ ଦର୍ଶନକୁ ଲେଖା ମାଧ୍ୟମରେ ଏକ ପ୍ରକାର ଚିରସ୍ଥାୟୀ ରୂପ ଦେଇ ଶ୍ରୀଶ୍ରୀ ଠାକୁରଙ୍କ ନିର୍ଦ୍ଦେଶକୁ ପାଳନ କରିବା। କେତେ କେତେ ବେଳେ ଲେଖକଙ୍କ ରଚନା ଶ୍ରୀଶ୍ରୀ ଠାକୁର ଶୁଣୁଥିଲେ ଏବଂ ଲେଖକଙ୍କୁ ଲେଖିବା ଦିଗରେ ମାର୍ଗ ଦର୍ଶନ କରାଉଥିଲେ।

ଲେଖକଙ୍କ ରଚନା ଶ୍ରୀଶ୍ରୀ ଠାକୁରଙ୍କ ଜୀବଦ୍ଦଶା କାଳରେ ଦେଓଘର ସତ୍‌ସଙ୍ଗରୁ ପ୍ରକାଶିତ ବଙ୍ଗଳା ପତ୍ରିକା "ଧୃତିଦୀପା" ଏବଂ କଟକ ସତ୍‌ସଙ୍ଗରୁ ପ୍ରକାଶିତ ଓଡ଼ିଆ ପତ୍ରିକା "ଉର୍ଜ୍ଜନା" ରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା।

ଏହି ପୁସ୍ତକର ଅଧିକାଂଶ ଲେଖା ଲେଖକ ୧୯୭୫ ମସିହାରୁ ୧୯୭୭ ମସିହା ମଧ୍ୟରେ ଲେଖିଛନ୍ତି। ଲେଖକ ପ୍ରକୃତରେ ବଙ୍ଗଳା ଭାଷାଭାଷୀ ଲୋକ ଥିଲେ। ଦୀର୍ଘଦିନ ଓଡ଼ିଶାରେ ଅବସ୍ଥାନ କରି ଓଡ଼ିଆ ଭାଷାରେ ମୌଖିକ ଦକ୍ଷତା ହାସଲ କରିଥିଲେ ହେଁ, ସେ ଓଡ଼ିଆ ଲେଖି କିମ୍ବା ପଢ଼ି ପାରୁ ନଥିଲେ। ଏହି ପୁସ୍ତକ ରଚନାକାଳରେ ଲେଖକ ତାଙ୍କ ଦୃଷ୍ଟିଶକ୍ତି ହରାଇ ସାରିଥିଲେ। ତେଣୁ ଲେଖକ ତାଙ୍କ ରଚନାକୁ କହି ଯାଉଥିଲେ, ଅନ୍ୟ କେହି, ମୁଖ୍ୟତଃ ମୋ ଭାଇ ଡାକ୍ତର ଉମେଶ ଚନ୍ଦ୍ର ପାତ୍ର, ତାକୁ ଲେଖି ରଖୁଥିଲେ।

ଏହି ପୁସ୍ତକର ପୃଷ୍ଠାରେ ଭାଷାଗତ ଓ ବ୍ୟାକରଣ ଦୃଷ୍ଟିରୁ କିଛି ପରିମାଣରେ ତ୍ରୁଟି ପରିଲକ୍ଷିତ ହୁଏ। ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ ସମୟରେ ମୁଁ କିଛି ପରିମାଣରେ ସଂଶୋଧନ କରିବାକୁ ଉଦ୍ୟମ କରିଥିଲି। ଲେଖିବା ସମୟରେ

ଲେଖକ ପ୍ରାୟ ଧ୍ୟାନସ୍ଥ ରହି କ୍ରମାଗତ ଭାବରେ କହିଯାଉଥିଲେ। ଲେଖା ହୋଇଗଲା ପରେ, ଲେଖକ ନିଜେ ତାକୁ ଶୁଣୁଥିଲେ ଏବଂ ଅନ୍ୟମାନଙ୍କୁ ଶୁଣାଉଥିଲେ। ମୂଳ ଲେଖାରେ ବିଶେଷ କିଛି ସଂଶୋଧନ କରିବାକୁ ଲେଖକ ପ୍ରାୟ ରାଜି ହେଉ ନ ଥିଲେ। ଲେଖକଙ୍କ ବକ୍ତବ୍ୟ ଥିଲା ଯେ ସେ ଯାହା କହିଛନ୍ତି, ସେଥିରେ ତାଙ୍କର ଯେଉଁ ନିଜସ୍ୱ ଇଷ୍ଟଗତ ଭାବ ଓ ଶୈଳୀ ରହିଛି, ଭାଷାର ପରିବର୍ତ୍ତନ ସହିତ ସେହି ଭାବରେ ବ୍ୟାଘାତ ଆସିବ। ଲେଖକ କହୁଥିଲେ, ଶ୍ରୀଶ୍ରୀ ଠାକୁରଙ୍କ ସମକ୍ଷରେ ଘଟିଥିବା କୌଣସି ଘଟଣାକୁ ବର୍ଣ୍ଣନା କଲାବେଳେ ଲେଖକ ମନୋଜଗତରେ ସେହି ଘଟଣା ଘଟିଥିବା ସମୟକୁ ଫେରିଯାଉଥିଲେ। ଅତୀତରେ ଅବସ୍ଥାନ କରି ସେହି ସମୟର ଘଟଣା, କଥା ଓ ଭାବକୁ ସେ ଭାଷାରେ ରୂପାୟିତ କରୁଥିଲେ। ସେଥିରେ ଇଚ୍ଛାକୃତ ଭାବରେ କୌଣସି ପରିବର୍ତ୍ତନ କଲେ ସେହି ମୂଳ ଭାବରେ ପରିବର୍ତ୍ତନ ଆସିପାରେ। ଲେଖକଙ୍କ ସେହି ଉପଦେଶକୁ ପାଳନ କରି ଏହି ଦ୍ୱିତୀୟ ସଂସ୍କରଣରେ ଭାଷା ଓ ବ୍ୟାକାରଣ ଗତ ଦୃଷ୍ଟିରୁ କୌଣସି ସଂଶୋଧନ କରିବାର ପ୍ରୟାସ କରାଯାଇ ନାହିଁ।

ଏହି ପୁସ୍ତକର ପ୍ରଥମ ଭାଗ ୧୯୭୭ ମସିହାରେ ପ୍ରକାଶିତ ହୋଇଥିଲା। ସେତେବେଳେ ଓଡ଼ିଆ ଭାଷାରେ ଶ୍ରୀଶ୍ରୀ ଠାକୁରଙ୍କ ସମ୍ବନ୍ଧରେ ବିଶେଷ ବହି ନ ଥିଲା। ଆର୍ଥିକ ଦୃଷ୍ଟିକୋଣରୁ ଏହି ପୁସ୍ତକ ପ୍ରକାଶ କରିବା ଲେଖକଙ୍କ ପକ୍ଷରେ ଏକ ବଡ଼ ଯୋଜନା ଥିଲା। ଶ୍ରୀଶ୍ରୀ ଠାକୁରଙ୍କ ପରମ ଆଶୀର୍ବାଦରୁ ଓ ତାଙ୍କ ଇଚ୍ଛା ଅନୁସାରେ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତିରେ ଏହି ପୁସ୍ତକ ପ୍ରକାଶିତ ହୋଇଥିଲା। ୧୯୭୮ ମସିହାରେ ୫୮ ବର୍ଷ ବୟସରେ ଲେଖକ ଇହ ଲୀଳା ସାଙ୍ଗ କରି ଚିରଦିନ ପାଇଁ ତାଙ୍କ ଗୁରୁଙ୍କ ପଦପ୍ରାନ୍ତରେ ଆଶ୍ରିତ ହୋଇଥିଲେ। ଲେଖକଙ୍କ ତିରୋଧାନ ସହିତ ସତ୍‌ସଙ୍ଗ ଜଗତର ଏକ ଗୁରୁତ୍ୱପୂର୍ଣ୍ଣ ଆଧ୍ୟାୟର ପରିସମାପ୍ତି ଘଟିଥିଲା। ୧୯୮୦ ମସିହାରେ ଲେଖକଙ୍କ ରଚିତ ବାକି ଲେଖାକୁ ନେଇ **ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର** ପୁସ୍ତକର ଦ୍ୱିତୀୟ ଭାଗ ଶ୍ରୀଗୁରୁ ଅନୁକୂଳାଶ୍ରମ, ବାଲେଶ୍ୱର ତରଫରୁ ପ୍ରକାଶିତ ହୋଇଥିଲା। ଲେଖକଙ୍କ ସହଧର୍ମିଣୀ, ଆମ୍ଭମାନଙ୍କର ଆଦରଣୀୟା ମା' ସ୍ୱର୍ଗତ ବକୁଳ ରାଣୀ ଦାସ ଏହି ପୁସ୍ତକ ପ୍ରକାଶନରେ ବିଶେଷ ଉତ୍ସାହ ଦେଇଥିଲେ। ତତ୍‌ପରେ ଲେଖକଙ୍କ ରଚିତ ବଙ୍ଗଳା କବିତାକୁ ସଂକଳନ କରି ଲେଖକଙ୍କ କନିଷ୍ଠା

କନ୍ୟା ଶ୍ରୀମତୀ ଆହୁତି ରାଣୀ ସରକାରଙ୍କ ଉଦ୍ୟମରେ ୧୯୯୪ ମସିହାରେ 'ଶ୍ରାନ୍ତ ଅଭିମାନୀ' ନାମକ ଏକ ପୁସ୍ତକ ପ୍ରକାଶିତ ହୋଇଅଛି।

ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ପାଇଁ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଲେଖକ ଯଥାସାଧ୍ୟ ଚେଷ୍ଟା କରିଥିଲେ। ଏହି ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାର ଉଦ୍ୟମ ଦ୍ୱାରା ଲେଖକଙ୍କ ଗୁଣମୁଗ୍ଧ କତିପୟ ଭକ୍ତବୃନ୍ଦ ଲେଖକଙ୍କ ଅପୂରଣୀୟ କର୍ମକୁ କିଛି ପରିମାଣରେ ଆଗେଇ ନେଇ ଯିବାକୁ ପ୍ରୟାସ କରିଛନ୍ତି। ଯେଉଁମାନେ ପ୍ରତ୍ୟକ୍ଷ ଭାବରେ ହେଉ କିମ୍ବା ପରୋକ୍ଷ ଭାବରେ ଏହି ମହାଯଜ୍ଞରେ ଭାଗ ନେଇଛନ୍ତି କିମ୍ବା ଭାଗ ନେବେ, ସେମାନେ ଶ୍ରୀଶ୍ରୀ ଠାକୁରଙ୍କ ଆଶୀର୍ବାଦର ପାତ୍ର ହେବେ ସେଥିରେ ସନ୍ଦେହର ତିଳେ ମାତ୍ର ଅବକାଶ ନାହିଁ।

ବନ୍ଦେ ପୁରୁଷୋତ୍ତମମ୍

ଦେବଶ ଚନ୍ଦ୍ର ପାତ୍ର

୧୧ – ୦୧ – ୧୯୯୮

ମୁମ୍ବାଇ, ମହାରାଷ୍ଟ୍ର

# ଲେଖକଙ୍କ ପ୍ରତି ତଦ୍‌ଗୁରୁ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଆଦିଷ୍ଟ ପୁରୁଷୋତ୍ତମ ଶ୍ରୀଶ୍ରୀ ଜଗନ୍ନାଥ ସ୍ତୋତ୍ରଷ୍ଟକମ୍ ।

କଦାଚିତ୍ କାଳିନ୍ଦୀ– ତଟ ବିପିନ ସଂଗୀତକ ରବୋ,
ମୁଦାଭୀରୀ ନାରୀ ବଦନ କମଳା ସ୍ୱାଦ ମଧୁ ପଃ
ରମା ଶମ୍ଭୁ ବ୍ରହ୍ମା ସୁରପତି ଗଣେଶାର୍ଚ୍ଚିତ ପଦୋ–
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବ ତୁମେ (୧)

ଭୂଜେ ସବ୍ୟେ ବେଣୁଂ ଶିରସି ଶିଖିପିଚ୍ଛଂ କଟିତଟେ,
ଦୁକୁଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ,
ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା ପରିଚୟୋ,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୨)

ମହାମ୍ଭୋଧେ ସ୍ତୀରେ କନକ ରୁଚିରେ ନୀଳଶିଖରେ,
ବସନ୍ ପ୍ରାସାଦାନ୍ତଃ ସହଜ ବଳଭଦ୍ରେଣ ବାଲିନା,
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରସେବା ବସରଦୋ–
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୩)

କୃପା ପାରାବାରଃ ସଜଳ–ଜଳଦ–ଶ୍ରେଣୀ ରୁଚିରୋ,
ରମାବାଣୀ ରାମଃ ସ୍ଫୁରଦ– ମଳପଦ୍ମେକ୍ଷଣ ମୁଖଃ ।
ସୁରେନ୍ଦ୍ରୈ– ରାରାଧ୍ୟଃ ଶ୍ରୁତିଗଣ ଶିଖା– ଗୀତ ଚରିତୋ,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୪)

ରଥାରୂଢ଼ୋ ଗଚ୍ଛନ୍ ପଥିମିଳିତ । ଭୂଦେବ– ପଟଳୈଃ ।
ସ୍ତୁତି ପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ୟ ସଦୟଃ,
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁ ସୁତୟା,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୫)

ପରଂବ୍ରହ୍ମ, ପୀଡ୍ୟଃ କୁବଳୟ ଦଳୋତ୍‌ଫୁଲ୍ଲ ନୟନୋ,
ନିବାସୀ ନୀଳାଦ୍ରୌ ନିହିତ ଚରଣୋଽନନ୍ତ ଶିରସି,
ରସାନନ୍ଦୋରାଧା ସରସବପୁରା ଲିଙ୍ଗନ– ସୁଖୋ,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୬)

ନବୈପ୍ରାର୍ଥ୍ୟଂ ରାଜ୍ୟଂ ନଚକନକ– ମାଣିକ୍ୟ ବିଭବଂ,
ନୟାଚେଽହଂ ରମ୍ୟାଂ ନିଖିଳ ଜନକାମ୍ୟାଂ ବରବଧୂମ୍,
ସଦାକାଳେ କାଳେ ପ୍ରଥମପତିନା ଗୀତଚରିତୋ,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୭)

ହରତ୍ୱଂ ପାପାନାଂ ଦ୍ରୁତତରମ ସାରଂ ସୁରପତେ !,
ହରତ୍ୱଂ ପାପାନାଂ ବିତତି ମପରାଂ ଯାଦବପତେ !,
ଅହୋ ଦୀନନାଥଂ ନିହିତ ମଚଳଂ ନିଶ୍ଚିତ ପଦଂ,
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ (୮)

**ଭା**ରତର ଅବନତି (degeneration) ସେହି ସମୟରୁ ଆରମ୍ଭ ହୋଇଛି, ଯେଉଁ ସମୟରୁ ଭାରତବାସୀଙ୍କ ପାଖରେ ଅମୂର୍ତ୍ତ ଭଗବାନ ଅସୀମ ହୋଇ ଉଠିଛନ୍ତି– ଋଷିଙ୍କୁ ବାଦଦେଇ ଋଷିବାଦର ଉପାସନା ଆରମ୍ଭ ହୋଇଛି।

ଭାରତ ! ଯଦି ଭବିଷ୍ୟତ କଲ୍ୟାଣକୁ ଆବାହନ କରିବାକୁ ଚାହଁ, ତେବେ ସମ୍ପ୍ରଦାୟଗତ ବିରୋଧ ଭୁଲି, ଜଗତର ପୂର୍ବ ପୂର୍ବ ଗୁରୁମାନଙ୍କ ପ୍ରତି ଆସକ୍ତ (attached) ହୁଅ,– ଏବଂ ସେହିମାନଙ୍କୁ ହିଁ ସ୍ୱୀକାର କର– ଯେଉଁମାନେ ତାଙ୍କୁ ଭଲ ପା'ନ୍ତି। କାରଣ, ପୂର୍ବବର୍ତ୍ତୀଙ୍କୁ ଅଧିକାର କରି ହିଁ ପରବର୍ତ୍ତୀଙ୍କର ଆବିର୍ଭାବ।

–ଶ୍ରୀଶ୍ରୀ ଠାକୁର

"ଧର୍ମର ମୂର୍ତ୍ତି ହିଁ ହେଲେ–ପୁରୁଷୋତ୍ତମ, ଇଷ୍ଟ ବା ଆଚାର୍ଯ୍ୟ। ତାଙ୍କୁ ବାଦ୍ ଦେଇ ଧର୍ମ ନାହିଁ।"

–ଶ୍ରୀଶ୍ରୀ ଠାକୁର

**(ଆ:ପ୍ର: ୪ର୍ଥଖଣ୍ଡ ପୃ:୨୭)**

ସଦ୍‌ଗୁରୁହି ଚିରୋପାସ୍ୟ ସ୍ତମାଚାର୍ଯ୍ୟଂ ପ୍ରଚକ୍ଷତେ।
କର୍ମଣା ମନସା ବାଚ, ଶିଷ୍ୟୈଃ ସେବ୍ୟ ସଦା ହି ସଃ ॥
ଅତ୍ୟାଜ୍ୟଃ ସର୍ବକାଳେଷୁ, ନାସ୍ୟ ତ୍ୟାଗୋ ବିଧୀୟତେ।
ଗୁରୁ ତ୍ୟାଗାତ୍ ସମୁଦ୍‌ବୃଦ୍ଧିଃ, ସର୍ବତୋ ନିରୁଦ୍ଧା ଭବେତ୍ ॥

–ଶ୍ରୀଶ୍ରୀ ଠାକୁର

"ଯେ ଆତ୍ମିକ ସମ୍ବେଗ ବା ଆତ୍ମିକ ଶକ୍ତିର ବପନରେ ସମସ୍ତଂକୁ ସ୍ଫୁରିତ କରି ଉଠାଇଛନ୍ତି– ସ୍ୱ ସ୍ୱ ବୈଶିଷ୍ଟ୍ୟରେ, ପ୍ରକୃତିର କୋଳରେ– ସେଇ ହିଁ ପରମପିତା; ଆଉ ପୁରୁଷୋତ୍ତମ ସେ'ହିଁ–ଯେକି ଏହିପରି ଉଦ୍‌ଭିନ୍ନ ହୋଇଉଠି ମଧ୍ୟ ବୈଶିଷ୍ଟପାଳୀ, ଆପୂରୟମାଣ, ପରମବେତ୍ତା। ତେଣୁ ସେହି ପୁରୁଷୋତ୍ତମ ହିଁ ଯୁଗେ ଯୁଗେ ଲୋକଉଦ୍ଧାତା– ପରମଗୁରୁ–ଆଚାର୍ଯ୍ୟ ଦେବତା– ମୂର୍ତ୍ତ ବ୍ରାହ୍ମୀ ପୁରୁଷ ଏକ ଅଦ୍ୱିତୀୟ।"

–ଶ୍ରୀଶ୍ରୀ ଠାକୁର
ସଙ୍ଗା ସମୀକ୍ଷା

ଧର୍ମକୁ ଯେ ଜାଣିଛନ୍ତି, Realise (ଉପଲବ୍ଧି) କରିଛନ୍ତି, Materialise (ବାସ୍ତବାୟିତ) କରିଛନ୍ତି, ନିରୂପିତ କରିଛନ୍ତି ଅର୍ଥାତ୍ ନିଃଶେଷରେ ରୂପ ଦେଇଛନ୍ତି ନିଜ ଜୀବନରେ, ସେଇ ହେଉଛନ୍ତି ଆଚାର୍ଯ୍ୟ ବା ସଦ୍‌ଗୁରୁ।

–ଶ୍ରୀଶ୍ରୀ ଠାକୁର

**ଆ:ପ୍ର: ୯ଖଣ୍ଡ, ପୃ: ୨୬୦**

ଇଷ୍ଟଙ୍କଠାରେ ଏକନିଷ୍ଠତା ନଷ୍ଟକର ନାହିଁ, ଧର୍ମ ସାଧନାରେ ଜାରଜ ବୃତ୍ତିସମ୍ପନ୍ନ ହେବାକୁ ଯାଅନାହିଁ, ତାହେଲେ କିନ୍ତୁ ଇତୋଭ୍ରଷ୍ଟ ସ୍ତତୋନଷ୍ଟତା ଅବଶ୍ୟମ୍ଭାବୀ ।

—ଶ୍ରୀଶ୍ରୀ ଠାକୁର
**ଚର୍ଯ୍ୟାସୁକ୍ତ, ୧୬୨**

ଇଷ୍ଟଛଡ଼ା ଆଉ କାହାରିକୁ ଇଷ୍ଟାସନରେ ବସାଇବା, ଆଚାର୍ଯ୍ୟ ବା ଗୁରୁବୋଲି ଚିନ୍ତା କରିବା ହିଁ ଜାରଜ ବୃତ୍ତି ।

ଚରିତ୍ର ଓ ଚର୍ଯ୍ୟାର ନିଷ୍ଠା— ବିନାୟିତ ଇଷ୍ଟବାହୀ, ବାସ୍ତବ ସଙ୍ଗତିଶୀଳ ସାର୍ଥକ ଅନୁଚଳନ ଯାହାର ନାହିଁ— ବାକ୍ୟ ଓ ବ୍ୟବହାରରେ ଉଦ୍‌ଭିନ୍ନ ହୋଇ ସେ କଦାପି ଆଚାର୍ଯ୍ୟ ହୋଇ ପାରେନା; ଆଚାର୍ଯ୍ୟ ହେବାର ନ୍ୟୁନତମ ଭୂମି ହିଁ ଏହା ।

—ଶ୍ରୀଶ୍ରୀ ଠାକୁର
**ଆଦର୍ଶ ବିନାୟକ, ୧୯**

ପଞ୍ଚବର୍ହି ଓ ସପ୍ତାର୍ଚ୍ଚି ହିଁ ହେଉଛି ସେହି ରାଜପଥ— ଯାହାକୁ ସ୍ୱୀକାର ଓ ଗ୍ରହଣ କରି ଚାଲିଲେ କ୍ରମଶଃ ତୁମେ ସାର୍ଥକତାରେ ସମୁନ୍ନତ ହୋଇପାର ।

—ଶ୍ରୀଶ୍ରୀ ଠାକୁର
**ସମ୍ବିତୀ, ୨ୟ ଖଣ୍ଡ**

ଈଶ୍ୱରଙ୍କ ସହ ଯୁକ୍ତ ହେବାକୁ ହେଲେ ତାଙ୍କର ମୂର୍ତ୍ତ ଆଶୀର୍ବାଦ— ଆଦର୍ଶ ବା ଆଚାର୍ଯ୍ୟ ସଦ୍‌ଗୁରୁଙ୍କ ସଙ୍ଗେ ଯୁକ୍ତ ହେବାକୁ ହେବ, ସେଇ ଯୁକ୍ତ ହିଁ ତୁମ୍ଭଙ୍କୁ ସ୍ୱତଃ ଉତ୍କର୍ଷେ ଈଶ୍ୱରଙ୍କ ସଙ୍ଗେ ଯୁକ୍ତ କରି ତୋଳିବ; ଆଉ ସେତେବେଳେ ହିଁ ତୁମେ ପ୍ରଜ୍ଞା ଅଧ୍ୟୁଷିତ ସ୍ୱରେ ଗାଇ ଉଠିବ—

"ବାସୁଦେବଃ ସର୍ବମିତି ସମହାତ୍ମା ସୁଦୁର୍ଲଭଃ

—ଶ୍ରୀଶ୍ରୀ ଠାକୁର
**ଶାଶ୍ୱତୀ ୧ମ ଖଣ୍ଡ**

# ଶ୍ରୀଶ୍ରୀ ଠାକୁରଙ୍କର ଇଷ୍ଟଭୃତି ନିର୍ଦ୍ଦେଶ:

ଇଷ୍ଟଙ୍କ ଅବର୍ତ୍ତମାନରେ
ତାଙ୍କର ସନ୍ତାନ ସନ୍ତତିଙ୍କ ମଧ୍ୟରେ
ସୁନିଷ୍ଠ ଆଚରବାନ
ତତ୍ ଚର୍ଯ୍ୟାପରାୟଣଃ ଉପଯୁକ୍ତ ଶିଷ୍ୟ ଯିଏ
ତତ୍‌ସକାଶେ
କିମ୍ବା ଅଭାବରେ, ସୁନିଷ୍ଠ ଆଚାରବାନ
ତତ୍ ଚର୍ଯ୍ୟାନିରତ ଉପଯୁକ୍ତ ଶିଷ୍ୟ ଯିଏ
ତତ୍ ସକାଶେ
ସେହି ଇଷ୍ଟ ପ୍ରୀତ୍ୟର୍ଥେ, ଇଷ୍ଟଭୃତି ପଠାଇବାକୁ ହେବ।

—ଶ୍ରୀଶ୍ରୀ ଠାକୁର
ଧୃତି ବିଧାୟନ ୨ଖଣ୍ଡ

ଆଗତ ଯିଏ, ଉପସ୍ଥିତ ଯିଏ—
ତାଙ୍କର ବିଗତିରେ ବା ତିରୋଭାବରେ
ତାଙ୍କ ବଂଶରେ ଯଦି
ତାଙ୍କ ପ୍ରତି ଅଚ୍ୟୁତ— ସଶ୍ରଦ୍ଧ ଆନତ ସମ୍ପନ୍ନ
ପ୍ରବୃଦ୍ଧ ସେବାପ୍ରାଣ
ତତ୍‌ବିଧି ଓ ନୀତିର ସୁଷ୍ଠୁ ପରିଚାଳକ ଓ ପରିପାଳକ
ସାନୁକଂପୀ ଚର୍ଯ୍ୟାନିରତ, ସମନ୍ୱୟୀ ସାମଞ୍ଜସ ପ୍ରଧାନ,
ପଦ ନିର୍ଲୋଭ, ଅଦ୍ରୋହୀ, ଶିଷ୍ଟ—ନିୟନ୍ତକ,
ପ୍ରୀତି ପ୍ରାଣ— ଏଭଳି କେହି ଥା'ନ୍ତି—
ତାଙ୍କରି ଅନୁଗମନ କର—
କିମ୍ବା ତାହା ବି ଯଦି ନପାଅ—
ତେବେ ତାଙ୍କରି କୃଷ୍ଟି ସନ୍ତତିଙ୍କ ମଧ୍ୟରେ
ସେହିଭଳି ଗୁଣସମ୍ପନ୍ନ ଯିଏ
ତାଙ୍କରି ଅନୁଗମନ କର— ପାରମ୍ପର୍ଯ୍ୟରେ—
ଯେତେ ପର୍ଯ୍ୟନ୍ତ ପୁଣି ଆଗତଙ୍କର ଅଭ୍ୟୁତ୍‌ଥାନ ନହୁଏ ;
ଠକିବ ନାହିଁ—
ଶିଷ୍ଟ ସମନ୍ୱୟରେ ସମ୍ବର୍ଦ୍ଧନା ବି ପାଇବ।

—ଶ୍ରୀଶ୍ରୀ ଠାକୁର
**ସଂବିତୀ, ପୃ : ୨୩**

## ॥ ଏକ ॥

ଜନ୍ମଠାରୁ ପାରିପାର୍ଶ୍ୱିକ ପରିବେଶ ଭିତରେ ଓ ଘରେ ହୋଇଥିବା ବିଭିନ୍ନ ଦେବଦେବୀ ପୂଜା ମୋର ମନ ଭିତରେ ଆଣି ଉପସ୍ଥିତ କଲା ମାନସିକ ଦ୍ୱନ୍ଦ। ଲୋକ ମୁହଁରେ ଶୁଣିପାଉଛି ଦେବତାମାନେ ମହାଶକ୍ତିଶାଳୀ, ତାଙ୍କୁ ନ ମାନିଲେ ମହାକ୍ଷତି ହେବ। କ'ଣ କଲେ ତାଙ୍କୁ ମନା ହୁଏ ଜାଣି ନାହିଁ। ନ ମାନିଲେ କ୍ଷିତି ହେବ, ତେଣୁ ମାନୁଛି। ମାନିଲେ କ'ଣ ହେବ? ପୁରୋହିତ ତଥା ସମାଜର ମୁଖିଆ ଲୋକଙ୍କଠାରୁ ଶୁଣୁଛି ବହୁତ କିଛି ଭଲ ହେବ। କିନ୍ତୁ ଭଲ ହବାଟା ଉପଲବ୍ଧି କରି ପାରୁ ନାହିଁ। ପିଲା ବୟସ ହେଲେ ମଧ୍ୟ କିଏ ଯେପରି ମୋର ଅନ୍ତର ଭିତରୁ ମଝିରେ ମଝିରେ କହି ଉଠୁଛି— ଉପରୁ ଉପରୁ ଯାହା ଦେଖାଯାଉଛି ନୁହେଁ, ନୁହେଁ ଏହା ନୁହେଁ। ଏହା ଭିତରେ ଅନ୍ତର୍ନିହିତ ଆହୁରି କିଛି ଅଛି। ସେହି ଆହୁରି କିଛି କ'ଣ ତାହା ପ୍ରହେଳିକା ହୋଇ ରହିଲା ମୋ ପାଖରେ ଗ୍ରନ୍ଥି ରୂପରେ। ବିଶେଷ ଭାବରେ ମୋର ମନକୁ ଆଲୋଡ଼ିତ କରି ତୋଳୁଥିଲେ ଯେତେବେଳେ ଦେଖୁଥିଲି ବିଭିନ୍ନ ସନ୍ନ୍ୟାସୀ ସଂପ୍ରଦାୟର ଲୋକମାନଙ୍କୁ। କେହିବା ଗେରୁଆ ବସନଧାରୀ, କେହି ଜଟାଜୁଟଧାରୀ, କେହି ବା ମୁଣ୍ଡିତ ମସ୍ତକ। ପୁଣି କାହାକୁ ଦିଶୁଥିଲା ଉନ୍ମାଦ ପରି ମଳିନ ବସ୍ତ୍ରଧାରୀ, ଅର୍ଦ୍ଧ—ଉଲଗ୍ନ, ଅସଂଲଗ୍ନ ବାକ୍; ବିଶେଷ ଭାବେ ଏମାନଙ୍କୁ ପାଗ୍ଲାବାବା ବା ପାଗ୍ଲିମା' ବୋଲି ଲୋକମାନେ ଅଭିହିତ କରୁଥା'ନ୍ତି। ଏହି ବିଭିନ୍ନ ସଂପ୍ରଦାୟର ସାଧୁ ସନ୍ନ୍ୟାସୀମାନଙ୍କୁ ସାଧାରଣ ଲୋକମାନେ ବିଶେଷ ସଂଭ୍ରମ ଆଖିରେ ଦେଖୁଥାଆନ୍ତି। ସ୍ୱଭାବତଃ ମୋର ମନ ବି ତାଙ୍କ ଆଡ଼କୁ ଆକୃଷ୍ଟ ହେଲା। ବିଭିନ୍ନ ସାଧୁ ସନ୍ନ୍ୟାସୀଙ୍କ ଆଖଡ଼ା, ମଠ ଓ ଆଶ୍ରମରେ ସେମାନଙ୍କ ସଙ୍ଗରେ ସଙ୍ଗ କରିବା ପାଇଁ ଯିବା ଆସିବା କରିବାକୁ ଆରମ୍ଭ କଲି। ସବୁବେଳେ ସେମାନେ ଈଶ୍ୱରୀୟ କଥାରେ ବ୍ୟସ୍ତ ରହିଛନ୍ତି। ମୁଁ କିଛି ବୁଝି ନ ପାରିଲେ ମଧ୍ୟ ମୋତେ ଭଲ ଲାଗେ ତାଙ୍କରି ଭିତରୁ ବାହାର କାହାର ଆଚାର ଆଚରଣ। କିନ୍ତୁ ଏହାରି ଭିତରେ ଗୋଟାଏ ଜିନିଷ ଲକ୍ଷ୍ୟ କରୁଛି— ଦିନ ଭିତରେ ବିଶେଷ ବିଶେଷ କେତେକ ସମୟରେ ସେମାନେ ଲୋକମାନଙ୍କୁ ନିଜ ପାଖରୁ ଦୂରେଇ ଦିଅନ୍ତି। ବିଶିଷ୍ଟ କେତେକ ଲୋକ କେବଳ ସେଠାରେ ରହନ୍ତି। କୌତୁହଳ ଦମନ କରି ନପାରି ଲୁଚି ରହି ଦେଖିବାକୁ ଆରମ୍ଭ କଲି— ସବୁଲୋକଙ୍କୁ ଏଡ଼େଇ ଦେଇ ଅଳ୍ପ କେତେକ

ଲୋକଙ୍କୁ ନେଇ ସେହି ସାଧୁ ସନ୍ୟାସୀମାନେ କ'ଣ କରନ୍ତି? ବିଭିନ୍ନ ଜାଗାରେ ବିଭିନ୍ନ ଦୃଶ୍ୟ ଆଖି ଆଗରେ ପଡ଼େ। କେଉଁ ଜାଗାରେ ସମସ୍ତେ ଗଂଜିକା ସେବନରେ ବ୍ୟସ୍ତ ରହନ୍ତି, କେହି ବା ଭାଙ୍ଗ ସିଦ୍ଧି ଖାଆନ୍ତି, କେହି ବା ମଦ (ତାଙ୍କ ଭାଷାରେ କାରଣବାରି) ପାନ କରନ୍ତି, ଇତ୍ୟାଦି ଇତ୍ୟାଦି। ବିଭିନ୍ନ ପ୍ରକାର କର୍ମଧାରା ଦେଖି ଏବଂ ସେହି ନିଭୃତ ସମୟରେ ତାଙ୍କ ନିଜ ଭିତରେ ଯେଉଁସବୁ ଆଳାପ ଆଲୋଚନା ହୁଅନ୍ତି ତାହାକୁ ସକର୍ଣ୍ଣେ ଶୁଣି ଚଞ୍ଚଳ ହୋଇ ଉଠିଲା ମନ, ଏସବୁ କ'ଣ? କହିବେ ଗୋଟିଏ ପ୍ରକାର, ଚାଲିବେ ଗୋଟିଏ ପ୍ରକାର। ସାଧାରଣ ସରଳ ଲୋକ ଧର୍ମ ଏବଂ ପୁଣ୍ୟ ମନେ କରି ଏହିମାନଙ୍କ ପାଇଁ ଯାହା କରନ୍ତି, ଏମାନେ ସେହିସବୁ ସମ୍ପଦର ଅପବ୍ୟବହାର କରି ବୃତ୍ତି ପ୍ରବୃତ୍ତିର କ୍ଷୁଧା ତୃପ୍ତ କରୁଛନ୍ତି। ମୋର ମନ ଭିତରେ ଗୋଟିଏ ଅବିଶ୍ୱାସରୂପୀ ବୃକ୍ଷ ଧୀରେ ଧୀରେ ଜାଗ୍ରତ ହୋଇ ଉଠିବାକୁ ଆରମ୍ଭ କଲା। ଦେବତା ଓ ଧର୍ମ ଏସବୁ କ'ଣ ମିଛ? ସାଧୁ–ସନ୍ୟାସୀ କ'ଣ ବେଶ ବା ଭେକ? ଅସଲରେ କ'ଣ ସତ୍ୟ ବୋଲି ଭିତରେ କିଛି ନାହିଁ? ନିର୍ବୋଧ ବାଳକ ମୁଁ। କିଛି ସମାଧାନ କରି ପାରୁନାହିଁ। ଏହି ସମୟରେ ଆମ୍ଭ ଘରେ ଆସି ଉପସ୍ଥିତ ହେଲେ ଜଣେ ଗେରୁଆ ବସନଧାରୀ, ମୁଣ୍ଡିତ ମସ୍ତକ, ସୁ ଓ ସୌମ୍ୟ ଦର୍ଶନ ସନ୍ୟାସୀ। ଉନ୍ନତ ନାସା, ସୁଦର୍ଶନ ସନ୍ୟାସୀ। ବୟସ ୪୦ ଭିତରେ। ପ୍ରାଙ୍ଗଣରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଘରର ବୟୋବୃଦ୍ଧ ଏପରିକି ମୋର ମା' ମଧ୍ୟ ସମସ୍ତେ ଯାଇ ତାଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣିପାତ ହେଲେ। ସନ୍ୟାସୀ ଊର୍ଦ୍ଧ୍ୱନେତ୍ରେ– କମଣ୍ଡଳୁ– ହସ୍ତେ ଠିଆ ହୋଇ ରହିଲେ।

ଆମ୍ଭେ ବାଳକ ବାଳିକାମାନଙ୍କୁ ଗୁରୁଜନମାନେ ପ୍ରଣତ ହେବାକୁ କହିଲେ। ପ୍ରଣାମପର୍ବ ସାଙ୍ଗ ହେବାପରେ ମୋର ମା' ସନ୍ୟାସୀଙ୍କୁ ପଥ ଦେଖାଇ ଆମ୍ଭର ରହିବା ଘରକୁ ନେଇଗଲେ ଏବଂ ତାଙ୍କର ରହିବାର ବନ୍ଦୋବସ୍ତ କରି ଦେଲେ। ହଠାତ୍ କାନକୁ ଭାସି ଆସିଲା କ୍ରନ୍ଦନର ଶବ୍ଦ। ଆମ୍ଭ ଘର ସହିତ ଲାଗି ରହିଥିବା ଆଉ ଗୋଟିଏ ଗୃହରୁ ଏହି କ୍ରନ୍ଦନରୋଳ ଭାସି ଆସୁଛି। ବିସ୍ମିତ ହୋଇ ସେହି ଘରେ ଯାଇ ଦେଖିଲି ଦୁଇ ବିଧବା ସ୍ତ୍ରୀ ଲୋକ ଓ ତାଙ୍କର ଏକମାତ୍ର ପୁତ୍ର କାନ୍ଦୁଛନ୍ତି। କିଛି ସମୟ ପରେ ବୁଝିଲି ଯେଉଁ ସନ୍ୟାସୀ ଆମ୍ଭ ଘରକୁ ଆସିଛନ୍ତି– ସେ ଆଉ କେହି ନୁହଁନ୍ତି, ସେ ତାଙ୍କ ଘରର ଜ୍ୟେଷ୍ଠପୁତ୍ର– ହେମଚନ୍ଦ୍ର ଦତ୍ତ ଓରଫେ ସ୍ୱାମୀ ତ୍ୟାଗୀଶ୍ୱରାନନ୍ଦ।

୧୨ବର୍ଷ ପରେ ଜୀବନର ଶେଷଥର ପାଇଁ ସନ୍ନ୍ୟାସୀ ଜନ୍ମସ୍ଥାନ ଦର୍ଶନ ପାଇଁ ଆସିଛନ୍ତି। ସନ୍ନ୍ୟାସୀର କୁଆଡ଼େ ପୂର୍ବାଶ୍ରମେ ଯିବା ନିଷେଧ। ତେଣୁ ତାଙ୍କର ନିଜ ଘରକୁ ନ ଯାଇ ଆମ ଘରେ ରହିଛନ୍ତି। ଦିନେ ଦୁଇଦିନ ଯାହା ରହିବେ ଫଳମୂଳ ଖାଇ ରହିବେ। ଏଠାକାର ଅନ୍ନ ଗ୍ରହଣ କରିବେ ନାହିଁ। ମା' ଭାଇମାନଙ୍କ ସଙ୍ଗେ ଉଠାବସା କରିବେ ନାହିଁ। ବ୍ୟକ୍ତିଗତ କୌଣସି ମା' ଓ ଭାଇ ଉପରେ ଆକର୍ଷଣ (attachment) ରହିବା କୁଆଡ଼େ ପାପ। ସମଗ୍ର ବିଶ୍ୱରେ ସବୁ ମା' ହିଁ ତାଙ୍କର ମା', ସବୁ ଭାଇ ହିଁ ତାଙ୍କର ଭାଇ। ଈଶ୍ୱର ବା ଭଗବାନ ଛଡ଼ା ତାଙ୍କର ଆଉ କେହି ବିଶେଷ ଆତ୍ମୀୟ ନାହିଁ। ଏହି ସବୁ କଥା ଶୁଣି ଖୁବ୍ ଆନନ୍ଦ ଲାଗିଲା। ପୁନଃ ପୁନଃ ଦେଖିବାକୁ ଲାଗିଲି ସେହି ସନ୍ନ୍ୟାସୀଙ୍କୁ। କିନ୍ତୁ ଅନ୍ତର ଭିତରେ ଉଙ୍କି ମାରୁଛି ଗୋଟାଏ କଥା— ଯେଉଁ ସନ୍ନ୍ୟାସୀ ବିଶ୍ୱ କଥା ଭାବୁଛି, ସତ୍ୟକୁ ଅନ୍ୱେଷଣ କରି ଚାଲିଛି, ତାଙ୍କର ମା', ବାପ, ଭ୍ରାତା—ଭଗ୍ନି, କ'ଣ ସେହି ଦୟାମୟ ଈଶ୍ୱରଙ୍କର ସନ୍ତାନ ନୁହଁନ୍ତି କି? ପିଲାଲୋକ ମୁଁ, ପ୍ରଶ୍ନ କରି ପାରିଲି ନାହିଁ। ସମାଧାନ ମଧ୍ୟ ହେଲା ନାହିଁ। ସନ୍ନ୍ୟାସୀ ପ୍ରତିଦିନ ଆହାର କରି ତାଙ୍କ ପ୍ରସାଦ ଦିଅନ୍ତି ମୋତେ। ମୋର ମା'କୁ ଡାକି କହନ୍ତି— ପିଉସୀମା', ଆପଣଙ୍କର ଏହି ପୁଅକୁ ସାବଧାନରେ ରଖିବେ। ସନ୍ନ୍ୟାସୀ ଦୁଇ ଦିନ ରହି ଚାଲିଗଲେ। କିନ୍ତୁ ମୋର ମନ ଭିତରେ ରଖି ଦେଇଗଲେ ଗୋଟାଏ ପ୍ରଶ୍ନବାଚକ ଚିହ୍ନ। ମୋର ମନକୁ ଆକର୍ଷଣ କରୁଛି ତାଙ୍କର ଏହି ବନ୍ଧନମୁକ୍ତ ଜୀବନ। ଏହାର କିଛିକାଳ ପରେ ଆମ ପାହିର ଏକ ବିପ୍ର ଘରେ ଜଣେ ସନ୍ନ୍ୟାସୀ ଆସି ଉପସ୍ଥିତ ହେଲେ। ଗେରୁଆ ବସନଧାରୀ ସେହି ସନ୍ନ୍ୟାସୀଙ୍କୁ ଦେଖିବା ପାଇଁ ମୁଁ ଦୌଡ଼ିଗଲି ତାଙ୍କ ଘରକୁ। କିନ୍ତୁ ଯାଇ ଯାହା ଦେଖିଲି ତାହା ମୋର ପୂର୍ବକଳ୍ପନା ସାଙ୍ଗରେ ସଂପୂର୍ଣ୍ଣ ବିପରୀତ। ଆଜାନୁଲଂବିତ ବାହୁ, ଗେରୁଆଧାରୀ ସନ୍ନ୍ୟାସୀ ଶୋଇ ରହିଛନ୍ତି ତାଙ୍କର ମାତୃ ଅଙ୍କେ ମୁଣ୍ଡ ଦେଇ। ବିଧବା ମା' ଶୁଭ୍ରବସ୍ତ୍ର ପରିହିତା। ସନ୍ନ୍ୟାସୀର ମୁଣ୍ଡବାଳ ଭିତରେ ହାତଦେଇ ପୁଅକୁ ଆଦର କରୁଛନ୍ତି। ଏହି ଦୃଶ୍ୟ ମୋର ଅନ୍ତରକୁ ଉଦ୍‌ବେଳିତ କରି ପକାଇଲା। ମୁଁ ପାଖକୁ ଯାଇ ପ୍ରଣାମ ହେଲି। ଶାୟିତ ସନ୍ନ୍ୟାସୀ ତାଙ୍କର ମା'ଙ୍କୁ ପଚାରିଲେ—ମା', ଏ ପିଲା କିଏ। ତାଙ୍କର ମା' ମୋର ପରିଚୟ ଦେଇ କହିଲେ— ତୋର ଦତ୍ତଘରର ପିଉସୀଙ୍କ ପୁଅ। ତୋର ସତୀଶଦା'ଙ୍କର ସାନଭାଇ। ସନ୍ନ୍ୟାସୀ ଉଠି ମୋତେ କୁଣ୍ଢାଇ କୋଳରେ ବସାଇ ଆଦର କରିବାକୁ ଲାଗିଲେ। ତାଙ୍କ ବ୍ୟବହାରରେ ମୋର ମନର ଆଡଷ୍ଟଭାବ ଦୂରୀଭୂତ ହେଲା। ମୁଁ ପଚାରିଲି— ଆପଣ ସନ୍ନ୍ୟାସୀ।

ସେ କହିଲେ– ଆଗେ ମୁଁ ତୁମ୍ଭର ଭାଇ, ମନୁଷ୍ୟ। ଖୁବ୍ ଭଲ ଲାଗିଲା ମୋର ଏ କଥା ଶୁଣି। ପୁଣି ପଚାରିଲି–ସନ୍ନ୍ୟାସୀ ପରା ନିଜ ଘରକୁ ଯାଆନ୍ତି ନାହିଁ। ମା', ଭାଇକୁ ଛୁଅଁନ୍ତି ନାହିଁ, ସେଠାରେ କିଛି ଖାଆନ୍ତି ନାହିଁ। ଉକ୍ତ ସନ୍ନ୍ୟାସୀଙ୍କ ନାମ ସୁଧିର ଭାଇ। ଶ୍ରୀଶ୍ରୀ ରାମକୃଷ୍ଣଙ୍କର ଭକ୍ତ, ଶ୍ରୀ ଅନ୍ୟଦା ଠାକୁରଙ୍କର ଆଦ୍ୟାମଠରେ ରହନ୍ତି। ସେ କହିଲେ– ମୁଁ ସାଧୁ, ସନ୍ନ୍ୟାସୀ ଯାହା କିଛି ହୁଏନା କାହିଁକି ସବୁ କିଛି ହୋଇ ପାରୁଛି ମା'ଙ୍କର ଆଶୀର୍ବାଦରେ। ମା' ହିଁ ମୋର ଆଦ୍ୟାଶକ୍ତି, ଆନନ୍ଦମୟୀ। ମୁଁ କହିଲି– ନିଜର ମା' ଉପରେ ଆକର୍ଷଣ ଥିଲେ ବିଶ୍ୱମାତାଙ୍କୁ କ'ଣ ପାଇ ହୁଏ? ସୁଧିର ଭାଇ କହିଲେ– ଯେ ନିଜର ଗର୍ଭଧାରିଣୀ ମା'କୁ ଚିହ୍ନେ ନାହିଁ, ଭଲ ପାଇ ପାରେ ନାହିଁ, ସେ ଜଗନ୍ଜନନୀଙ୍କୁ ଚିହ୍ନିବ କିପରି? ଠାକୁର ଶ୍ରୀରାମକୃଷ୍ଣଙ୍କର କଥା ଶୁଣିଛ ତ? ସେ କିନ୍ତୁ ପରିବାରର ସମସ୍ତଙ୍କୁ ନେଇ ରହିଥିଲେ। ଏହା ପରେ ଆହୁରି ଅନେକ କଥା କହିଲେ। କିନ୍ତୁ ମାତୃଅଙ୍କେ ଶାୟିତ ସେହି ସନ୍ନ୍ୟାସୀଙ୍କ କଥା ମୁଁ କେବେହେଲେ ଭୁଲିପାରିବି ନାହିଁ। କି ସୁନ୍ଦର! କି ଅପୂର୍ବ! ଏହା ଯେପରି ପୁଷ୍ପ ପଲ୍ଲବିତ ଅତି ସ୍ନିଗ୍ଧ ବୃକ୍ଷ ନୟନରଞ୍ଜନକାରୀ। ଏହାରି ସାଥେ ସାଥେ ରାମକୃଷ୍ଣ ପରମହଂସଦେବଙ୍କର କଥା ଯେତେବେଳେ ଜାଣିପାରିଲି, ସେ କହିଛନ୍ତି– ଯତ ମତ, ତତ ପଥ। (ଯେତେ ମତ, ସେତେ ପଥ)। ସେତେବେଳେ ବୁଝିପାରିଲି ଯେ ଯେଉଁ ପଥରେ ଚାଲୁନା କହିଁକି ଏହାରି ମଧ୍ୟରେ ଆହୁରି କିଛି ସତ୍ୟ ନିହିତ ରହିଛି। ଯେଉଁ ସତ୍ୟ ସମସ୍ତଙ୍କ ପାଇଁ ଏକା।

ଭଗବାନଙ୍କର କଥା ମନେ ହେଲେ ହିଁ, କାହିଁକି ମୁଁ ଜାଣେନା, ମନେ ହେଉଥାଏ– ଭଗବାନ, ସେ ତ ଦୟାର ସାଗର, ସର୍ବଗୁଣାକର। କିନ୍ତୁ ମୋର ଅଜ୍ଞାତବଶତଃ ବାସ୍ତବ କ୍ଷେତ୍ରରେ କେଉଁଠି ତାଙ୍କର ଦୟାର ନିଦର୍ଶନ ଦେଖିବାକୁ ପାଉ ନଥିଲି। ସମାଜରେ ଦେଖୁଥିଲି– ଅର୍ଥବାନ, ଧନବାନ, ଘରେ ଖୁବ୍ ଆଡ଼ମ୍ବର ସହକାରେ ପୂଜା ହୁଏ, ପୁରୋହିତ ଠିକ୍ ସମୟ ମୁତାବକ ଯାଇ ପୂଜା କରନ୍ତି। କିନ୍ତୁ ଗରିବ ଘରେ ଦେବତା ପୂଜାର ଲଗ୍ନ ଗଡ଼ିଗଲେ ମଧ୍ୟ ପୁରୋହିତର ଦେଖା ନାହିଁ। ଦେବତା ପୂଜା ଏବଂ ପୁରୋହିତର ଏହି ବୈଷମ୍ୟ ଦେଖି ମନ ଭିତରେ ଦୁଃଖ ହୁଏ। ଅର୍ଥବାନ୍ ଦାମୀ ମଠାଲୁଗା ପିନ୍ଧି ମୂର୍ତ୍ତିମାନ୍ ଭକ୍ତ ସାଜି ଦେବତା ମନ୍ଦିରେ ପୁରୋହିତ ପାଖରେ ବିରାଜମାନ। ଗରିବ ଛିଣ୍ଡା ଲୁଗା ପିନ୍ଧି ଗୃହ ଦେବତାଙ୍କୁ ଗୃହେ ରଖି ପୁରୋହିତ ଖୋଜିବାରେ ଦ୍ୱାରେ ଦ୍ୱାରେ ଘୂରି ବୁଲୁଛନ୍ତି। ଏସବୁ ମୋର ମନରେ ଦେବତା ଓ ଧର୍ମ

ଉପରେ କ୍ରମେ ଅବିଶ୍ୱାସ ଆଣି ଦେଇଥିଲା, ଏହାପରେ ମୋର ଜୀବନ ସମ୍ମୁଖରେ ଯେଉଁମାନଙ୍କୁ ଦେଖିଲି ସେମାନେ ହେଲେ ସର୍ବହରା ତଥାକଥିତ ସନ୍ନ୍ୟାସୀ। ଏହି ରୂପ ମୋ ସାମ୍ନାରେ ଆହୁରି ବୀଭତ୍ସ ବୋଲି ପ୍ରତିଭାତ ହେଲା। ଶୁଷ୍କ କାଷ୍ଠ ପରି ମାୟାହୀନ ଏହି ସନ୍ନ୍ୟାସୀ, ଏହା ଭିତରେ ସେହି ପରମ ଦୟାଲ ଈଶ୍ୱର କାହିଁ? କାହିଁ ତା'ର ସେହି ରସଘନ ରୂପ? ଏସବୁ କିଛି ଭିତରେ ସର୍ବ ପ୍ରଥମ ଦେଖିଥିବା ଦ୍ୱିତୀୟ ସନ୍ନ୍ୟାସୀ ମୋ ପାଖରେ ଆଣି ଦେଲା କିଛି ଅମୃତର ସନ୍ଧାନ। ସେ କହିଲେ— ମା' ମୋର ସର୍ବବ୍ୟାପୀ। କାହାକୁ ବାଦ ଦେଇ ସାଧନା ହୁଏ ନାହିଁ। ସେହି ନବୀନ ସନ୍ନ୍ୟାସୀ ମୁଖର କଥା ମୋତେ ଖୁବ୍ ଭଲ ଲାଗିଥିଲା।

ଇତି ମଧ୍ୟେ ଦର୍ଶନ ପାଇଲି ଜଣେ ଫକୀରଙ୍କର। ସେ ଏକୁଟିଆ ଥାଏ, ନିଜେ ନିଜେ ସବୁବେଳେ କ'ଣ ବକିଯାଏ। ଫକୀର କାହାରି ସାଙ୍ଗରେ କଥା କୁହନ୍ତି ନାହିଁ। କ୍ରମେ କ୍ରମେ ଚାରିଆଡ଼େ ପ୍ରଚାର ହେଲା— ଏହି ଫକୀର ବାକ୍‌ସିଦ୍ଧ। ବହୁତ ଲୋକ ଆସି ଭିଡ଼ ହେବାକୁ ଲାଗିଲେ। ଧୀରେ ଧୀରେ ତାହା ଭିତରେ ଅନେକ ଶିଷ୍ୟ ହୋଇ ପଡ଼ିଲେ। କିଛି ଦିନ ପରେ ଲକ୍ଷ୍ୟ କଲି— ସେଠାରେ ଗୋଟିଏ ଜିନିଷ ପ୍ରଚୁର ପରିମାଣରେ ବ୍ୟବହୃତ ହେବାକୁ ଲାଗିଲା, ତାହା ଆଉ କିଛି ନୁହେଁ— ଗଞ୍ଜା। ସମସ୍ତେ ସବୁବେଳେ ସେଠାରେ ରହି ଗଞ୍ଜା ଟାଣୁଥା'ନ୍ତି। ଆଉ ସେହି ଫକୀର ସାହେବ ଯେ କି ସବୁବେଳେ ଅପରିଷ୍କାର, ଅପରିଚ୍ଛନ୍ନ ଲୁଗା ପିନ୍ଧିଥା'ନ୍ତି, ଗାଧୁଅନ୍ତି ନାହିଁ, ଅପରିଷ୍କାର ଦେହ, ପାଖରେ ଗଲେ ଦୁର୍ଗନ୍ଧ ଆସେ, ମୁଁ ମନେ ମନେ ଭାବେ ଏ କି ତପସ୍ୟା? ଭଗବାନ—ସେ ତ ଚିର ସୁନ୍ଦର। ସତ୍ୟଂ ଶିବଂ ସୁନ୍ଦରଂ ଯାହାଙ୍କର ନାମ ତାହା ଭିତରେ ଏ କି ଅସତ୍ୟ, ଅସୁନ୍ଦର, ତାଙ୍କ ଭକ୍ତର କାହିଁକି ଏହି ବୀଭତ୍ସ ରୂପ? ଗୁଡ଼ାଏ ଦାଢ଼ୀ, ଜଟାଜୁଟ ରହିଛି। ଭଗବାନଙ୍କୁ ପାଇବାକୁ ହେଲେ ଯଦି ଏପରି ଅପରିଚ୍ଛନ୍ନ ସାଜିବାକୁ ହୁଏ, ଗଞ୍ଜା ଖାଇବାକୁ ହୁଏ, ଲୋକ ସାଙ୍ଗରେ ସ୍ୱାଭାବିକ କଥା ନ କହିବାକୁ ହୁଏ, ମୋର ସେତେବେଳର କ୍ଷୁଦ୍ର ବୁଦ୍ଧିରେ ଈଶ୍ୱରଙ୍କୁ ପାଇବା ପାଇଁ ଏ କୃଚ୍ଛ୍ର ସାଧନାର କାରଣ ଖୋଜି ପାଇଲି ନାହିଁ। ଭଗବାନ କଥା କହିବା ସଙ୍ଗେ ସଙ୍ଗେ ଅନ୍ତର ଭିତରେ ଯେଉଁ ସୁନ୍ଦର ଓ ସାତ୍ତ୍ୱିକ ଭାବ ଜାଗ୍ରତ ହୋଇ ଉଠେ, ଏହି ଫକୀରଙ୍କୁ ଦେଖି କାହିଁ ମନ ଭିତରେ ସେହି ଭାବ ତ ଜାଗ୍ରତ ହୁଏ ନାହିଁ। ଆହୁରି ଭୟ ଲାଗେ ଏ ଜୀବନ କଥା ଚିନ୍ତା କଲେ, ଏହାପରେ ବହୁ ମଠ ମନ୍ଦିରଙ୍କୁ

ମୁଁ ଯିବାକୁ ଆରମ୍ଭ କଲି। ସବୁ ସ୍ଥାନରେ ଉପର ସଜାଣିଆ ଗୋଟିଏ ଜିନିଷ, ଭିତର ଖୋଜିବାକୁ ଯାଇ ଯାହା କିଛି ଦେଖିବାକୁ ପାଏଁ ସେଥିରେ ଅନ୍ତରରେ ଆସେ ଅତୃପ୍ତ, ଦୁଃଖ। ଏହାର ବହୁଦିନ ପରେ ଭଗବାନ ଶ୍ରୀଶ୍ରୀ ରାମକୃଷ୍ଣଙ୍କର ବିସ୍ତାରିତ ଜୀବନ କାହାଣୀ ଜାଣିବାର ସୌଭାଗ୍ୟ ହେଲା। ଆନନ୍ଦ ଲାଗିଲା ଯେ ସେ ନିଜେ ପରମହଂସ ହେବା ସତ୍ତ୍ୱେ କାହାକୁ ବାଦ୍‌ଦେଇ ସାଧନା କରିନାହାନ୍ତି। ସଂସାରର ସମସ୍ତଙ୍କୁ ନେଇ ସବୁ ଧର୍ମ ଭିତରେ ଯେ ଯେଉଁ ପଥରେ ସାଧନା କରୁଛି ସବୁ କିଛିକୁ ସ୍ୱୀକାର କରି ମନୁଷ୍ୟ ସମ୍ମୁଖରେ ଉପସ୍ଥାପିତ କଲେ ସତ୍ୟ, ଶିବ, ସୁନ୍ଦରର ଅପୂର୍ବ ରୂପ। କରୁଣାମୟ ଈଶ୍ୱରଙ୍କର ଦୟା ଏହି ପୃଥିବୀ ଆଗରେ ରଖିଲେ। ମୋର ଅନ୍ତର ଭିତର ନାଚି ଉଠି କେହି ଯେପରି କହି ଉଠିଲା– ଏହି ତ ସେହି, ଯେ କି ସବୁ କିଛିର ଚରମ ସମାଧାନ। ଶ୍ରୀରାମକୃଷ୍ଣ ପରମହଂସ ହେବା ସତ୍ତ୍ୱେ ଶକ୍ତି ରୂପିଣୀ ମା' ଶାରଦା ଦେବୀଙ୍କୁ କେବେ ଛାଡ଼ି ନଥିଲେ। ବାଦ୍ ଦେଇ ନଥିଲେ ଭଣଜା ହୃଦୟ, ଭାଣିଜୀ ଲକ୍ଷ୍ମୀ, ମାତା, ଜ୍ୟେଷ୍ଠଭ୍ରାତା, ଆତ୍ମୀୟ କାହାକୁ? ପୁରୁଷୋତ୍ତମ ଶ୍ରୀଶ୍ରୀ ରାମକୃଷ୍ଣଙ୍କୁ ମନେ ମନେ ମୁଣ୍ଡରେ ରଖି ଚେଷ୍ଟା କରିବାକୁ ଲାଗିଲି। ତାଙ୍କୁ ହିଁ ଅନୁସରଣ କରିବା ପାଇଁ ମନେ ମନେ ଚିନ୍ତା କରିବାକୁ ଲାଗିଲି– ହେ ଠାକୁର, ତୁମେ ତ କହିଛ ତୁମେ ଆସିବ, ଆଉ ଥରେ ଆସିବ, ଐଶାନ କୋଣରେ ଜନ୍ମ ନେବ। ମୁଁ ଏହି ଧରାଧାମରେ ଦେହ ଧାରଣ କରିବା ପୂର୍ବରୁ ତୁମେ ସମ୍ବରଣ କରିଛ ତବ ନରଲୀଳା। କିନ୍ତୁ ଆସିବ କହି ଯାଇଛ, କାହିଁ? କେବେ ଆସିବ? ମୋର ଏହି ଜୀବନ ଥାଉଁ ଥାଉଁ ପାଇବି କ'ଣ ତୁମରି ଦର୍ଶନ? ପାରିବି କି ତୁମକୁ ଅନୁସରଣ କରି? ମୋର କର୍ଣ୍ଣ କ'ଣ ଶୁଣିବ ତୁମ୍ଭର ସେହି ମଧୁର ଅମୃତମୟ କଣ୍ଠସ୍ୱର? ପାଇବି କ'ଣ ତୁମ୍ଭର ସେହି ମଧୁର, ଅପୂର୍ବ ବାଣୀ? ଶ୍ରୀଶ୍ରୀ ଠାକୁର ରାମକୃଷ୍ଣଙ୍କ କଥା ମନେ ହେବା ସଙ୍ଗେ ସଙ୍ଗେ ମନେ ପଡ଼ିଯାଏ ତା'ଙ୍କ ପୂର୍ବଜନ୍ମର ଇତିହାସ, ଯେତେବେଳେ ସେ ଆସିଥିଲେ ଶ୍ରୀ ଚୈତନ୍ୟ ରୂପେ। ସର୍ବତ୍ୟାଗୀ ସନ୍ନ୍ୟାସୀ ନୀଳାଚଳେ ବସି ନିତ୍ୟାନନ୍ଦଙ୍କୁ ଆଦେଶ ଦେଲେ ଘର ସଂସାର କରି କିପରି ଧର୍ମ ଜୀବନ ଯାପନ କରିବାକୁ ହୁଏ ତାହା ଦେଖାଇବା ପାଇଁ। ସେ କହିଲେ– ଈଶ୍ୱର ଲାଭ ପାଇଁ ମୋର ଏ ଜୀବନରେ ଯେଉଁ ସନ୍ନ୍ୟାସ ମୁଁ ଗ୍ରହଣ କରିଛି, ଏହି ସନ୍ନ୍ୟାସ ଗ୍ରହଣର କିଛି ମାତ୍ର ପ୍ରୟୋଜନ ନାହିଁ, ଲୋକ ରକ୍ଷା ଲାଗି ମୋର ସନ୍ନ୍ୟାସ ଗ୍ରହଣ। ଅଭେଦ ପରମାତ୍ମନେ ପ୍ରଭୁ ନିତ୍ୟାନନ୍ଦଙ୍କୁ ସ୍ୱୟଂ ମହାପ୍ରଭୁ ପଠାଇଲେ ମନୁଷ୍ୟଙ୍କୁ ଦେଖାଇବା ପାଇଁ, ବୁଝାଇବା

ପାଇଁ କିଛି ଛାଡ଼ି ଧର୍ମ ହୁଏ ନାହିଁ। ବରଂ ସବୁ କିଛିକୁ ଖାଣ୍ଟି ଭାବରେ ଧରିବାର ନାମ ହିଁ ଧର୍ମ। ଏହି ଖାଣ୍ଟି ବା ଠିକ୍ ଭାବରେ ଧରିବାକୁ ଗଲେ ସେହି ପଥର ଅନ୍ତରାୟ ଯାହା ତାହାକୁ ନିର୍ବିବାଦରେ ବାଦ୍ ଦେବାକୁ ହୁଏ ଇଷ୍ଟ ନିର୍ଦ୍ଦେଶେ। ଇଷ୍ଟ ହିଁ ହେଉଛନ୍ତି ମୂଳକଥା, ଇଷ୍ଟ ବା ଗୁରୁ ବିନା କୌଣସି ପଥ ନାହିଁ ଆତ୍ମୋପଲବ୍ଧି ବା ଈଶ୍ୱରତ୍ୱ ଲାଭର। ଶ୍ରୀରାମଚନ୍ଦ୍ର, ମହମ୍ମଦ, ଯୀଶୁ, ବୁଦ୍ଧ କାହାରି ସହିତ କାହାରି ପ୍ରଭେଦ ନାହିଁ। ଯେତେ କିଛି ଭେଦାଭେଦ ସୃଷ୍ଟି ହୋଇଛି ଏହି ଭଗବାନ ଯେତେବେଳେ ପୃଥିବୀରେ ଆବିର୍ଭୂତ ହୋଇଛନ୍ତି, ସେମାନଙ୍କ ତିରୋଧାନ ପରେ ଶିଷ୍ୟମାନଙ୍କର ଗଢ଼ିଥିବା ସଂପ୍ରଦାୟ ଭିତରେ। କାହାକୁ କେତେବେଳେ ହେଲେ ଈଶ୍ୱରତ୍ୱ ଲାଭ କରାଇ ଦେଇ ପାରେ ନାହିଁ ସ୍ୱୟଂ ସ୍ୱୟମ୍ଭୂ ମାଲିକ ବ୍ୟତୀତ। ପୃଥିବୀରେ ଦେଖାଯାଇଛି ଏକ ଭଗବାନ ବହୁ ରୂପେ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇଛନ୍ତି ଧରାଧାମେ, ଆଉ ସେହି ବହୁରୂପ ସଙ୍ଗେ ଯୁକ୍ତ ହୋଇଥିବା ଶିଷ୍ୟମାନେ କେହି କାହାକୁ ନ ମାନି, ସ୍ୱୟଂ ଈଶ୍ୱରଙ୍କୁ ଭୁଲି, ଗୁରୁଙ୍କୁ ଭୁଲି ସର୍ବଶେଷରେ ଆତ୍ମପ୍ରତିଷ୍ଠା ପାଇଁ ବ୍ୟର୍ଥ ଚେଷ୍ଟାରେ ବ୍ରତୀ ହୋଇଛନ୍ତି, ଏହାର ନାମ ଧର୍ମର ଗ୍ଲାନି, ସମାଜର ପାପ।

ଯାହାହେଉ, ଚିନ୍ତିତ, ଶ୍ରାନ୍ତ ମନ ନେଇ ବିଭିନ୍ନ ଧର୍ମ ପୁସ୍ତକ ପାଠ କରିବାକୁ ଆରମ୍ଭ କଲି। ବିଭିନ୍ନ ମତ, ପଥର ବହି ପଢ଼ି ଆହୁରି ଜଟିଳତା ବୃଦ୍ଧି ହେବାକୁ ଲାଗିଲା। ବହୁ ଧର୍ମ ପୁସ୍ତକ ଓ ସାଧୁ ସନ୍ୟାସୀ ପଛରେ ବୁଲି ଧର୍ମର ସତ୍ୟତାର ରୂପ ଜାଣିବା ପାଇଁ ବହୁ କିଛି ଅନ୍ୱେଷଣ କରି ଶ୍ରାନ୍ତ କ୍ଳାନ୍ତ ହୋଇ ପଡ଼ିଛି। ଠିକ୍ ସେହି ସମୟରେ ଖୋଜି ଚାଲିଥିଲି, ଯାହାଙ୍କୁ ସେହି ଜୀବନ ଦେବତା ଇଷ୍ଟ ରୂପେ କେତେବେଳେ କେଉଁ ଫାଙ୍କ ଦେଇ ଆସି ଉପସ୍ଥିତ ହେଲେ ମୋ ଜୀବନରେ ତାହା ଜାଣି ପାରିଲି ନାହିଁ, ଅନାଡ଼ମ୍ବର ଭାବରେ ଅତି ସହଜରେ। ଏହାରି ପାଇଁ ଭକ୍ତ, ସାଧକ ଲେଖିଛନ୍ତି— "ଇଷ୍ଟ ତଥା ଈଶ୍ୱର—ସେ ଆସନ୍ତି ତାଙ୍କର ଯେତେବେଳେ ଖୁସି ଆମ୍ଭ ଜୀବନର ଶୁଭ ଲଗ୍ନ ଧରି। କିନ୍ତୁ ସେ ଖବର ଆମ୍ଭର ଜଣା ନାହିଁ। ତେଣୁ ଶ୍ରୀଶ୍ରୀ ଠାକୁର ଆସି ଉପସ୍ଥିତ ହେଲେ ମୋର ଜୀବନ କାଣ୍ଡାରୀ ହୋଇ ଗୋପନେ ଚୁପିଷାରେ ଅନାଡ଼ମ୍ବର ପରିବେଶେ। କିନ୍ତୁ ସେ ଆସିଲେ କ'ଣ ହେବ? ତାଙ୍କୁ ଯେ ବିଶ୍ୱାସ ହୁଏନା। ସେ କି ଉଚ୍ଚଣାମନ ଭିତରେ। ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଯାହାଙ୍କୁ ଗୁରୁ ରୂପେ ପାଇଲି ସେ ଯେ ଜଣେ ସଂସାରି ମନୁଷ୍ୟ,

ଚିରାଚରିତ ପ୍ରଥାର ଏକବାରେ ବିପରୀତ, କେତେ ଆଶା, କେତେ ସ୍ୱପ୍ନ ସବୁକୁ ଗୋଳମାଳ କରିଦେଇ ମୁଁ କ'ଣ କଲି, ମନ ଭିତରେ ଝଡ଼ ବହି ଚାଲିଛି, ଛୁଟି ଚାଲିଛି ତାଙ୍କୁ ଦେଖିବା ନିମନ୍ତେ। ଦିଲ୍ଲୀ ଏକ୍ସପ୍ରେସ ରାତ୍ରିର ଅନ୍ଧକାର ଭେଦ କରି ମେଦିନୀ ପ୍ରକମ୍ପିତ କରି ଛୁଟି ଚାଲିଛି। କିନ୍ତୁ ମୋର ମନ ସାଙ୍ଗରେ ତାଳ ଦେଇ ସେ ଚାଲି ପାରୁନାହିଁ। ଅସ୍ଥିର ମନ, ଖାଲି ଭାବି ଚାଲିଛି– ଦୀକ୍ଷା ନେଲି, ଗୁରୁ ଗ୍ରହଣ କଲି, କିନ୍ତୁ ତାଙ୍କୁ ଦେଖିନାହିଁ। କି ଭୁଲ କଲି ? ପୁଣି ଭାବୁଛି– ନା, ନା, ମୋର ଦୀକ୍ଷା ହୋଇନାହିଁ। ଏତେ ଦିନ ଯାହାକୁ ଖୋଜି ଚାଲିଛି ଏତେ ସହଜରେ କ'ଣ ସେ ଚାଲି ଆସିଲେ ମୋର ଜୀବନକୁ। ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର, ବହୁବାର ବହୁଲୋକଙ୍କ ପାଖରୁ ଶୁଣିଛି ତାଙ୍କର କଥା, ଯେଉଁମାନଙ୍କ ପାଖରୁ ଶୁଣୁଛି ସେହିମାନଙ୍କର ଆଚାର ଆଚରଣ, କଥା ଏବଂ ଚାଲିଚଳନ କାହାରି ସାଙ୍ଗରେ କାହାରି ଯୋଗାଯୋଗ ନାହିଁ। ତେଣୁ କିପରି ବିଶ୍ୱାସ କରିବି ଯେ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ହିଁ ସେହି ପରମପୁରୁଷ, ଶ୍ରୀଚୈତନ୍ୟ, ଶ୍ରୀରାମକୃଷ୍ଣ। ବିଗତ ଦୁଇଦିନ ଦୁଇରାତ୍ରି ନିଦ ହୋଇନାହିଁ। ଭୋକ ଲାଗୁନାହିଁ। ଆଜି ଏହି ମୁହୂର୍ତ୍ତରେ ଆଖିରେ ନିଦ ନାହିଁ। ଗାଡ଼ିରେ ଶୋଇବା ପାଇଁ ସ୍ଥାନ ସଂରକ୍ଷିତ ରହିଛି। ଦେହକୁ ବିଛଣାରେ ଦେଇପାରୁ ନାହିଁ। ଉତ୍ୟକ୍ତ ମସ୍ତିଷ୍କ ଭାବି ଚାଲିଛି କିଏ ସେ ? କିପରି ସେ ଦେଖିବାକୁ ? ଭଗବାନଙ୍କୁ ଅନ୍ତରରୁ ଡାକୁଅଛି– ହେ ଭଗବାନ, ହେ ଠାକୁର ! ଯଦି ତୁମେ ଆସିଥାଅ ଚିହ୍ନିବାକୁ ଦିଅ ପ୍ରଭୁ, ଜାଣିବାକୁ ଦିଅ ପ୍ରଭୁ, ଅଜ୍ଞାନ ମୁହିଁ, ମୋର ଜ୍ଞାନଚକ୍ଷୁ ଉନ୍ମୀଳିତ କର। ଆଉ କେହି ଭଣ୍ଡ ଯଦି ତୁମ୍ଭରି ନାମ ଧରି ଏ ପୃଥିବୀରେ ଆସି ନିଜକୁ ଭଗବାନ ବୋଲି ପରିଚୟ ଦେଇ ଚାଲିଥାଏ, ମୋତେ ଶକ୍ତି ଦିଅ ପ୍ରଭୁ, ହେ ଚିରଚୈତନ୍ୟ ପୁରୁଷ ! ଜାଗ୍ରତ କରି ଦିଅ ମୋର ପୁରୁଷାକାର, ମୁଁ ଯେପରି ବୁଝିପାରେ ସେହି ଅସତ୍ୟ ଭଣ୍ଡକୁ ଏବଂ ଧ୍ୱଂସ କରିଦେଇ ପାରେ ତାର ଏହି ପୈଶାଚିକ ନରଲୀଳା। ମୁଁ ହିଁ ଯେପରି ତାଙ୍କ ଜୀବନର ଶେଷ ଲୋକ ହେବି ଯାହାପରେ ସେ ଆଉ କାହାକୁ ଭଣ୍ଡାଇ ପାରିବେ ନାହିଁ। ହେ ଈଶ୍ୱର ! ତାକୁ ଧ୍ୱଂସ କରିବାର, ଏହି ପୃଥିବୀରୁ ଘୁଞ୍ଚାଇ ଦେବାର ସର୍ବଶକ୍ତି ଦିଅ ମୋତେ। ମୁଁ ଜାଣିଛି ତା ପର ମୁହୂର୍ତ୍ତରେ ସେଠାକାର ସମସ୍ତେ ମୋତେ ମାରି, ଛିଣ୍ଡାଇ ଖଣ୍ଡ ଖଣ୍ଡ କରିଦେବେ। କିନ୍ତୁ ତାହା ହେଉ, ମୋର ଏଜୀବନ ତ ଦିନେ ଯିବ, କିନ୍ତୁ ସେ ଜୀବନ ମୋର ସାର୍ଥକ ହେଉ ଭଣ୍ଡ, ଠକ ଲୋକଙ୍କୁ ଧ୍ୱଂସ କରି। ପର ମୁହୂର୍ତ୍ତରେ ପୁଣି ଭାବୁଛି–ଓଗୋ ଦୟାଳ, ଓଗୋ ଦୀନନାଥ, ମୋର

ଏହା ଦମ୍ଭ ନୁହେଁ, ତୁମ୍ଭ ପାଖରେ କରୁଣା ମିନତି। ମୋତେ ଚିହ୍ନିବାକୁ ଦିଅ, ବୁଝିବାକୁ ଦିଅ, ତୁମ୍ଭେ ଆସିଥିଲେ ତୁମ୍ଭର ଚରଣରେ ଆଶ୍ରୟ ଦିଅ। ତୁମେ ତ ଅନ୍ତର୍ଯ୍ୟାମୀ। ଏପରି ଚିନ୍ତାରେ କେତେବେଳେ ରାତ୍ରି ଭୋର ହୋଇ ଆସିଲା, ଯସିଡ଼ି ଷ୍ଟେସନରେ ଗାଡ଼ି ଆସି ଛିଡ଼ା ହେଲା। ଓହ୍ଲାଇ ପଡ଼ିଲି ମୋର ସାଥୀ ଭକ୍ତପଦ ଘୋଷଙ୍କ ନିର୍ଦ୍ଦେଶରେ। ଦିଲ୍ଲୀ ଏକ୍ସପ୍ରେସରୁ ଓହ୍ଲାଇ ଆଉ ଗୋଟିଏ ଛୋଟ ଗାଡ଼ି ଧରି ଦେଓଘର, ବୈଦ୍ୟନାଥ ଧାମରେ ଆସି ଉପସ୍ଥିତ ହେଲି। ଏଇ ସେହି ମୋର ଚିରବାଞ୍ଛିତ ସ୍ଥାନ ଯାହାକୁ ମୁଁ ଚିନ୍ତାକରି ଆସୁଛି ଗତ ତିନିଦିନ ତିନି ରାତ୍ରି ଧରି। ଭକ୍ତଦା' ସାଙ୍ଗରେ ରିକ୍ସା କରି ଯାଇ ତାଙ୍କ ଘରେ ଉଠିଲି। ଭୋରରେ ଗାଧୋଇ ଉଠି ଦେଖିଲି ଭକ୍ତଦା'ର ଗାଧୋଇବା ହୋଇ ନାହିଁ। ମୁଁ ଘରୁ ବାହାରି ଗୋଟିଏ ରିକ୍ସା କରି ଚାଲିଗଲି ପୋଲିସ ଥାନାକୁ, ସେଠାକାର ଥାନା ଇନଚାର୍ଯ୍ୟଙ୍କୁ କହିଲି—ମୁଁ ଯାଉଛି ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କୁ ଦର୍ଶନ କରିବାପାଇଁ। ଯଦି ଦୁଇଦିନ ଭିତରେ ଆସି ଏଠାରେ ଥାନାରେ ପୁନରାୟ ଖବର ନଦେବି, ତାହାହେଲେ ଠାକୁରଙ୍କ ଆଶ୍ରମରେ ମୋର ଖବର ନେବେ, କାହିଁକି ନା ସେଠାରେ ମୋର ବିପଦ ହେବାର ସମ୍ଭାବନା ଅଛି। ଏହି First information (ପ୍ରଥମ ଖବର) ଥାନାରେ ଦେଇ ରିକ୍ସା କରି ପୁଣି ମୁଁ ଫେରି ଆସିଲି ଭକ୍ତଦା' ଘରେ, ଇତି ମଧ୍ୟେ ଭକ୍ତଦା ପ୍ରସ୍ତୁତ ହୋଇଛନ୍ତି ଆଶ୍ରମକୁ ଯିବାପାଇଁ। ମୋତେ ପଚାରିଲେ ଦାଦା, କୁଆଡ଼େ ଯାଇଥିଲେ। ମୁଁ ସତ୍ୟ ଘଟଣାକୁ ଚାପି କହିଲି— ଟିକିଏ ବୁଲି ଯାଇଥିଲି। ଭକ୍ତଦାଙ୍କୁ ମୁଁ କହିଲି—ଆସନ୍ତୁ ରିକ୍ସାରେ ଆଶ୍ରମକୁ ଯିବା। ଭକ୍ତଦା ରିକ୍ସାରେ ଯିବାକୁ ରାଜି ହେଲେ ନାହିଁ, କଲିକତାରୁ ଆଣିଥିବା ପ୍ରାୟ ୨୦୦ ଆମ୍ବର ଗୋଟିଏ ଝୁଡ଼ି ଯାହାରକି ଓଜନ ପ୍ରାୟ ୩୦/୪୦ କି: ହେବ ତାକୁ ସେ କାନ୍ଧେଇ ଚାଲିବାକୁ ଲାଗିଲେ, ମୁଁ ବି ରିକ୍ସା ଛାଡ଼ିଦେଇ ତାଙ୍କ ସାଥିରେ ଚାଲିବାକୁ ଲାଗିଲି। ଆଉ ମନେ ମନେ ବିସ୍ମିତ ହୋଇ ଭାବିବାକୁ ଲାଗିଲି— ଏହି ଯୁବକ ଭକ୍ତପଦ ଯେକି ବି.ଏ ପାଶ୍, ଏହି ଆମ୍ବ ଝୁଡ଼ି ରିକ୍ସାରେ ନ ନେଇ ନିଜେ କାନ୍ଧେଇ ନେଇ ଚାଲିଛନ୍ତି ସ୍ନାତ ହୋଇ ଶୁଦ୍ଧାଚାରେ, ପୂର୍ବେ ଦେଖିଥିଲି ଘରେ ଆମ୍ବଗୁଡ଼ିକ ଗୋଟି ଗୋଟି କରି ଧୋଉଛନ୍ତି ସ୍ୱାମୀ ସ୍ତ୍ରୀ ମିଶି। କିଏ ଏହି ଠାକୁର ଅନୁକୂଳଚନ୍ଦ୍ର ଯାହାକୁ ଏମାନେ ଏତେ ନିଷ୍ଠା ସହକାରେ ଭକ୍ତି କରୁଛନ୍ତି? ପୁଣି ଭାବିବାକୁ ଲାଗିଲି— ନା, ନା, ମୁଁ ପ୍ରଭାବିତ ହେବି ନାହିଁ।

ଏ ସବୁ ଅଭିନୟ ହୋଇପାରେ। ସେ ମନୁଷ୍ୟକୁ ଅଭିଭୂତ କରିବା ପାଇଁ ବହୁତ କିଛି ଭକ୍ତର ଖୋଳପା ପିନ୍ଧି ମୋ ପାଖେ ଠିଆ ହୋଇ ପାରେ। ମୁଁ ନିଜେ ନ ଦେଖି ନ ବୁଝି କିଛି ଦ୍ୱାରା ପ୍ରଭାବିତ ହେବି ନାହିଁ। ଭାବୁ ଭାବୁ ଅଧମାଇଲ ବାଟ ପାର ହୋଇ ଉପସ୍ଥିତ ହେଲି ଆଶ୍ରମ ଦ୍ୱାରରେ। ଶୁଣିଲି ଏହା ସେହି ବରାଲ୍–ବାଂଲା (ବର୍ତ୍ତମାନ ବରାଲ୍ ବାଂଲା) ଯେଉଁଠାରେ ରହୁଛନ୍ତି ଏମାନଙ୍କର ସଜାଇଥିବା ବା କହିଥିବା ଭଗବାନ– ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର। ଅକମ୍ପିତ ପଦକ୍ଷେପେ ଆଗେଇ ଚାଲିଲି ମୂଳଘର ଆଡ଼କୁ। ବହୁ ଲୋକର ସମାବେଶ, ଲୋକମାନେ ଫେରି ଆସୁଛନ୍ତି, କହୁଛନ୍ତି–ଠାକୁର ନିଦରେ ଶୋଇଛନ୍ତି। ଭୋର ସାଢ଼େ ଛଟା, ଆଂଷାଢ଼ ମାସ, ଠାକୁର ଶୋଇଛନ୍ତି, ଶୁଣି ମନେ ମନେ ଟିକେ ହସ ଆସିଲା– ଏତେବେଳେ ପର୍ଯ୍ୟନ୍ତ ଶୋଇଛନ୍ତି। ଭାବିଲି, ଯାହାହେଉ ଶୋଇବା ଘର ସାମ୍ନାରେ ଦେଖିଲି ଝରକା, କବାଟ ସବୁ ଖୋଲା ହୋଇଛି। ଏମାନଙ୍କର କହିଥିବା ଠାକୁର ଓଲଟା ଦିଗରେ ମୁହଁ କରି ଶୋଇଛନ୍ତି। ମୁଖ ଦର୍ଶନ ହେଲା ନାହିଁ। ସର୍ବ ପ୍ରଥମ ପୃଷ୍ଠ ହିଁ ମୁଁ ଦର୍ଶନ କଲି ଠାକୁରଙ୍କର। ମୁଁ ବି ତତ୍‌କ୍ଷଣାତ୍ ପୃଷ୍ଠ ଦର୍ଶନ କରି ପାଦ ବଢ଼ାଇଲି ଆଶ୍ରମ ବାହାରେ ଆସିବା ପାଇଁ। ପଚାଶ ଷାଠିଏ ପାଦ ଆସିବା ପରେ ଦେଖିଲି ଲୋକମାନେ ଛୁଟି ଚାଲିଛନ୍ତି ସେହି ପୂର୍ବ ନିର୍ଦ୍ଦେଶିତ ପକ୍କାଘର ଆଡ଼କୁ। ଭକ୍ତଦା' ଦୌଡ଼ି ଆସି ମୋତେ କହିଲେ– ସୁଶୀଲଦା' ଆସନ୍ତୁ, ଠାକୁର ଉଠିଛନ୍ତି। ମୁଁ ସେଠାରେ ଯାଇ ଉପସ୍ଥିତ ହେଲି। ଦେଖିଲି ଘର ଭିତରେ ଆଜାନୁଲମ୍ବିତ ବାହୁ ଜଣେ ଲୋକ ବସି ରହିଛନ୍ତି। ମୁଁ ଆଖିକୁ ଅନାଇ ଚମକି ଉଠିଲି। କାହିଁ, ଏପରି ଆଖିତ କାହାରି କେବେ ଦେଖିନାହିଁ? ମୁଁ ଠିକାଦାର ଲୋକ। ଲୋକର ଆଖି ଓ ମୁହଁ ଦେଖି ଲୋକ ଚିହ୍ନିବା ମୋର କାମ। କିନ୍ତୁ ଏଯେ ମୋର ବୁଦ୍ଧିର ଅଗମ୍ୟ, ସଦ୍ୟଜାତ ଶିଶୁ ପରି ଫାଙ୍କା ଦୃଷ୍ଟିରେ ଅନାଇ ରହିଛନ୍ତି ଯେପରି ଜଗନ୍ନାଥଙ୍କର ଚକାଡ଼ୋଳା ଆଖି। ଯାହାହେଉ, ପୁଣି ମନକୁ ଆସିଲା– ନା, ନା, ଏତେ ସହଜରେ ମୁଁ ଭୁଲିବି ନାହିଁ। ଦେଖିବି ଆହୁରି ଭଲ କରି ଦେଖିବି। ଠାକୁର କିନ୍ତୁ ନିର୍ବିକାର ହାତରେ ଗୁଡ଼ାଖୁ ନଳ ଧରି ଧୀରେ ଧୀରେ ଗୁଡ଼ାଖୁ ଟାଣି ଚାଲିଛନ୍ତି। ଦେହଟି ଖଟ ଉପରେ ରହିଲେ ମଧ୍ୟ ସେ ଯେପରି ରହିଛନ୍ତି ଅନ୍ୟ ଏକ ଜଗତରେ। ଦୀକ୍ଷାର ତୃତୀୟ ଦିନେ ଉପସ୍ଥିତ ହେଲି ତାଙ୍କ ସମ୍ମୁଖେ। ଏହି କି ସେହି ମୋର ତପସ୍ୟାଲବ୍ଧ ଇଷ୍ଟଦେବତା ଯେ କି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଠାରୁ ଶ୍ରେଷ୍ଠ, ଯାହା ଭିତରେ ବିଶ୍ୱ ଚରାଚର ନିହିତ ରହିଛି? ବହୁଜନ ପରିବେଷ୍ଟିତ,

ଠାକୁର ଚୁପ୍ ହୋଇ ବସି ରହିଛନ୍ତି ଖଟ ଉପରେ, ଖାଲି ଦେହ ଯଜ୍ଞୋପବୀତଧାରୀ । କାହାରି ମୁହେଁ କୌଣସି କଥା ନାହିଁ । ନିଃଶବ୍ଦେ ଘର ଭିତରେ ପଶି ସର୍ବ ସମ୍ମୁଖରେ ଯାହାଙ୍କୁ ଗୁରୁ ବୋଲି ଗ୍ରହଣ କରିଛି ତାଙ୍କରି ଚରଣ ଉପରେ କେତୋଟି ଟଙ୍କା ରଖି ପ୍ରଣାମ କଲି । ସମବେତ ସମସ୍ତ ଲୋକ ସ୍ୱଚାରେ ପ୍ରତିବାଦ କରି ଉଠିଲେ— ଠାକୁରଙ୍କୁ ଛୁଅଁ ନାହିଁ, ଠାକୁରଙ୍କୁ ଛୁଅଁ ନାହିଁ । ମୁଁ ସେତେବେଳେ ଖଟ ଉପରେ ଟଙ୍କା ରଖି ଠାକୁରଙ୍କ ଚରଣେ ପ୍ରଣତ ହୋଇ ସାରିଛି । କାହାରି କଥା କାନକୁ ନ ନେଇ ମୁଁ ଅନାଇ ରହିଛି ତାଙ୍କରି ଆଖି ଆଡ଼କୁ । ଯାହାଙ୍କୁ ଗୁରୁ ବୋଲି ଗ୍ରହଣ କରିଛି, ଚିହ୍ନିବାକୁ ଚେଷ୍ଟା କରୁଛି ତାଙ୍କୁ ମୋର କ୍ଷୁଦ୍ର ଅଭିଜ୍ଞତା ଦ୍ୱାରା । ଏତେ ଲୋକର ସ୍ୱଚାର ପ୍ରତିବାଦ ଏବଂ ମୋର ବିଧି ବହିର୍ଭୂତ କର୍ମ କୌଣସିଟା ଦେଖିଲି ତାଙ୍କର ମୁହଁର ବା ଆଖିର କୌଣସି ପରିବର୍ତ୍ତନ ଆଣିପାରିଲା ନାହିଁ । ସେ ଯେପରି ଗୁଡ଼ାଖୁ ଟାଣୁଥିଲେ ସେହିପରି ନଳଟି ହାତକୁ ନେଇ ଗୁଡ଼ାଖୁ ସେବନ କରି ଚାଲିଛନ୍ତି । ବାରମ୍ବାର ଚେଷ୍ଟାକଲି ତାଙ୍କ ଆଖି ଭିତରୁ କୌଣସି ଭାବ ଜାଣିବା ପାଇଁ । କିନ୍ତୁ ରକ୍ତପଳାଶଲୋଚନ ସେହି ବିରାଟ ଚକ୍ଷୁ ଦୁଇଟି ଭିତରେ ସଦ୍ୟଭୂମିଷ୍ଠ ଶିଶୁ ପରି ଶୂନ୍ୟ ଦୃଷ୍ଟି ମୋର ସବୁ କିଛି ଚିନ୍ତାଧାରାକୁ ଓଲଟପାଲଟ କରିଦେଲା । ଏହା କିପରି ସମ୍ଭବ ? ଏତେ ଲୋକ, ଏହି ପରିବେଶ, ଏହା ଭିତରେ ରହି କିପରି ସମ୍ଭବ ତାହାଠାରୁ ଉର୍ଦ୍ଧ୍ୱରେ ରହିବା । ଏହି ଲୋକଟି କ'ଣ ଏଠାରେ ନାହାନ୍ତି କି ? ତାଙ୍କର ଦେହ ଏଠାରେ ରହିଛି ସତ୍ୟ, କିନ୍ତୁ ତାଙ୍କର ଉପସ୍ଥିତିର କୌଣସି ଲକ୍ଷଣତ ପ୍ରକାଶ ପାଇନାହିଁ ! କାହାର ବିରୁଦ୍ଧାଚରଣ ବି କଲେ ନାହିଁ, ଆଉ କାହାରିକୁ ସମର୍ଥନ ବି କଲେ ନାହିଁ । ସମସ୍ତେ ଚୁପ୍ ହୋଇଗଲେ । ମୋର ସାଥୀ ଶ୍ରୀ ଭକ୍ତପଦ ଘୋଷ ଶ୍ରୀଶ୍ରୀ ଠାକୁରଙ୍କୁ କହିଲେ— ଠାକୁର ! ଏହି ସୁଶୀଲଦା ଓଡ଼ିଶାର ବାଲେଶ୍ୱରରୁ ଆସିଛନ୍ତି । ହଠାତ୍ ଦେଖିଲି ଠାକୁର ମୋ ଆଡ଼କୁ ଫେରି ଚାହିଁଲେ । କହିଲେ, ଓଡ଼ିଶାରେ ବାଲେଶ୍ୱର କେଉଁଠି ? ପୁରୀରୁ କେତେ ବାଟ ? ମୁଁ ଉତ୍ତର ଦେଲି, ମେଦିନୀପୁର ଜିଲ୍ଲା ପାର ହେଲେ ଓଡ଼ିଶାର ପ୍ରଥମ ଜିଲ୍ଲା ବାଲେଶ୍ୱର । ତା' ପରେ କଟକ ଓ ପୁରୀ । ଠାକୁର କହିଲେ, ମୁଁ ପୁରୀ ଯାଇଥିଲି ଏବଂ ପୁରୀ ସମୁଦ୍ରକୂଳ ଧରି ଚାଲି ଚାଲି ସାକ୍ଷୀଗୋପାଳ ଯାଇଥିଲି । ଇତି ମଧ୍ୟେ ଭକ୍ତପଦ ଘୋଷ ଠାକୁରଙ୍କୁ କହିଲେ, ଠାକୁର ! ସୁଶୀଲଦା'ର ଆପଣଙ୍କ ସହିତ ବହୁତ ପ୍ରାଇଭେଟ୍ କଥା ଅଛି । ଠାକୁର ଉପସ୍ଥିତ ସମସ୍ତଙ୍କୁ କହିଲେ, ତୁମେମାନେ ଯାଅ । ମୁଁ ଠାକୁରଙ୍କୁ କହିଲି— ଠାକୁର ! ମୁଁ ଆସି ଶୁଣିଲି ଆପଣ ଅସୁସ୍ଥ । ଆଖି

ଦୁଇଟି ମଧ୍ୟ ଲାଲ ଦିଶୁଛି। ଏବେ ଆପଣଙ୍କର ଅସୁବିଧା ହେଲେ ମୁଁ ପରେ କଥା ହେବି। ଠାକୁର ସ୍ମିତହାସ୍ୟେ କହି ଉଠିଲେ– ଖୁବ୍ ଭଲ ହେବ, ଖୁବ୍ ଭଲ ହେବ। ଠାକୁର ଆହୁରି କହିଲେ– ମୋର ଭଲ ହେବାକୁ ଯଦି ଆହୁରି ୨/୩ ଦିନ ଡେରି ହୋଇଯାଏ ? ମୁଁ କହିଲି– ଯେତେ ଡେରି ହେଉନା କାହିଁକି, ମୁଁ ଯେତେବେଳେ ଆସିଛି ଆପଣଙ୍କ ସହିତ ନିଶ୍ଚୟ କଥା କହି ଯିବି। ମୋର ବହୁତ କଥା ଅଛି, ବହୁତ ସମୟ ଲାଗିବ। ଠାକୁର ଆନନ୍ଦ ସହକାରେ କହି ଉଠିଲେ– ତାହା ହିଁ ଭଲ ହେବ। ଆପଣ ଠିଆ ହୋଇଛନ୍ତି କାହିଁକି ? ବସନ୍ତୁ। ମୁଁ କହିଲି–ଠାକୁର ! ଆପଣ ମୋତେ ''ଆପଣ'' ବୋଲି କହୁଛନ୍ତି କାହିଁକି ? ମୋର ଭଲ ଲାଗୁ ନାହିଁ, ମନ ଭିତରେ ଅଶ୍ୱସ୍ତି ଆସୁଛି। ଠାକୁର କହିଲେ– ମୋର କିଛି ଠିକ୍ ନାହିଁ। ମୁଁ କେତେବେଳେ 'ଆପଣ', କେତେବେଳେ 'ତୁମେ' ବା କେତେବେଳେ 'ତୁ' ଇତ୍ୟାଦି କହିବି। ତୁମ୍ଭେ କିଛି ମନେ କରିବ ନାହିଁ। ମୁଁ କହିଲି– ଠାକୁର, ଆପଣ ମୋତେ ଆପାଣ ମୋତେ 'ଆପଣ' କହିଲେ ମନ ଆପେ ଆପେ ଖରାପ ହୋଇ ଯାଉଛି, ଇଚ୍ଛାକରି ମନେ କିଛି କରିବା ନ କରିବାର ନାହିଁ। ଇତି ମଧ୍ୟେ ବିଭିନ୍ନ ଲୋକ ବିଭିନ୍ନ ପ୍ରଶ୍ନ କରିବାକୁ ଲାଗିଲେ। ଅତି ସ୍ୱାଭାବିକ ଭାବରେ ଠାକୁର ପ୍ରତି ଲୋକର ପ୍ରଶ୍ନର ଜବାବ ଦେଉଛନ୍ତି। ମୁଁ ଏକ ଦୃଷ୍ଟିରେ ଚାହିଁ ରହିଛି। ମୁହୂର୍ତ୍ତେ ଚିନ୍ତା ନ କରି ଗୋଟିଏ ଦୁଇଟା କଥା ମାଧ୍ୟମରେ ବିରାଟ ବିରାଟ ପ୍ରଶ୍ନର ସମାଧାନ ଅତି ପ୍ରାଞ୍ଜଳଭାବେ କରି ଦେଉଛନ୍ତି। ଶ୍ରୀଯୁକ୍ତ କୃଷ୍ଣପ୍ରସନ୍ନ ଭଟ୍ଟାଚାର୍ଯ୍ୟ (ପ୍ରେସିଡ଼େଣ୍ଟ ଏବଂ ଋତ୍ୱିକ ଆଚାର୍ଯ୍ୟ) ଆସି ସେଠାରେ ଉପସ୍ଥିତ ହେଲେ ଏବଂ ବିଭିନ୍ନ ଶାସ୍ତ୍ରରୁ ବହୁ ପ୍ରଶ୍ନ ଠାକୁରଙ୍କ ନିକଟରେ ଉପସ୍ଥାପିତ କଲେ। ଠାକୁର ସେ ସବୁ ପ୍ରଶ୍ନର ଉତ୍ତର ମଧ୍ୟ ପୂର୍ବବତ୍ ଅତି ଅଳ୍ପ କଥାରେ ପ୍ରାଞ୍ଜଳ ଭାବେ ବୁଝାଇ ଦେଲେ। ମୁଁ ବସି ବସି ଦେଖୁଛି ଓ ଭାବୁଛି କିଏ ଏହି ଲୋକ ? ଗତ କାଲି ରାତ୍ରି ସାରା ଗାଡ଼ିରେ (Reserve Berth ରେ ଶୋଇ) ବିନିଦ୍ର ରଜନୀ ଯାପନ କରି ଭଗବାନଙ୍କୁ ଡାକିଛି– ହେ ଭଗବାନ, ତୁମ୍ଭେ ଯଦି ଆସିଥାଅ ମୋତେ ଜାଣିବାକୁ ଦିଅ, ମୋତେ ବୁଝିବାକୁ ଦିଅ, ମୋର କୌଣସି କ୍ଷମତା ନାହିଁ ଯେ ତୁମକୁ ଟିକିଏ ହେଲେ ଚିହ୍ନି ପାରିବି। ତୁମ୍ଭେ ନିଜେ ଚିହ୍ନା ନ ଦେଲେ କି ସାଧ୍ୟ ମୋର ଯେ ଜାଣିବି ତୁମକୁ। ଏବେ ହିଁ ଚକ୍ଷୁ ସମ୍ମୁଖେ ଠାକୁରଙ୍କୁ ବାରମ୍ବାର ଦେଖି ଭାବୁଛି କିଏ ତୁମେ ? ଯେତେବେଳେ ଭାବୁଛି କିଏ ତୁମ୍ଭେ, ସେତିକିବେଳେ ଦେଖିଛି ଠାକୁର ଫେରି ଅନାଇଛନ୍ତି, ମୋ ଆଡ଼େ– ଶାନ୍ତ, ସୌମ୍ୟ ଦୃଷ୍ଟି। ସେ ଦୃଷ୍ଟିରେ

ରହିଛି ଅଭୟବାଣୀ। ଦିନ ୧୦ଟାରେ ଠାକୁର ଗାଧୋଇବାକୁ ଗଲେ। ସ୍ନାନ ଘରେ ପଶିବା ମୁହୂର୍ତ୍ତେ ହଠାତ୍ ପଛକୁ ଅନାଇ ଭକ୍ତଦାର ସ୍ତ୍ରୀ ଯାହାଙ୍କ ଘରେ ମୁଁ ଉଠିଛି ତାଙ୍କୁ କହିଲେ– ଏ ବୋହୂ ମା', ତୋର ସୁଶୀଲଦା' ଆସିଛି। ରାତ୍ରି ସାରା ଶୋଇ ନାହିଁ। ଘରେ ଯାଇ ଜଲଦି ଏହାଙ୍କ ପାଇଁ ରୋଷେଇ କରି ଏହାଙ୍କର ବିଶ୍ରାମର ବ୍ୟବସ୍ଥା କର। ମନେ ରଖିଥା– ଏହାଙ୍କର ଭଲ ଜିନିଷ ଖାଇବାର ଅଭ୍ୟାସ। ଖୁବ୍ ଭଲ କରି ସବୁ ରୋଷେଇ କରିବୁ। ଠାକୁରଙ୍କର ନିର୍ଦ୍ଦେଶ ପାଇ କଲ୍ୟାଣୀ ଭଉଣୀ ପ୍ରଣତ ହୋଇ ଚାଲିଗଲେ। ମୁଁ କିନ୍ତୁ ସ୍ତମ୍ଭିତ ହୋଇ ଚାହିଁ ରହିଲି ଶ୍ରୀଶ୍ରୀ ଠାକୁରଙ୍କ ଆଡ଼କୁ। ଭାବିଲି– ଠାକୁର କିପରି ଜାଣିଲେ ମୁଁ ରାତ୍ରି ସାରା ଶୋଇନାହିଁ। ମୁଁ ଗାଡ଼ିରେ ଥିଲି, ଠାକୁରଙ୍କର ଶିଷ୍ୟ ମଧ୍ୟ ମୋ Compartment ରେ ନଥିଲେ, ଯେ କି ଆସି ଠାକୁରଙ୍କୁ ଖବର ଦେବେ। ତାହାଛଡ଼ା ମୁଁ ଭୋଜନ–ବିଳାସୀ, ତାହା ମଧ୍ୟ ଠାକୁର ଜ୍ଞାତ ହେଲେ କିପରି? ତେବେ କଣ.... ନା ଥାଉ, ଏତେ ସହଜେ ବିଶ୍ୱାସ କରିବା ଠିକ୍ ହେବ ନାହିଁ। ଲକ୍ଷ ଲକ୍ଷ ଲୋକ ନେଇ ଯାହାର କାରବାର ଏହି ସାମାନ୍ୟ କଥା ତାଙ୍କ ପକ୍ଷରେ ବୁଝିପାରିବା କଠିନ ହେବ ନାହିଁ ନିଶ୍ଚୟ। ବିଭିନ୍ନ ସାଧୁ ସନ୍ନ୍ୟାସୀମାନେ ଅଳ୍ପ ଟିକିଏ ସାଧନା କରି ଏହିପରି କଥା କହିପାରନ୍ତି। ତାହାବୋଲି ସେମାନଙ୍କୁ ଗୁରୁ ବା ଅବତାର ବୋଲି କୁହାଯିବ କାହିଁକି? ମୁଁ ରହିଥିବା ବସାକୁ ଫେରି ଆସିଲା ବେଳେ ବିଭିନ୍ନ ଲୋକମାନଙ୍କୁ ପାଖରୁ ଶୁଣିଲି ଠାକୁର ଗତରାତ୍ରି ଜମା ଶୋଇ ନାହାନ୍ତି। ରାତ୍ରି ୯ଟାଠାରୁ ଭୋର ୪ଟା ପର୍ଯ୍ୟନ୍ତ ଚୁପ୍ ହୋଇ ଜଗି ବସିଥିଲେ, ଯାହାର ପରିଣତିରେ ଠାକୁରଙ୍କର Blood pressure ବଢ଼ି ଯାଇଛି। ଦେହ ଅସୁସ୍ଥ ହୋଇ ଯାଇଛି। ଡାକ୍ତରମାନେ ବ୍ୟସ୍ତ ହୋଇ ଉଠିଛନ୍ତି, ତାଙ୍କ ସୁସ୍ଥ କରିବାପାଇଁ। ମୁଁ ହଠାତ୍ ଚମକି ଉଠିଲି– କିଏ ତୁମ୍ଭେ ଠାକୁର? ଏହା କ'ଣ କେବେ ସମ୍ଭବ? ମୁଁ ଗତକାଲି ରାତ୍ରି ୯ଟାରେ ଗାଡ଼ି ଚଢ଼ିଛି। ବିନିଦ୍ର ରଜନୀରେ ଡାକି ଚାଲିଛି ଈଶ୍ୱରଙ୍କୁ। ତୁମ୍ଭେ ହିଁ କଣ ଭଗବାନ ଯେ କି ମୋର ଡାକ ଶୁଣି ବିନିଦ୍ର ରଜନୀ ଅତିବାହିତ କଲ! ହେ ଠାକୁର! ହେ ଭଗବାନ! ଯଦି ସତ୍ୟ ସତ୍ୟ ତୁମ୍ଭେ ଆସିଥାଅ, ମୋତେ କ୍ଷମାକର। କ୍ଷୁଦ୍ର, ଅଜ୍ଞାନ ମୁଁ। ଜାଣିନାହିଁ ତୁମ୍ଭଙ୍କୁ, ଜାଣିନାହିଁ ସାଧନ ଭଜନ। କେବଳ ନିର୍ମଳ ଅନ୍ତରରେ ଜଣାଇଛି ମୋର ଆକୁଳ ପ୍ରାର୍ଥନା। ପୁଣି ମେଘପରି ଚିନ୍ତା ଆସୁଛି– ଏହି କପୋଳକଳ୍ପନା କାହିଁକି ମୁଁ ମନରେ ସ୍ଥାନ ଦେଉଛି? ଏହା ସତ୍ୟ ଯେ ଠାକୁରଙ୍କର ଦେହ ଅସୁସ୍ଥ ହୋଇ ପଡ଼ିଛି, ସେ ତ ଜଣେ ସାଧାରଣ ଲୋକ। ଦେଖି ଦେଖି ଆହୁରି ଦେଖିବି। ଏତେ ସହଜରେ ବିଶ୍ୱାସ କରିବି ନାହିଁ।

ଘରକୁ ଫେରିଯାଇ ଖାଇପିଇ ଶୋଇ ପଡ଼ିଲି। ଠାକୁରଙ୍କୁ ଦର୍ଶନ ପରେ ମନ ଶାନ୍ତ ହୋଇଛି। ଉତପ୍ତ ମସ୍ତିଷ ଥଣ୍ଡା ହୋଇ ପଡ଼ିଛି। ଆଜିକୁ ତିନିଦିନ ପରେ ନିଦ୍ରାଦେବୀ କୋଳରେ ନିଦ୍ରିତ ହୋଇ ରହିଲି। ଦିନ ୩ଟା ବେଳେ ଉଠି ପୁଣି ଚାଲିଚାଲି ଠାକୁରଙ୍କୁ ଦର୍ଶନ କରିବା ପାଇଁ ଠାକୁର ବାଂଲା ପାଖରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ କେତେକ ଲୋକ ମୋତେ କହିଲେ– ଆପଣ ସୁଶୀଲଦା' କି? ଆପଣ କ'ଣ ଓଡ଼ିଶାରୁ ଆସିଛନ୍ତି? ମୁଁ ସମ୍ମତି ଜଣାଇଲାରୁ ସେମାନେ କହିଲେ– ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଖୋଜୁଛନ୍ତି। ଜଲ୍‌ଦି ଯାଆନ୍ତୁ। ଶ୍ରୀଶ୍ରୀ ଠାକୁରଙ୍କୁ ପାଖରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ସେ ପଚାରିଲେ– ଭଲ ନିଦ୍ରା ହେଲାତ? ଦେହ ଭଲ ଲାଗୁଛିତ? ଠିକ୍ ଏହି କଥାଗୁଡ଼ିକ ମୋର ଠାକୁରଙ୍କୁ ପଚାରିବା କଥା, ମାତ୍ର ଠାକୁର ମୋତେ ପୂର୍ବରୁ ପଚାରି ଦେଲେ। ମୁଁ ଯଥାଯଥ ଉତ୍ତର ଦେଇ ଠାକୁରଙ୍କ ପାଖରେ ବସିଲି। ଏହାରି ଭିତରେ ଲୋକ ଆସି କହିଲେ କୃଷ୍ଣଦା' (ପ୍ରେସିଡେଣ୍ଟ, ସତ୍‌ସଙ୍ଗ) ମୋତେ ତାଙ୍କ ଘରକୁ ଡାକିଛନ୍ତି। ଆଉ ଜଣେ ଆସି କହିଲେ ନନୀଦା' ମୋତେ ଯତୀ ଆଶ୍ରମରେ ଅପେକ୍ଷା କରୁଛନ୍ତି। ମୁଁ ଶ୍ରୀଶ୍ରୀ ଠାକୁରଙ୍କ ମୁଖକୁ ଅନାଇଲାରୁ ସେ କହିଲେ– ଯାଅ, ଏମାନଙ୍କ ସହିତ ଦେଖା କରି ଆସ। ଠାକୁରଙ୍କ ଆଦେଶରେ ମୁଁ ଯାଇ ଯତୀ ଆଶ୍ରମରେ ଉପସ୍ଥିତ ହେଲି। ନନୀଦା' ମୋତେ ଦେଖି କହିଲେ– ଆସନ୍ତୁ ଦାଦା! ମୁଁ କହିଲି, ଆପଣଙ୍କୁ ମୁଁ ଚିହ୍ନିନାହିଁ। ଆପଣ ମୋତେ କାହିଁକି ଡାକୁଛନ୍ତି? ନନୀଦା' କହିଲେ ଆମ୍ଭ ସମସ୍ତଙ୍କର କାରଣ ତ ଗୋଟାଏ। ମୁଁ ଠାକୁରଙ୍କ ପାଖକୁ ଯାଇଥିଲି, ଠାକୁର କହିଲେ ଆପଣଙ୍କ ସହିତ କଥା କହିବା ପାଇଁ। ତେଣୁ ମୁଁ ଡାକିଲି ଠାକୁରଙ୍କ କଥା କହିବି ବୋଲି। ମୁଁ କହିଲି, ଆପଣ କିଛି ମନେ କରିବେ ନାହିଁ। ମୁଁ ଠାକୁରଙ୍କର କୌଣସି କଥା ଆପଣଙ୍କମାନଙ୍କ ନିକଟରୁ ଶୁଣିବାକୁ ଚାହେଁ ନାହିଁ। ମୁଁ ତାଙ୍କର ଶିଷ୍ୟ, ସେ ମୋର ଗୁରୁ। ମୋର ଗୁରୁଙ୍କ ପାଖରୁ ଜାଣିନେବି ଯାହାକିଛି ମୋର ଜାଣିବା। ମୁଁ କିଛି ଜାଣି ନାହିଁ ବୋଲି ତ ତାଙ୍କ ପାଖକୁ ଆସିଛି। ମୋର ଆପଣମାନଙ୍କ ପାଖରୁ କିଛି ଜାଣିବାର ନାହିଁ ବା ଆପଣମାନଙ୍କ ପାଖକୁ ମଧ୍ୟ ଆସିନାହିଁ। ମୁଁ ଏହା କହି ଲୋକଙ୍କ ସାଙ୍ଗରେ କୃଷ୍ଣଦା' ଘରକୁ ଗଲି। କୃଷ୍ଣଦା' ଘରେ ଖଟ ଉପରେ ବସିଥିଲେ। ମୋତେ ଦୂରରୁ ଦେଖି କହିଲେ– ଆସନ୍ତୁ ଦାଦା, ଆସନ୍ତୁ। ମୁଁ ଘର ଭିତରେ ପଶି ତାଙ୍କୁ

କହିଲି, ଆପଣ ହିଁ କୃଷ୍ଣଦା'। ସକାଳେ ମୁଁ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଆପଣଙ୍କୁ ଦେଖିଛି, ଚିହ୍ନିପାରି ନଥିଲି। ଆପଣଙ୍କ କଥା ବହୁ ଲୋକଙ୍କ ପାଖରୁ ଶୁଣିଛି। ଆପଣଙ୍କର ଲେଖିଥିବା 'ନାନା ପ୍ରସଙ୍ଗେ', 'ଯାଜନ–ସଂକେତ' ବହି ପଢ଼ିଛି। କୃଷ୍ଣଦା' ମୋତେ କୁଣ୍ଢାଇ ପକାଇ ତାଙ୍କ ଖଟ ଉପରେ ଆଣି ବସାଇଲେ। ପଚାରିଲେ, ଠାକୁରଙ୍କୁ କିପରି ଲାଗିଲା? ମୁଁ କହିଲି, ଏତେ ପର୍ଯ୍ୟନ୍ତ ଲାଗିବା ନ ଲାଗିବା ବୁଝିପାରୁ ନାହିଁ। କାହିଁକି ନା ଠାକୁରଙ୍କ ସହିତ ମୋର କୌଣସି ଅନ୍ତରର କଥା ହୋଇନାହିଁ। ଆଉ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଠାକୁରଙ୍କ ପ୍ରସଙ୍ଗ ବାଦ୍ ଦେଇ ଅଲଗା କୌଣସି କଥା ଯଦି ଥାଏ କୁହନ୍ତୁ। କୃଷ୍ଣଦା' କହିଲେ, ମାତାଲଙ୍କ ସହ ମାତାଲ୍ କଥା କହନ୍ତି। ସେହିପରି ଆମ୍ଭ ଜୀବନରେ ଠାକୁରଙ୍କ ଛଡ଼ା ଆଉ କ'ଣ ଅଛି? କଥା କହିବାକୁ ଗଲେ ତାଙ୍କ କଥା ଆସିବ ହିଁ ଆସିବ। ତାପରେ ସେ କହିଲେ, ଯାହାହେଉ କିଛି ଅସୁବିଧା ହେଲେ ମୋତେ କହିବେ, ମୁଁ ସବୁ ଠିକ୍ କରି ଦେବି। ତା'ପରେ କୃଷ୍ଣଦା'ଙ୍କ ସହିତ ଜ୍ୟୋତିଷଶାସ୍ତ୍ର ସମ୍ବନ୍ଧରେ ଆଲୋଚନା ହେଲା। କୃଷ୍ଣଦା ଗୋଟିଏ ସରକାରୀ କଲେଜରେ Principal (ଅଧ୍ୟକ୍ଷ) ଥିଲେ ଯାହାଙ୍କୁ ଜ୍ଞାନ ଓ ବିଦ୍ୟାର ପାରାବାର କହିଲେ ଚଳେ। ସୁଧୁ ତାହାହିଁ ନୁହେଁ, ସତ୍‌ସଙ୍ଗ ଜଗତରେ ଶ୍ରୀଶ୍ରୀ ଠାକୁରଙ୍କ ପରେ ଯାହାକଥା ସମସ୍ତଙ୍କ ମନେ ପଡ଼େ ସେ ହେଉଛନ୍ତି କୃଷ୍ଣ ପ୍ରସନ୍ନ ଭଟ୍ଟାଚାର୍ଯ୍ୟ। ଅର୍ଥ–ସମ୍ପଦ, ଜ୍ଞାନ ଗାରିମା, ବଂଶ ମର୍ଯ୍ୟାଦା ସବୁ କିଛି ରହିବା ସତ୍ତ୍ୱେ ଶ୍ରୀଶ୍ରୀ ଠାକୁରଙ୍କ ସଂସ୍ପର୍ଶରେ ଆସିବା ସଙ୍ଗେ ସଙ୍ଗେ ସେ ସବୁ କିଛି ଛାଡ଼ି ଦେଇ ଶ୍ରୀଶ୍ରୀ ଠାକୁରଙ୍କ ଚରଣତଳେ ରହି ସାଧନାରେ ବ୍ୟାପୃତ ରହିଲେ। ଆର୍ଥିକ ଦୁର୍ଦ୍ଦଶାରେ ନିକ୍ଷେପିତ ହୋଇଛନ୍ତି ତାଙ୍କର ସ୍ତ୍ରୀ, ପୁତ୍ର। ସେମାନେ ମଧ୍ୟ ତାଙ୍କ ସହିତ ଆଶ୍ରମରେ ରହୁଥିଲେ। ସମସ୍ତ ପ୍ରକାର ଦୁର୍ଦ୍ଦଶାରେ ପ୍ରପୀଡ଼ିତ ହେବା ସତ୍ତ୍ୱେ ସେ କାହାରି ଆଗରେ ମୁଣ୍ଡନତ କରି ନାହାନ୍ତି। ଇଷ୍ଟଙ୍କୁ ମୁଣ୍ଡରେ ନେଇ ତାଙ୍କ ନିର୍ଦ୍ଦେଶିତ ପ୍ରତିଟି କର୍ମ ପାଳନ କରି ଚାଲିଥିଲେ ଦ୍ୱିଧାହୀନ ଚିତ୍ତେ ଅବନତ ମସ୍ତକରେ। ସାଧନାରେ ଉନ୍ନତ, ସାଧକ ଶ୍ରେଷ୍ଠ ଏହି ବୀର ପୁରୁଷଙ୍କୁ ଦେଖି ଅନ୍ତର ଶ୍ରଦ୍ଧାପ୍ଲୁତ ହୋଇ ଉଠିଲା। କିଛି ସମୟ ପରେ ତାଙ୍କ ପାଖରୁ ଉଠି ଆସି ଶ୍ରୀଶ୍ରୀ ଠାକୁରଙ୍କ ନିକଟକୁ ଆସିବାପରେ ଠାକୁର ପଚାରିଲେ, କି କଥା ହେଲା କେଷ୍ଟଦା' ସଙ୍ଗରେ? ମୁଁ କହିଲି– ଠାକୁର, କୃଷ୍ଣଦା, ନନୀଦା ସମସ୍ତେ ଆପଣଙ୍କର

କଥା ଓ ଆପଣଙ୍କର ହିଁ ଗୁଣକୀର୍ତ୍ତନ କରୁଥିଲେ। କିନ୍ତୁ ମୁଁ ତାଙ୍କର ସେ କଥା ଶୁଣିଲି ନାହିଁ। ମୁଁ ସେମାନଙ୍କୁ କହିଲି– ମୁଁ ଆପଣଙ୍କ କଥା ତାଙ୍କ ପାଖରୁ ଶୁଣିବି ନାହିଁ। ଆପଣ ମୋର ଗୁରୁ, ପଥ ପ୍ରଦର୍ଶକ। ମୁଁ ଆପଣଙ୍କ ପାଖରୁ ହିଁ ଜାଣିବି ସବୁକିଛି। ମୋର ଏହି କଥାରେ ନନୀଦା' କ୍ଷୁଣ୍ଣ ହେଲେ ମଧ୍ୟ କୃଷ୍ଣଦା'ଙ୍କୁ ଦେଖିଲି ସନ୍ତୁଷ୍ଟଚିତ୍ତେ କଥାଗୁଡ଼ିକ ନେଲେ ଏବଂ ଜ୍ୟୋତିଷଶାସ୍ତ୍ର ଆଲୋଚନା କଲେ ମୋ ସାଙ୍ଗରେ। ଶ୍ରୀଶ୍ରୀ ଠାକୁର କହିଲେ– ମୋର ଦେହଟା ଏବେ ପର୍ଯ୍ୟନ୍ତ ଭଲ ହୋଇନାହିଁ। ତୁମ୍ଭର private କଥା ପରେ କହିଲେ ଅସୁବିଧା ହେବ ନାହିଁ ତ? ଠାକୁରଙ୍କ ମୁହଁରେ ଯାହା କହିଲେ ମଧ୍ୟ ଅନ୍ତର ଭିତରୁ ମୋର ମନକଥା କହିବା ପାଇଁ ମୁଁ ବିଶେଷ ବ୍ୟଗ୍ର ହୋଇ ପଡ଼ିଥିଲି। କିନ୍ତୁ ଠାକୁର ନିଜଠାରୁ ଯେତେବେଳେ ଏହି କଥା ପଚାରିଲେ ସେତେବେଳେ ମୋର ମନ ଶାନ୍ତ ହୋଇଗଲା। ମୁଁ କହିଲି– ଠାକୁର! ମୁଁ ତ ଆପଣଙ୍କୁ କହିଛି ସୁସ୍ଥ ହେଲେ ଆପଣଙ୍କ ସାଙ୍ଗରେ କଥା କହିବି, ତାହା ଯେତେଦିନ ଲାଗୁନା କାହିଁକି? ଏହିପରି ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ଦୁଇଦିନ ବିତିଗଲା। ତୃତୀୟଦିନ ଦିନ ସାଢ଼େ ତିନିଟା ବେଳେ ଶ୍ରୀଶ୍ରୀ ଠାକୁର ଯତୀ ଆଶ୍ରମର ବାରଣ୍ଡାରେ ବସିଛନ୍ତି। ସେଠାରେ ବାହାର ଲୋକଙ୍କର ଯିବାର ହୁକୁମ୍ ନାହିଁ। ସ୍ତ୍ରୀଲୋକମାନଙ୍କର ପଶିବା ଏକଦାରେ ନିଷିଦ୍ଧ ଯତୀ ଆଶ୍ରମର ଚତୁଃପାର୍ଶ୍ୱରେ ଯେଉଁ କାଠର ରେଲିଂ ଦିଆହୋଇଛି ସେଠାରୁ ଆମେ ତା'ର ବାହାରେ ବହୁଲୋକ ଠିଆ ହୋଇ ଠାକୁରଙ୍କୁ ଦର୍ଶନ କରୁଛୁଁ। ଏହି ସମୟରେ ଯତୀ ନନୀଦା ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ଆସି ମୋତେ କହିଲେ– ଆପଣ ଟିକିଏ ଘୁଞ୍ଚି ଛିଡ଼ା ହୁଅନ୍ତୁ। ଅଶ୍ୱତ୍ଥ ଗଛ ଫାଙ୍କ ଦେଇ ସୂର୍ଯ୍ୟକିରଣ ଆସି ଆପଣଙ୍କ ମୁହଁରେ ପଡ଼ୁଛି। ଠାକୁର ବ୍ୟସ୍ତ ହେଉଛନ୍ତି। ମୋ ହାତରେ କହି ପଠାଇଲେ ଆପଣଙ୍କୁ ଘୁଞ୍ଚି ଠିଆ ହେବାପାଇଁ।

ଠାକୁରଙ୍କର ଏହି ସ୍ନେହର ଆଭାସ ପାଇ ମୋର ମନ ଆନ୍ଦୋଳିତ ହୋଇ ଉଠିଲା। ମୁହୂର୍ତ୍ତ ପରେ ନନୀଦା' ପୁଣି ଆସି କହିଲେ– ଠାକୁର ଆପଣଙ୍କୁ ଭିତରେ ଡାକୁଛନ୍ତି, ଆସନ୍ତୁ। ମୁଁ ଠାକୁରଙ୍କ ପାଖରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ସେ କହି ଉଠିଲେ– ତୁମ୍ଭେ ଆସି ବାହାରେ ଛିଡ଼ା ହୋଇଛ କାହିଁକି? ଏବେଠାରୁ ମୁଁ କହି ରଖୁଛି ଯେତେବେଳେ ଆସିବ ଏଠାରେ ଆସି ମୋ ପାଖରେ ବସିବ। ଏହାପରେ ଠାକୁର ମୋତେ କହିଲେ– ତୁମର

କ'ଣ private କଥା ଅଛି ମୋତେ କୁହ। ଏ ଓଳି ମୋର ଦେହ ଟିକିଏ ଭଲ ଅଛି। ମୁଁ କହିଲି– ଠାକୁର, ମୋର କଥା ତ ପ୍ରାଇଭେଟ, ଆଉ ଏଟା ଯତୀ ଆଶ୍ରମ। ଯତୀ (ସନ୍ୟାସୀ)ମାନେ ଅଛନ୍ତି। ସେମାନେ କୁଆଡ଼େ ଯିବେ? ମୋର ଏକାନ୍ତ କଥା ଆଉ କେତେବେଳେ ହେଲେ ଆପଣଙ୍କୁ ମୁଁ କହିବି। ଠାକୁର ସଙ୍ଗେ ସଙ୍ଗେ ଉଠି ଠିଆହୋଇ ପଡ଼ିଲେ ଏବଂ କଳାରଙ୍ଗର ଯୋତଟିଏ ପିନ୍ଧି ମୋତେ କହିଲେ– ଚାଲ, ଯିବା। ଧିର ପଦକ୍ଷେପରେ ଯତୀ ଆଶ୍ରମରୁ ବାହାରି ତା'ର ନିକଟରେ ଅଶ୍ୱତ୍ଥ ଗଛ ତଳେ ଆସି ଠିଆ ହେଲେ। ଲୋକେ ଚେୟାର ନେଇ ଠାକୁରଙ୍କୁ ବସିବାକୁ ଦେଲେ। ଗଡ଼ଗଡ଼ା, ପିକଦାନି (ତମାଖୁ ଖାଇବାର ହୁକା) ଜଳପୂର୍ଣ୍ଣ ଗାରୁ, ଗାମୁଛା ଏବଂ ହାତପଙ୍ଖା ନେଇ ସେଠାରେ ଆସି ଲୋକ ଉପସ୍ଥିତ ହେଲେ। ଠାକୁର ସବୁ ଜିନିଷ ସେଠାରେ ରଖିଦେଇ ସମସ୍ତଙ୍କୁ ଚାଲି ଯିବାକୁ କହିଲେ। ମୁଁ ହାତପଙ୍ଖାଟି ନେଇ ଠାକୁରଙ୍କୁ ବିଞ୍ଚଣା କରିବାକୁ ଲାଗିଲି। ଶ୍ରୀଶ୍ରୀ ଠାକୁର କହିଲେ– କହ ତୁମ୍ଭର କ'ଣ କଥା? ମୁଁ ପ୍ରଶ୍ନ କଲି– ଠାକୁର ଆପଣଙ୍କ ଉପରେ ମୋର ବିଶ୍ୱାସ ଆସୁନାହିଁ। ଆପଣଙ୍କର ଶିଷ୍ୟମାନେ ଆପଣଙ୍କୁ ଭଗବାନ, ମହାପ୍ରଭୁ, ଈଶ୍ୱର ଇତ୍ୟାଦି କେତେ କ'ଣ କୁହନ୍ତି, ଏହା କ'ଣ ସତ୍ୟ?

ଠାକୁର କହିଲେ– ମୋତେ ଯିଏ ଯାହା କହୁନା କାହିଁକି ମୁଁ ଅସଲରେ ଶିବଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ପୁଅ ଅନୁକୂଳଚନ୍ଦ୍ର ଚକ୍ରବର୍ତ୍ତୀ। ଏହାଛଡ଼ା ମୋତେ ଯିଏ ଯେପରି ଭାବେ ମୁଁ ତା' ପାଖରେ ତାହା ହିଁ। ତୁମ୍ଭର ମୋ ଉପରେ ବିଶ୍ୱାସ ନାହିଁ–ଏହା ହିଁ ତ ସ୍ୱାଭାବିକ। ମୋତେ ଦେଖିନାହଁ, ଜାଣିନାହଁ, ବୁଝିନାହଁ, ମୋତେ ବିଶ୍ୱାସ କରିବ କିପରି? ମୋତେ ଦେଖି, ଶୁଣି, ଜାଣି ମୁଁ ଯାହା ବୋଲି ତୁମ୍ଭର ବିଶ୍ୱାସ ହେବ, ମୁଁ ତୁମ୍ଭ ପାଖରେ ତାହା ହିଁ। ଅନ୍ୟ କାହା କଥାରେ ପଡ଼ି କିଛି କରିବ ନାହିଁ। ନିଜେ ବାସ୍ତବ ଭାବରେ ଦେଖି ଯାହା ବୁଝିବ ତାହା ହିଁ ସତ୍ୟ ଏବଂ ସେହି ସତ୍ୟ ଯାହା ବୁଝିଥିବ ତାହା ମୁକ୍ତ କଣ୍ଠରେ ଲୋକ ଆଗରେ କହିବ। ସତ୍ୟ କହିବାକୁ କେତେବେଳେ ହେଲେ ଅନ୍ତରରେ ଦ୍ୱିଧା ରଖିବ ନାହିଁ।

ମୋର ପରବର୍ତ୍ତୀ ପ୍ରଶ୍ନ ଠାକୁରଙ୍କ ନିକଟରେ କହିଲି– ଆପଣ ଦୀକ୍ଷା ଦେବା ପାଇଁ ଯେଉଁମାନଙ୍କୁ ନିଯୁକ୍ତ କରିଛନ୍ତି ଋତ୍ୱିକ ହିସାବରେ, ବିଶେଷ

କରି ମୋ ସମ୍ପର୍କରେ ଯେଉଁମାନେ ଆସିଛନ୍ତି ସେମାନଙ୍କର କୌଣସି ଆଧ୍ୟାତ୍ମିକ ଉନ୍ନୟନ ହୋଇଛି ବୋଲି ମୁଁ ବିଶ୍ୱାସ କରେ ନାହିଁ। ତାହାହେଲେ ସେମାନେ ଦୀକ୍ଷା ଦେବାର ଅଧିକାରୀ ହେଲେ କିପରି? ଆଉ ଏହି ସାଧାରଣ ସ୍ତରର ଲୋକ ଯେଉଁ ବୀଜମନ୍ତ୍ର ଦେଉଛନ୍ତି ତାହା ଯେ ଅସଲରେ ଆପଣଙ୍କର ବୀଜମନ୍ତ୍ର ତାହା ବା ଜାଣିବି କିପରି? ମୋର ତ ସେଥିରେ ବିଶ୍ୱାସ ଆସୁନାହିଁ।

ଶ୍ରୀଶ୍ରୀ ଠାକୁର କହିଲେ– ଦୀକ୍ଷା ମୁଁ ନିଜେ ଦିଏ। ଋତ୍ୱିକମାନେ ହେଉଛନ୍ତି ମୋର ବାର୍ତ୍ତାବାହୀ। ପୋଷ୍ଟ ଅଫିସର ପିଅନ ଯେପରି ସ୍ୱାମୀର ଚିଠି ନେଇ ସ୍ତ୍ରୀ ପାଖରେ ପହଞ୍ଚାଇ ଦିଏ, ଋତ୍ୱିକମାନେ ମଧ୍ୟ ସେହିପରି ମୋର ନିର୍ଦ୍ଦେଶରେ ମୋ କଥା ନେଇ ପହଞ୍ଚାଇ ଦିଅନ୍ତି ତାଙ୍କରି ପାଖରେ ଯେଉଁମାନେ କି ଅନ୍ତରରୁ ପରମ ପିତାଙ୍କୁ ଚାହୁଁଛନ୍ତି। ଋତ୍ୱିକମାନେ ଗୁରୁ ନୁହଁନ୍ତି। ତାଙ୍କ ସାଙ୍ଗରେ ଯଜମାନର ସମ୍ପର୍କ ବଡ଼ଭାଇ ପରି। ଋତ୍ୱିକ୍ ସେହିମାନଙ୍କୁ ହିଁ କରାଯାଏ ଯେଉଁମାନଙ୍କର ଇଷ୍ଟ ଉପରେ ଟାଣ ଥାଏ। ଇଷ୍ଟବାର୍ତ୍ତା ବହନ କରି ନିଷ୍ଠା ସହକାରେ ଯଜମାନମାନଙ୍କ ପାଖରେ ପହଞ୍ଚାଇ ଦିଏ। ଏହି ଋତ୍ୱିକ୍‌ମାନଙ୍କ ମଧ୍ୟରେ ଯେ ଆଧ୍ୟାତ୍ମିକ ଉନ୍ନତି ରହିବ ନାହିଁ ତାହା ନୁହେଁ, ଏହାଙ୍କ ଭିତରେ ଯେ ଯେତିକି ସାଧନାରେ ଉନ୍ନତ ଓ ଇଷ୍ଟସ୍ୱାର୍ଥୀ ହୋଇ ଉଠିବ ଏବଂ ଯଜମାନ ପରିଚର୍ଯ୍ୟାରେ ରତ ରହିବ ପ୍ରକୃତି ତାହାଙ୍କୁ ସେତିକି ପୁରସ୍କୃତ କରିବ। ତୁମ୍ଭର ଯେ ଋତ୍ୱିକ୍ ତୁମ୍ଭେ ଯଦି ବୁଝିପାରୁଛ ସେ ଉନ୍ନତ ଚରିତ୍ରର ନୁହେଁ, ତାହାହେଲେ ସେ ଯେପରି ଉନ୍ନତ ହୋଇ ଆଗେଇ ଚାଲିପାରିବ, ତାହା ପାଇଁ ଚେଷ୍ଟା ରଖିବ। ଶ୍ରୀଶ୍ରୀ ଠାକୁର ଆହୁରି କହିଲେ– ରେଡ଼ିଓ–ଷ୍ଟେସନ ଅଫିସରୁ ସବୁ କିଛି ଗୀତ, ଖବର ବ୍ରୋଡ଼୍‌କାଷ୍ଟ ହେଉଛି। ଘରେ ବସି ତୁମ୍ଭେ ଶୁଣୁଛ ଯାହା ମାଧ୍ୟମରେ ସେହି ରେଡ଼ିଓ ଆଉ ଋତିକ୍ ପ୍ରାୟ ଏକ କଥା। ରେଡ଼ିଓ ସେଟ୍‌ଟିକୁ ଯେତିକି ପରିଷ୍କାର ପରିଚ୍ଛନ୍ନ କରି ସଜାଡ଼ି ରଖିବ, ତୁମ୍ଭ ପାଖରେ Radio Station ର ପ୍ରୋଗ୍ରାମ୍ ମଧ୍ୟ ସେହିପରି ସ୍ପଷ୍ଟ ହୋଇ ଆସିବ। ମନେ ରଖିବ ରେଡ଼ିଓ ବାକ୍ସଟି ଖରାପ ହେଲେ ଯେପରି ତାକୁ ସଜାଡ଼ି ଠିକ୍ କରି ନେଉଛ, ଋତ୍ୱିକ ମଧ୍ୟ ଠିକ୍ ବିବେଚିତ ନ ହେଲେ ସଜାଡ଼ି ଠିକ୍ କରିନେବା କର୍ତ୍ତବ୍ୟ। କିନ୍ତୁ ଯଦି କେବେ ଦେଖ ରେଡ଼ିଓ ସେଟ୍‌ଟି ଦ୍ୱାରା ତୁମ୍ଭର ଉଦ୍ଦେଶ୍ୟ ସାଧିତ ହେଉନାହିଁ, ତାହାହେଲେ ଖରାପସେଟ୍‌କୁ ବର୍ଜନ କରି ନୂଆ ଭଲ ସେଟ୍ ଆଣି ଘରେ ରଖୁଛ, କାହିଁକି ନା ରେଡ଼ିଓ ସେଟ୍‌ଟି ରଖିବା ତୁମ୍ଭର ମୂଳ

ଉଦ୍ଦେଶ୍ୟ ନୁହେଁ, ତୁମ୍ଭର ଉଦ୍ଦେଶ୍ୟ ହେଉଛି ଜଗତର ଖବର ରଖିବା ନିମନ୍ତେ ରେଡ଼ିଓ ଷ୍ଟେସନ ସାଙ୍ଗରେ ଯୋଗାଯୋଗ ରକ୍ଷା କରିବା। ସେହିପରି ଋତ୍ୱିକ ଯଦି ବିଭ୍ରାନ୍ତ, ଇଷ୍ଟନିଷ୍ଠ ଓ ଇଷ୍ଟସ୍ୱାର୍ଥୀ ନହୁଅନ୍ତି, ଚେଷ୍ଟା ରଖିବ ତାଙ୍କୁ ଇଷ୍ଟମୁଖୀ କରିବା ପାଇଁ। ଯଦି ଦେଖୁଛ ତାହା କୌଣସି ପ୍ରକାରେ ସମ୍ଭବ ହୋଇ ଉଠି ପାରୁନାହିଁ ତାହାହେଲେ ନିଶ୍ଚିତ ଭାବରେ ତାଙ୍କ ପାଖରୁ ଦୂରେଇ ରହିବ। ଏହାଦ୍ୱାରା ଇଷ୍ଟଙ୍କ ଆଶୀର୍ବାଦଠାରୁ ବଞ୍ଚିତ ହେବ ନାହିଁ। ତୀକ୍ଷ୍ଣ ଦୃଷ୍ଟି ନେଇ ଲକ୍ଷ୍ୟ ରଖିବ ତୁମ୍ଭେ ଯାହାଙ୍କୁ ଇଷ୍ଟବିରୋଧୀ କହୁଛ ସତ୍ୟ ସତ୍ୟ ସେ ଇଷ୍ଟବିରୋଧୀ, ନା ତୁମ୍ଭର Complex କୁ Comply କରୁନାହିଁ ବୋଲି ତାକୁ ଭଲ ଲାଗୁନାହିଁ। ଇଷ୍ଟସ୍ୱାର୍ଥ ଓ ଇଷ୍ଟପ୍ରତିଷ୍ଠା ହିଁ ମୂଳକଥା। ସେହି ପଥରେ ଯେ ତୁମ୍ଭଙ୍କୁ ସାହାଯ୍ୟ କରିବ ସେ ହିଁ ତୁମ୍ଭ ପାଖରେ ଆଦରଣୀୟ ଏବଂ ବରଣୀୟ। ଆଉ ସେ ଯଦି ଋତ୍ୱିକ୍ ହୁଅନ୍ତି ତାହାହେଲେ ତ କଥା ନାହିଁ। ଏହା କହିବା ପରେ ଠାକୁର ନିଜେ ବୀଜମନ୍ତ୍ର ଉଚ୍ଚାରଣ କରି ମୋତେ କହିଲେ– ତୁମ୍ଭଙ୍କୁ ଏହି ମନ୍ତ୍ର ଦିଆ ହୋଇଛି ତ? ମୁଁ ସମ୍ମତି ଜ୍ଞାପନ କଲାପରେ ଠାକୁର କହିଲେ ମୁଁ ପରେ ଦେଖାଇ ଦେବି କିପରି ନାମ, ଧ୍ୟାନ, ଜପ ଇତ୍ୟାଦି କରିବାକୁ ହେବ।

ଏହାର ତିନି ଚାରିଦିନ ପରେ ଠାକୁର ଦିନେ ଘର ଭିତରେ ମୋତେ ନେଇ ଏକାନ୍ତରେ ବସାଇ ସବୁ ବୁଝାଇ ଓ ଦେଖାଇ ଦେଲ। ମୁଁ ପରବର୍ତ୍ତୀ ପ୍ରଶ୍ନ ଠାକୁରଙ୍କୁ କଲି– ମୁଁ ପୂର୍ବେ କୃଷ୍ଣମନ୍ତ୍ରରେ ଦୀକ୍ଷିତ ଥିଲି, ତାଙ୍କୁ ହିଁ ଧ୍ୟାନ କରୁଥିଲି। ଏବେ ତାଙ୍କ ଧ୍ୟାନ ଛାଡ଼ି ଆପଣଙ୍କ ଧ୍ୟାନ କରିବାକୁ ମନ ଚାହୁଁନାହିଁ। ଆଉ କରିବି ବା କାହିଁକି? ଆପଣ ତ ମନୁଷ୍ୟ, ଆପଣଙ୍କୁ ଧ୍ୟାନ କରି କ'ଣ ପାଇବି? ଶ୍ରୀଶ୍ରୀ ଠାକୁର କହିଲେ– ମୁଁ ଯେଉଁ ମନ୍ତ୍ର ତୁମ୍ଭଙ୍କୁ କହିଲି ଏବଂ ଯେଉଁ ଭାବେ ଧ୍ୟାନ କରିବାର ପଦ୍ଧତି ଦେଖାଇଦେଲି ସେହି ଭାବରେ ନାମ କରିବ। କୃଷ୍ଣଙ୍କୁ ଧ୍ୟାନ କରିବାରେ ତୁମ୍ଭଙ୍କୁ ଯଦି ଭଲ ଲାଗେ ତାଙ୍କୁ ହିଁ କରିବ। କିନ୍ତୁ ସେତେବେଳେ ଯଦି ଆଉ କେହି ତୁମ୍ଭର ଧ୍ୟାନ ସମ୍ମୁଖରେ ଆସିବ ତାଙ୍କୁ ତଡ଼ିଦେବ ନାହିଁ। ମୋଟ କଥା ମନକୁ ମୁକ୍ତ ରଖି ଇଷ୍ଟ ନିର୍ଦ୍ଦେଶିତ ପଥରେ ନାମ ଧ୍ୟାନ କରିବ। ଯେ ବା ଯାହା ଆସୁ। ଠାକୁର ଆହୁରି କହିଲେ– କୃଷ୍ଣ କିଏ ଥିଲେ? ମୁଁ କହିଲି–କୃଷ୍ଣ ଭଗବାନ ସ୍ୱୟଂ। ଠାକୁର କହିଲେ– ତାହା ତ ଠିକ୍, ତାହା

ହେଲେ ସେ କି'ଣ ଥିଲେ? କାହାର ପୁଅ, କାହା ବଂଶରେ ଜନ୍ମ? ମୁଁ ସେଠାରେ ମୋର ଭୁଲ ବୁଝି ପାରିଲି। କହିଲି– ଠାକୁର! କୃଷ୍ଣ ମନୁଷ୍ୟ ହେଲେ ମଧ୍ୟ ସେ ପ୍ରତିଷ୍ଠିତ ଭଗବାନ ଥିଲେ। ଠାକୁର କହି ଉଠିଲେ– ପ୍ରଥମେ ତାଙ୍କୁ ମାନି ନଥିବା ଲୋକଙ୍କର ସଂଖ୍ୟା ହିଁ ବେଶି ଥିଲା। ପରବର୍ତ୍ତୀ ଅବସ୍ଥାରେ ତାଙ୍କର ପ୍ରଦର୍ଶିତ ପଥରେ ଚାଲି ବୁଝି ପାରିଥିଲେ ସେ ଭଗବାନ। ତେଣୁ ଭଗବାନ୍ ଯେତେବେଳେ ପୃଥିବୀରେ ଅବତରଣ କରନ୍ତି ସେ ନିଶ୍ଚିତ ହିଁ କୌଣସି ନା କୌଣସି ରୂପ ଧାରଣ କରନ୍ତି। ମୋର ଅନ୍ତର ନିଃସନ୍ଦେହରେ ମାନିନେଲା ଏହି କଥା।

କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି ଘରେ ଯାଇ ଧ୍ୟାନରେ ଯେତେବେଳେ ବସିଲି କୃଷ୍ଣମୂର୍ତ୍ତି ପରିବର୍ତ୍ତେ କିଏ ଆସି ଉପସ୍ଥିତ ହେଲା? ଏହି ତ ମୋର ସେହି ଇଷ୍ଟ, ମୋର ଗୁରୁ।' କାହିଁ ତଡ଼ିବାର ପ୍ରଶ୍ନ ତ ମନରେ କେତେବେଳେ ହେଲେ ଆସିଲା ନାହିଁ। କୃଷ୍ଣାନୁକୂଳ ଏକାକାର ହୋଇଗଲେ। ଠାକୁରଙ୍କୁ ଆସି କହିଲି ସେହି କଥା। ଠାକୁର ହସି ଉଠିଲେ– କି ସ୍ୱର୍ଗୀୟ ସେ ହସ! ପୁଣି ପ୍ରଶ୍ନ କଲି– ଏହି ପୃଥିବୀଟା ମୋ ପାଖରେ ବିଷାଦମୟ ଲାଗୁଛି। ବନ୍ଧୁ ବାନ୍ଧବ, ଆତ୍ମୀୟ ସ୍ୱଜନ ବୋଲି ଯେଉଁମାନେ ମୋର ଜୀବନରେ ଆସିଲେ ସମସ୍ତଙ୍କୁ ହିଁ ଦେଖିଲି ମୋ ପାଖକୁ ଗୋଟାଏ ନା ଗୋଟାଏ ସ୍ୱାର୍ଥ ନେଇ ଆସୁଛନ୍ତି। ମୋର ସମ୍ପଦ ବାଦ୍ ଦେଇ ମୋତେ କେହି ଭଲ ପାଉ ନାହାନ୍ତି, ମୁଁ କିନ୍ତୁ ଅନ୍ତର ଦେଇ ଭଲ ପାଇବାକୁ ଯାଉଛି ସମସ୍ତଙ୍କୁ। ପରିଣତିରେ କ୍ଷତ ବିକ୍ଷତ ହୋଇ ଅନ୍ତରର ଜ୍ୱାଳା ନେଇ ଫେରି ଆସୁଛି। ଏବେ ମୋର ବିଶ୍ୱାସ ହେଉଛି ଭଲ ପାଇବା କଥାଟିର ମୂଳରେ ରହିଛି ଫାଙ୍କି।

ଶ୍ରୀଶ୍ରୀ ଠାକୁର କହିଲେ "ଭାଲୋବାସା" ଅର୍ଥ ମୁଁ ବୁଝେ– ପ୍ରତ୍ୟେକ ପ୍ରତ୍ୟେକଙ୍କର ଭଲରେ ବାସ କରିବା। ତାପରେ ଠାକୁର କହିଲେ– ତୁମ୍ଭେ ସମସ୍ତଙ୍କୁ ଭଲ ପାଇ କ୍ଷତ ବିକ୍ଷତ ହୋଇ ପଡ଼ିଛ। ଆଜିଠାରୁ ତୁମ୍ଭ ସହିତ ମୋର ବନ୍ଧୁତା ହେଲା। ମୁଁ ତୁମ୍ଭଙ୍କୁ ଭଲ ପାଇଲି, ତୁମ୍ଭେ ତ ମୋତେ ନିଶ୍ଚିତ ଭାବରେ ଭଲ ପାଉଛ। ଠାକୁରଙ୍କର ଏହି କଥା ଶୁଣି ମୋର ଅନ୍ତର ଭିତରଟା ସ୍ନିଗଧ୍ ହୋଇଗଲା। ମନେ ହେଲା—ଠାକୁର ଯେପରି ମୋର ବହୁକାଳର ପରିଚିତ। ଚିରକାଳ ଆମ୍ଭେ ଦୁହେଁ ଏକାଠି ରହିଛୁଁ, ଏହାର ଦୁଇଦିନ ପରେ

ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ମୁଁ ଯାଇ କହିଲି– ଠାକୁର! ଦୁଇଦିନ ପୂର୍ବେ ମୁଁ ଦମ୍ଭକରି ଆପଣଙ୍କୁ ଯାହା କହୁଥିଲି ମୁଁ ସମସ୍ତଙ୍କୁ ଭଲ ପାଉଛି, ମୋତେ କେହି ଭଲ ପାଉ ନାହାନ୍ତି; ଆପଣ ସେହି କଥା ଶୁଣି ଦୁଇଟି ଖାଲି କୁମ୍ଭ ଆଣି ଗୋଟିଏ ରଖିଲେ ମୋ ସମ୍ମୁଖରେ, ଆଉ ଗୋଟିଏ ରଖିଲେ ଆପଣଙ୍କ ସମ୍ମୁଖରେ, କୁମ୍ଭ ଦୁଇଟିକୁ "ଭାଲୋବାସା" ଦ୍ୱାରା ପୂର୍ଣ୍ଣ କରିବା ପାଇଁ ଆପଣ ଓ ମୁଁ ପ୍ରତିଜ୍ଞାବଦ୍ଧ ହୋଇଥିଲୁ।

କିନ୍ତୁ ଆଜି ଦେଖୁଛି ମୋ ପାଖରେ ଆପଣ ଯେଉଁ ପାତ୍ରଟି ରଖିଥିଲେ ସେହି ପାତ୍ରଟି ପୂର୍ଣ୍ଣ ହୋଇ ପାତ୍ର ଭିତରେ ସ୍ଥାନ ନ ରହିବାରୁ ଆପଣଙ୍କର ଦତ୍ତ 'ଭାଲୋବାସା' ଆପେ ଆପେ ଉଛୁଳି ପଡୁଛି। ଆଉ ଯେଉଁ ପାତ୍ରଟି ଆପଣଙ୍କ ନିକଟରେ ଥିଲା, ମୋର 'ଭାଲୋବାସା' ଦେବା ପାଇଁ, ତାହା ଯେପରିକି ସେହିପରି ଶୂନ୍ୟ ହୋଇ ରହିଛି।

ଶ୍ରୀଶ୍ରୀ ଠାକୁର ହସି ଉଠି କହିଲେ– ନା, ନା, ତୁମର ପାତ୍ରଟି ମଧ୍ୟ ପୂର୍ଣ୍ଣ ହୋଇଉଠୁଛି। ଯେତେ ଜାଣିବ, ବୁଝିବ ସେତେ ହିଁ ପାତ୍ରଟି ନିର୍ମଳ 'ଭାଲୋବାସା'ରେ ପରିପୂର୍ଣ୍ଣ ହୋଇ ଉଠିବ।ତୁମ ଭିତରେ ରହିଛି sincerity (ଆନ୍ତରିକତା), ଆଉ ଭଲ ପାଇବାର ମୂଳସୂତ୍ର ହିଁ sincerity । ଏହିପରି ସେଦିନ ଆହୁରି ମୋର ଅଜ୍ଞତାପୂର୍ଣ୍ଣ ଅସଂଯତ ପ୍ରଶ୍ନର ସମାଧାନ କରି ଚାଲିଲେ ଘଣ୍ଟା ପରେ ଘଣ୍ଟା ବସି। ପାଞ୍ଚଘଣ୍ଟା ବିତିଗଲା।

ଏହା ମଧ୍ୟେ କେତେବେଳେ ଠାକୁରଙ୍କ ଉପରେ attachment ବା ଆନ୍ତରିକ ଟାଣ ଆସି ଯାଇଛି ତାହା ମୁଁ ଜାଣିପାରି ନାହିଁ। ଠାକୁରଙ୍କୁ କହିଲି– ଠାକୁର! ଆପଣଙ୍କ ପାଦଛୁଇଁ ଆପଣଙ୍କୁ ପ୍ରଣାମ କରିବା ନିଷେଧ କାହିଁକି? ଯାହାଙ୍କୁ ଛୁଆଁ ଯାଏ ନାହିଁ ତାଙ୍କୁ ଭଲ ପାଇବା କିପରି ସମ୍ଭବ। ଶ୍ରୀଶ୍ରୀ ଠାକୁର କହିଲେ– ପାଦଛୁଇଁ ପ୍ରଣାମ କଲେ ହିଁ ଯେ ଈଶ୍ୱରଙ୍କର ଆଶୀର୍ବାଦ ଆସିବ ତାହା ନୁହେଁ, ଚରଣ ଧୂଳି ଅର୍ଥ ମୁଁ ବୁଝେ ଚଳନ ଧୂଳି। ଅର୍ଥାତ୍ ପ୍ରକୃଷ୍ଟ ଭାବେ ନତି ସ୍ୱୀକାର କରି ଯାହାଙ୍କୁ ଶ୍ରେଷ୍ଠ ବା ପ୍ରେଷ୍ଠ ବୋଲି ଭାବାଯାଏ ତାଙ୍କର ଚାଲିଚଳନ ନିଷ୍ଠା ସହକାରେ ଅନୁସରଣ କରିବା। ଏହାରି ମାଧ୍ୟମରେ ଆସେ ଇଷ୍ଟାନୁରାଗ ଅନୁଚଳନ। ଆହୁରି ଗୋଟିଏ ଅସୁବିଧା ମୋର ରହିଛି– ପ୍ରତିଦିନ ମୋ ପାଖକୁ ଶହ ଶହ ଲୋକ ଆସନ୍ତି। ସମସ୍ତେ

ଯଦି ମୋର ଚରଣରେ ହାତ ଦେଇ ପ୍ରଣାମ କରିବାକୁ ଚାହିଁବେ ମୁଁ ତାଙ୍କ ସାଙ୍ଗରେ ଗୋଟିଏ ଦୁଇଟା କଥା କହିବାକୁ ଗଲେ ମଧ୍ୟ ଆଉ ଅନ୍ୟ ଲୋକମାନଙ୍କ ସାଙ୍ଗରେ କୌଣସି କଥା କହିବାର ସୁଯୋଗ ପାଇବି ନାହିଁ। ତେଣୁ ଲୋକମାନଙ୍କର ଏଠାକୁ ଆସିବାର କିଛି ମାତ୍ର ସାର୍ଥକତା ରହିବ ନାହିଁ। ଆଉ ଦୂରରୁ ପ୍ରଣାମ ହେଲେ କୌଣସି ଅସୁବିଧା ନାହିଁ। ଏହି ଯେ ତୁମେ ଓ ମୁଁ କଥା କହୁଛୁଁ ଘଣ୍ଟା ପରେ ଘଣ୍ଟା– ଏହା କଦାପି ସମ୍ଭବ ହୋଇ ନଥାନ୍ତା, ଯଦି ସମସ୍ତେ ଆସି ମୋତେ ପାଦଛୁଇଁ ପ୍ରଣାମ କରିଥାନ୍ତେ। ଏହାଛଡ଼ା ଏମାନେ ସମସ୍ତେ କୁହନ୍ତି ମୋତେ ଛୁଇଁ ଦେଲେ କୁଆଡ଼େ ଯାହା ଯାହାର ରୋଗ, ବେମାର ଇତ୍ୟାଦି ମୋତେ ଧରିଯାଏ। ସେ ଯାହାହେଉ, ଅନ୍ତତଃ ଏକ ମନୁଷ୍ୟ ପରିମିତ ବ୍ୟବଧାନ ରଖି ଭୂମିରେ ପ୍ରଣାମ ହେବା ବିଧେୟ ଏବଂ ସର୍ବ ଦିଗରେ ମଙ୍ଗଳ। ମୁଁ କହିଲି– ଠାକୁର! ମୁଁ ଆପଣଙ୍କ କଥା ଯୁକ୍ତି ଦେଇ କାଟି ପାରୁନାହିଁ। ଯାହା କହୁଛନ୍ତି ସବୁ ଠିକ୍। କିନ୍ତୁ ମୋର ଅନ୍ତର ଚାହୁଁଛି ଆପଣଙ୍କୁ କୁଣ୍ଢାଇ ଧରିବାପାଇଁ। ମା'ଙ୍କୁ ତା'ର ସନ୍ତାନମାନେ କୁଣ୍ଢାଇ ପାରନ୍ତି ବୋଲି ଶିଶୁମାନଙ୍କର ଏତେ ଟାଣ ମା'ଉପରେ। ସେପରି ଟାଣ ପିତା ଉପରେ ଆସୁନାହିଁ। କାରଣ ଦୈହିକ ସମ୍ପର୍କ ମା' ପରି ପିତା ସଙ୍ଗରେ ହୋଇପାରୁ ନାହିଁ ବୋଲି। ଏବେ ଏହି ମୁହୂର୍ତ୍ତରେ ଆପଣଙ୍କୁ ମୋତେ ଏତେ ଭଲ ଲାଗୁଛି ଯେ ମୋର ଇଚ୍ଛା ହେଉଛି ଆପଣଙ୍କୁ ମୁଁ କୁଣ୍ଢାଇ ଧରେ। ଠାକୁର ସଶଙ୍କିତ ହୋଇ କହି ଉଠିଲେ– ଏଇ, ଏଇ, ଏହା କରିବୁ ନାହିଁ। ଚାରିଆଡ଼େ ଲୋକ ଠିଆହୋଇ ରହିଛନ୍ତି। ଆମେ ବହୁତ ସମୟ କଥା ହେଲୁଣି। ସେମାନେ ତୁମ ଉପରେ ରାଗି ରହିଛନ୍ତି ମୋ ପାଖକୁ ନ ଆସି ପାରିବାରୁ। ଏହାପରେ ମୋତେ କୁଣ୍ଢାଇ ପକାଇଲେ ସେମାନେ ଆଉ ତୁମର ରକ୍ଷା ରଖିବେ ନାହିଁ। ଗୋଟାଏ କାମ କର, ପରେ କେତେବେଳେ ହେଲେ ମୁଁ ତୁମକୁ ଡାକି ନେବି। ତୁମେ ଆସି ମୋର ହାତ, ଗୋଡ଼, ଦେହ ଚିପିଦେବ। ମୁଁ ଡାକି କହିଲେ ଆଉ କେହି କିଛି କହିବେ ନାହିଁ। ମୁଁ ଠାକୁରଙ୍କର ସେହି କଥା ମାନିନେଲି। ରାତ୍ରି ୯ଟାରେ ଆମର କଥା ଶେଷ ହେଲା।

ତହିଁ ଆରଦିନ ସକାଳେ ମୁଁ ଧୌତ ବସ୍ତ୍ର ପରିଧାନ କରି ଠାକୁରଙ୍କୁ ସେବା କରିବା ନିମନ୍ତେ ଆସିଲି। ଠାକୁରଙ୍କୁ ଆଜି ଆହୁରି ଭଲ ଲାଗୁଛି, ଆହୁରି ସୁନ୍ଦର ଲାଗୁଛି। ସବୁବେଳେ ମୋତେ ଡାକି ଡାକି କଥା କହୁଛନ୍ତି। ଆଉ ସେହି କଥାରେ କେତେ ଆନ୍ତରିକତା! ମୋତେ ଯେପରି ଭସାଇ ନେଇଯିବ ଆନନ୍ଦ ସାଗରରେ। ମୋର ଅସ୍ତିତ୍ୱ ବିଲୁପ୍ତ ପ୍ରାୟ। ସମସ୍ତ ଦିନ ବିତିଗଲା। କିନ୍ତୁ ମୋର ବାଞ୍ଛିତ ଫଳ ଫଳିଲା ନାହିଁ। ଠାକୁର ମୋତେ ଡାକି ତାଙ୍କୁ

ସେବା କରିବା କଥା କହିଲେ ନାହିଁ। ଦ୍ୱିତୀୟ ଦିନ ମଧ୍ୟ ପ୍ରସ୍ତୁତ ହୋଇଗଲି। କିନ୍ତୁ କାହିଁ, ଠାକୁରତ ମୋତେ ଡାକିଲେ ନାହିଁ? ତୃତୀୟ ଦିନରେ ଆଉ ପ୍ରସ୍ତୁତ ନ ହୋଇ ପୂର୍ବଦିନେ ପିନ୍ଧିଥିବା ଲୁଗା ପିନ୍ଧି ଠାକୁରଙ୍କ ନିକଟରେ ଉପସ୍ଥିତ ହେଲି। ଠାକୁର ଆନନ୍ଦ ସହକାରେ ହସି କହିଲେ– ଆସିଛ ମନି! ମୁଁ ତୁମ୍ଭର ପଥଚାହିଁ ବସିଛି। ବହୁତ ଲୋକ ଜମାୟେତ ହୋଇଛନ୍ତି। କିଛି ସମୟ ପରେ ଶ୍ରୀଶ୍ରୀ ଠାକୁର ମୋତେ କହିଲେ– ଏଇ ସୁଶୀଲ୍, ମୋର ଗୋଡ଼ଟା ଚିପିଦେବୁ କି? ଅପ୍ରତ୍ୟାଶିତ ଡାକରା ପାଇ ଉଠିଯାଇ ତାଙ୍କର ପଦ ସେବାରେ ଲାଗି ପଡ଼ିଲି। ୨/୪ ମିନିଟ୍ ପରେ କହିଲେ– ମୋର ହାତଟା ଚିପି ଦେ, କିଛି ସମୟ ପରେ କହିଲେ– ମୋ ପିଠିରେ ହାତ ମାରିଦେ। ଠାକୁର "ଠାକୁର ବାଂଲା"ର ବାରଣ୍ଡାରେ ପଶ୍ଚିମ ଆଡ଼କୁ ମୁହଁ କରି ଶୋଇଛନ୍ତି। ପଛରେ ଘରର ପକ୍କା କାନ୍ଥ। ତେଣୁ ପଛକୁ ଯାଇ ଠାକୁରଙ୍କର ପିଠି ଘସିଦେବାର କୌଣସି ସୁଯୋଗ ନାହିଁ। ତେଣୁ ବାଧ୍ୟ ହୋଇ ଠାକୁରଙ୍କର ସମ୍ମୁଖରେ ଠିଆ ହୋଇ ଠାକୁରଙ୍କର ସଂପୂର୍ଣ୍ଣ ଦେହଟିକୁ ମଝିରେ ରଖି ପଛକୁ ହାତ ବଢ଼ାଇ ତାଙ୍କ ପିଠିରେ ମୁଁ ଧୀରେ ଧୀରେ ଘସିବାକୁ ଲାଗିଲି। ଏତେ ମସୃଣ ଚମଡ଼ା, ଭୟ ହେଉଛି କେଉଁଠି ଛିଣ୍ଡି ରକ୍ତ ବାହାରି ପଡ଼ିବ କି? ଏହିପରି ଅବସ୍ଥାରେ ଠାକୁରଙ୍କର ଦେହଟି ରହିଗଲା ମୋର କୋଳ ଭିତରେ। ତାଙ୍କର ମୁହଁ ପାଖରେ ରହିଲା ମୋର ମୁହଁ। ଚତୁଃପାର୍ଶ୍ୱରେ ଶତ ଶତ ଲୋକ ପରିବେଷ୍ଟିତ। ଠାକୁର ଆସ୍ତେ ଚୁପିସାରେ ମୋର କାନ ପାଖରେ କହିଲେ– ହେଲାତ, କୁଣ୍ଢାଇ ପକାଇବା ହେଲାତ। ମୁଁ ଲଜ୍ଜିତ ହେଲି, କିନ୍ତୁ ଆନନ୍ଦିତ ହେଲି– ମୋର ଏହି ଗରିବର ଅସଂଯତ ଆବ୍ଦାର ରକ୍ଷା କରିବାପାଇଁ ଠାକୁର କିପରି ମାନିନେଲେ। ତାହାରି ପାଇଁ ତାଙ୍କର ନାମ ଦୀନନାଥ ଦୟାଳ। କିଛି ସମୟ ପରେ ଠାକୁରଙ୍କର ସ୍ନାନର ବେଳ ହୋଇଗଲା। ସେ ଉଠିଗଲେ ମୋର ଅପବିତ୍ର ଦେହକୁ ପବିତ୍ର କରି। ଦେହ ଭିତରେ ଶିହରଣ ଉଠୁଛି ରହି ରହି।

**GOD IS ONE**

**DHARMA IS ONE**

**PROPHATES ARE SAME**

**SERVERS OF THE ONE**

**–SREE SREE THAKUR**

## ॥ ଦୁଇ ॥

ଶ୍ରୀଶ୍ରୀ ଠାକୁର ଯେତେବେଳେ କହିଲେ, ମୁଁ ତୁମ୍ଭଙ୍କୁ ଯାହା କହୁଛି ସେ କଥାଗୁଡ଼ିକ କାର୍ଯ୍ୟକ୍ଷେତ୍ରରେ ମିଳାଇ ଦେଖିବ ଏବଂ ଏହା ଦେଖିବା ପରେ ଯାହା ବୁଝିବ ମୋ ସମ୍ବନ୍ଧରେ ମୁଁ ତୁମ୍ଭ ପାଖରେ ତାହାହିଁ। କାହାରି କଥାରେ ବିଭ୍ରାନ୍ତ ହେବ ନାହିଁ। ପାଞ୍ଚଘଣ୍ଟା ଠାକୁରଙ୍କ ସଙ୍ଗେ କଥା ହେବା ପରେ ତାଙ୍କୁ ଖୁବ୍ ଭଲ ଲାଗିବାକୁ ଆରମ୍ଭ କଲା। ଠାକୁରଙ୍କୁ ଛାଡ଼ି ଯିବାକୁ ମନ ଚାହୁଁ ନାହିଁ। ଯେତେବେଳେ ଠାକୁରଙ୍କୁ ପଚାରୁଛି– ଠାକୁର! ଘରକୁ ଯିବି କେବେ? ଠାକୁର ସେତେବେଳେ କହୁଛନ୍ତି– ଏଇଟା ତ ତୋର ଘର, ଏତେ ଦିନ ପରେ ଘରକୁ ଫେରିଲୁ। ଯିବା କଥା କହିଲେ ମନେ ହେଉଛି ମୋର ଛାତିରେ କେହି ଯେପରି ବନ୍ଧୁକ ଗୁଳି ଦେଇ ମୋର ଛାତିକୁ ବିଦ୍ଧ କରୁଛି। ଠାକୁରଙ୍କର ଏହି କଥା ଶୁଣିବା ପରେ ମୁଁ ଆଉ ସେଠାରୁ ବାହାରିବାର କଥା କହୁନାହିଁ। ମନ ଭିତରେ ମଧ୍ୟ ଫେରି ଆସିବାର କୌଣସି ତାଗିଦ୍ ଅନୁଭବ କରୁନାହିଁ। ଏହିପରି ଭାବରେ ୨୬ ଦିନ ବିତିଯିବା ପରେ ଶ୍ରୀଶ୍ରୀ ଠାକୁର ନିଜେ ଦିନେ କହିଲେ– ତୁ ଯିବୁ ଯେ? ମୁଁ କହିଲି– ଠାକୁର କୁଆଡ଼େ ଯିବି? ଶ୍ରୀଶ୍ରୀ ଠାକୁର କହିଲେ– କାର୍ଯ୍ୟସ୍ଥଳ ଓଡ଼ିଶାରେ। ମୋର ତୋତେ ଛାଡ଼ିବାକୁ ଇଚ୍ଛା ହେଉନାହିଁ। କିନ୍ତୁ ନଗଲେ ବ୍ୟବସାୟ ଏବଂ ମା' ଓ ତୋର ଛୁଆମାନେ ହଇରାଣ ହେବେ। ତେଣୁ ଯାଆ ବୁଲି ଆସିବୁ। କିନ୍ତୁ ମନେ ରଖିଥିବୁ, ଏଇଟା ହିଁ ତୋ'ର ଘର।

ପାଞ୍ଜି ଦେଖି ସେହିଦିନ ହିଁ ଆସିବାର ସମୟ ସ୍ଥିର ହେଲା। ଆନନ୍ଦ ବଜାରର ସେସମୟର ମ୍ୟାନେଜର ଶ୍ରୀ ନଗେନ୍ଦ୍ରନାଥ ଦେ'ଙ୍କୁ ଠାକୁର ଡାକି ଟ୍ରେନ୍‌ରେ ଯାଇ ମୋ ପାଇଁ ଆଗରୁ ଜାଗା ରଖିବା ପାଇଁ କହିଲେ। ଦିନ ଚାରିଟାବେଳେ ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ବିଦାୟ ନେଇ ଯେତେବେଳେ ବାହାରୁଛି ମୋର ମନ ତାଙ୍କୁ ଛାଡ଼ି ଆସିବାକୁ ଚାହୁଁ ନାହିଁ। ଏପରି ପରମ ଆତ୍ମୀୟ ମୋର ଜୀବନରେ କେବେ କେହି ଆସିନାହିଁ। ଏଇ ଅଳ୍ପ କେତୋଟି (ଛବିଶ) ଦିନ ଭିତରେ କିପରି ଠାକୁର ମୋର ଜୀବନରେ ଅଚ୍ଛେଦ୍ୟ, ଅପରିହାର୍ଯ୍ୟ ହୋଇ ଉଠିଲେ ଜାଣି ପାରିଲି ନାହିଁ। ଠାକୁରଙ୍କ ଚରଣ ପ୍ରାନ୍ତେ ପ୍ରଣାମ ହେବା ସଙ୍ଗେ ସଙ୍ଗେ ମୋର ଆଖିରୁ ଲୋତକ ଗଡ଼ି ପଡ଼ୁଛି। ତାଙ୍କ ଆଡ଼କୁ ଅନାଇ ଦେଖିଲି– ତାଙ୍କ ଆଖିରୁ ମଧ୍ୟ ବୋହି ଚାଲିଛି ଅଶ୍ରୁଧାରା। ମନ ଫେରି ଆସିବାକୁ ଚାହୁଁନାହିଁ। ଠାକୁର ଘରୁ ବାହାରି ଆଶ୍ରମ ଗେଟ୍ ପାଖକୁ

ଆସି ପୁନର୍ବାର ଫେରିଗଲି। ମନେ ହେଉଛି ମୋର ହୃତ୍‌ପିଣ୍ଡଟା ଯେପରି ଏଠାରେ ରଖି ଦେଇ ଚାଲିଯାଉଛି। ଅସହ୍ୟ ସେ ବିୟୋଗ ବେଦନା। ଦଉଡ଼ି ଫେରି ଆସିଲି ଠାକୁରଙ୍କ ପାଖକୁ। ଦେଖିଲି ଠାକୁର ସେହିପରି ବସି ରହିଛନ୍ତି। ଆଖିରୁ ଅଶ୍ରୁଧାରା ଗଡ଼ି ଚାଲିଛି। ପୁଣି ପ୍ରଣତ ହୋଇ ବିଦାୟ ମାଗିଲି। ଠାକୁର ଅଶ୍ରୁଭାରାକ୍ରାନ୍ତ କଣ୍ଠରେ କହିଲେ– ବିଦାୟ ନାହିଁ, ଯେତେ ଶୀଘ୍ର ସମ୍ଭବ ଫେରି ଆସିବୁ କର୍ମ ସାରି। ସମୟଟା ଥିଲା ଆଷାଢ଼ମାସ ୨୭ ତାରିଖ। ଠାକୁର କହିଲେ, ଶ୍ରାବଣ ମାସ ୨୦ ତାରିଖରେ ଫେରି ଆସିବୁ। ମୁଣ୍ଡ ହଲାଇ ସମ୍ମତି ଜଣାଇଲି। କଣ୍ଠରୁ ଶବ୍ଦ ବାହାରୁ ନାହିଁ, କ୍ରନ୍ଦନରେ ମୁଁ ଭାଙ୍ଗି ପଡୁଛି। ଏହିପରି ଦୁଇ ତିନିଥର ଆଶ୍ରମ ଗେଟ୍ ବାହାରେ ଯାଇ ଟାଙ୍ଗାରେ (ଘୋଡ଼ାଟଣା ଗାଡ଼ି) ଉଠି ମଧ୍ୟ ଫେରି ଆସୁଛି। ଠାକୁର ଯେ ପରମ ଆତ୍ମୀୟ, ଏମିତି ଆତ୍ମୀୟ ମୋର ଜୀବନରେ କେହି କେବେ ଆସି ନାହାନ୍ତି। ଏତେ ଆକର୍ଷଣ ମୁଁ କାହାରି ଉପରେ କେବେ ଉପଲବ୍ଧି କରି ନାହିଁ। ଆଜି ଏଇ ମୁହୂର୍ତ୍ତରେ ତାହା ବାରମ୍ବାର ନିଜ ପାଖରେ ଧରା ପଡ଼ିଗଲା। ଶେଷଥର ପାଇଁ ଯେତେବେଳେ ଟାଙ୍ଗାରୁ ଓହ୍ଲାଇ ଗଲି ଠାକୁରଙ୍କ ପାଖକୁ, ଦେଖିଲି ଶ୍ରୀଶ୍ରୀ ଠାକୁର ଓଲଟା ଆଡ଼କୁ ମୁହଁ କରି ଗୋଟାଏ ଚାଦରରେ ଦେହକୁ ଢାଙ୍କି ଶୋଇ ରହିଛନ୍ତି। କିନ୍ତୁ ପଛରେ ଦେଖାଗଲା ତାଙ୍କର ଦେହଟି ମଝିରେ ମଝିରେ କ୍ରନ୍ଦନରତ ଭାରାକ୍ରାନ୍ତ ଭାବରେ ଫୁଲି ଫୁଲି ଉଠୁଛି। ଶେଷଥର ପାଇଁ ଆଉ ଥରେ ପ୍ରଣାମ ହୋଇ କାନ୍ଦୁ କାନ୍ଦୁ ଆସି ବୈଦ୍ୟନାଥ ଧାମ ଷ୍ଟେସନ୍‌ରେ ଉପସ୍ଥିତ ହେଲି। ଗୁରୁଭ୍ରାତା ନଗେନ୍‌ଦା' ପୂର୍ବରୁ ମୋ ପାଇଁ ଗାଡ଼ିରେ ସ୍ଥାନ ଠିକ୍ କରି ରଖିଥିଲେ। ଯତ୍ନ କରି ମୋତେ ସେଠାରେ ବସାଇଲେ ଏବଂ ତିନି ଚାରିଟି ଝୁଡ଼ି ଆଣି ମୋତେ ଦେଇ କହିଲେ– ଗୋଟିଏ ଭିତରେ ବୈଦ୍ୟନାଥ ଦେଓଘରର ବିଖ୍ୟାତ ମିଠା ଖୁଆପେଡ଼ା ରହିଛି। ପ୍ରାୟ ଚାରି ପାଞ୍ଚ ସେର ହେବ। ଆଉ ଗୋଟିକରେ ଭଜା ଭଲ ମୁଗଡାଲି ଭର୍ତ୍ତି ହୋଇଛି। ଏପରି ଆଉ ଗୋଟିକରେ ବୁଟଡ଼ାଲି ଓ ଅନ୍ୟ ଗୋଟିକରେ ପୋଟଳ ଓ ଅନ୍ୟାନ୍ୟ କଞ୍ଚା ପରିବା ରହିଛି। ମୁଁ ଏ ସବୁ ଦେଖି ବିସ୍ମିତ ହେଲି। ନଗେନ୍‌ଦା'ଙ୍କୁ କହିଲି– କାହିଁ, ମୁଁ ତ ଆପଣଙ୍କୁ କିଛି ଟଙ୍କା ଦେଇ ନାହିଁ। ଆପଣ ଏ ସବୁ କାହିଁକି କିଣି ଆଣିଲେ ? ନଗେନ୍‌ଦା' କହିଲେ, ଶ୍ରୀଶ୍ରୀ ଠାକୁର ମୋତେ କହିଥିଲେ, ସୁଶୀଲ ଯାଉଛି, ତାକୁ ବାଟରେ ଖାଇବା ପାଇଁ କିଛି ଖୁଆପେଡ଼ା କିଣିଦେବୁ; ଆଉ ଏଠାକାର ଯାହା ଭଲ, ତୋର ମନ ଚାହେଁ, ତାହା ଦେବୁ। ଏଠାକାର ଏହି ପେଡ଼ା ଖୁବ୍ ବିଖ୍ୟାତ। ତାହା ଆପଣଙ୍କୁ

ଖାଇବାକୁ ଦେବା ସାଥେ ସାଥେ ମୋର ମନେ ହେଲା ଆପଣଙ୍କ ଘରକୁ କିଛି ଦେବା ପାଇଁ। ଆଉ ବାକି ସବୁ ମୋର ମନକୁ ଯାହା ଭଲ ଲାଗିଛି ତାହା ଦେଇଛି। ଶ୍ରୀଯୁକ୍ତ ନଗେନ୍ଦା'ଙ୍କର ଏହି ପରମ ଆତ୍ମୀୟ ଭାବଟି ମୋର ଖୁବ୍ ଭଲ ଲାଗିଲା।

ମୁହୂର୍ତ୍ତକ ପାଇଁ ଠାକୁରଙ୍କ କଥା ଭୁଲି ପାରୁ ନାହିଁ। ଦୀର୍ଘ ପଥରେ ମୁଁ କ'ଣ ଖାଇବି, ପଥରେ ମୋର ଯେପରି କୌଣସି ଅସୁବିଧା ନ ହୁଏ ; ପୂର୍ବରୁ ଠାକୁର ତାହା ମୋ ପାଇଁ ବ୍ୟବସ୍ଥା କରି ରଖିଛନ୍ତି। ନଗେନ୍ଦା' ଉପଲକ୍ଷ ମାତ୍ର। ସବୁ କିଛି କରିବାର ମାଲିକ ସେହି, ମୋର ମନର ମଣିଷ ; ଯାହାଙ୍କୁ ଦେଖିବାକୁ ଆସିଥିଲି ସନ୍ଦେହାକୁଳ ଭାବ ନେଇ ଏବଂ ଆଜି ଫେରିଯାଉଛି ତାଙ୍କୁ ମୋର ଜୀବନର ଅଛେଦ୍ୟ, ଅପରିହାର୍ଯ୍ୟ ଜୀବନ–ଦେବତା ଏଇ ଭାବ ନେଇ। ଯଥା ସମୟରେ ବାଲେଶ୍ୱରରେ ଆସି ଉପସ୍ଥିତ ହେଲି। କ୍ଷଣକ ପାଇଁ ମନ ତାଙ୍କ କଥା ଭୁଲି ନାହିଁ। କିନ୍ତୁ ଗାଡ଼ି ଯେତେ ବାଲେଶ୍ୱରର ନିକଟବର୍ତ୍ତୀ ହୋଇ ଆସୁଛି ମନେ ପଡୁଛି– ଆଜକୁ ପ୍ରାୟ ମାସେ ପାଖାପାଖି ହେଲା ମୁଁ ବାଲେଶ୍ୱରରୁ ଘର ଛାଡ଼ି ଦିନେ ଦୁଇଦିନ ପାଇଁ ଶ୍ରୀଶ୍ରୀ ଠାକୁରଙ୍କ ଦର୍ଶନ ଲାଗି ଯାଇଥିଲି। ଘରେ ବୃଦ୍ଧାମାତା, ସ୍ତ୍ରୀ, କନ୍ୟା, ବ୍ୟବସାୟରେ କର୍ମଚାରୀମାନେ ଅଛନ୍ତି। ମୁଁ ଇଲେକ୍‌ଟ୍ରିକ ଠିକାଦାରୀ କରୁଛି। ସରକାରୀ ଠିକାଦାର, ବେସରକାରୀ କାମ ମଧ୍ୟ ସବୁବେଳେ ଚାଲିଛି। ଦଶ ବାର ଜଣ କର୍ମଚାରୀ, ଦୋକାନ ଛାଡ଼ି ଦେଇ ଏତେ ଦିନ କିପରି ସେଠାରେ ରହିଲି ନିଜେ ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡୁଛି। ଘରେ କୌଣସି ଟଙ୍କା ରଖି ଯାଇ ନାହିଁ। ଦୁଇ ଦିନ ପାଇଁ ଯାଉଛି, ପାଞ୍ଚଟି ଟଙ୍କା ଘରକୁ ଦେଇ ଯାଇଥିଲି। ମିସ୍ତ୍ରୀମାନଙ୍କୁ ଯେଉଁ କାମ ଦେଇ ଯାଇଥିଲି ତାହା ଦଶ ପନ୍ଦର ଦିନ ଚାଲିପାରେ। ସବୁଠାରୁ ମୋର ବେଶି ଚିନ୍ତା ହେଲା ଘର ପାଇଁ, ସେମାନେ କିପରି ଚଳୁଛନ୍ତି ; ଟଙ୍କା କୁଆଡୁ ଆସିଲା ?

ବାଲେଶ୍ୱର ଷ୍ଟେସନରେ ଓହ୍ଲାଇ ଘରକୁ ଫେରିବା ବାଟେ ଅନେକ ଲୋକମାନଙ୍କ ସଙ୍ଗରେ ଦେଖାହେଲା। ସେମାନଙ୍କ ସମସ୍ତଙ୍କର ଏକାକଥା– ସୁଶୀଲବାବୁ ଏତେ ଦିନ କୁଆଡ଼େ ଥିଲେ ? ସହରରେ ମୁଁ ସେତେବେଳେ ଏକମାତ୍ର ଇଲେକ୍‌ଟ୍ରିକ ଠିକାଦାର। ମୋର ଅନୁପସ୍ଥିତ ଅନେକଙ୍କ ଦୃଷ୍ଟିରେ ଆସିଛି। ଗୋଟିଏ ଦୁଇଟା କଥା ସମସ୍ତଙ୍କ ସାଙ୍ଗରେ କହି ମନେ ମନେ ନିଜକୁ ଅପରାଧୀ ଭାବି ଘରେ ଯାଇ ମୁଁ ଉପସ୍ଥିତ ହେଲି। ଏହାରି ଭିତରେ ଦୁଇ ଚାରି ଜଣ ଲୋକ ମୋ ପଛେ ପଛେ ଘରେ ଯାଇ ଉପସ୍ଥିତ ହେଲେ। ଦିନ ଦୁଇଟା ବେଳେ ଘରେ ଯାଇ ପହଞ୍ଚିଲି। ଯଥାରୀତି ଗାଧୋଇ ଖାଇବାକୁ ବସିଲି। ମୋର

ମା', ସ୍ତ୍ରୀ, ଏମାନଙ୍କୁ ଆନନ୍ଦିତ ଦେଖିଲି । ତାଙ୍କ ମୁହଁରେ କୌଣସି ଦୁଃଖର ଚିହ୍ନ ନାହିଁ । ମୁଁ ଖାଇବାକୁ ବସି ମଧ୍ୟ ସମସ୍ତଙ୍କ ସହିତ ଶ୍ରୀଶ୍ରୀ ଠାକୁରଙ୍କ କଥା କହି ଚାଲିଛି । ଇତିମଧ୍ୟେ କେହି କେହି ଶ୍ରୀଶ୍ରୀ ଠାକୁରଙ୍କର ଦୀକ୍ଷା ନେବା ପାଇଁ ବ୍ୟସ୍ତ ହୋଇ ଉଠିଲେ । ସମସ୍ତେ ଚାଲିଯିବା ପରେ ମୋର ସ୍ତ୍ରୀକୁ ଡାକି ମୁଁ କହିଲି— ତୁମ୍ଭମାନଙ୍କ ଘର କିପରି ଚାଲିଛି ? ମୁଁ ତ ଟଙ୍କା କିଛି ରଖିଯାଇ ନଥିଲି । ପାଞ୍ଚୋଟି ଟଙ୍କାରେ ଏତେ ଦିନ କିପରି ଚଳିଲା ? ସ୍ତ୍ରୀ କହିଲେ— ମୋର ଯେଉଁ ଦିନ ଫେରିବାର କଥାଥିଲା, ସେଦିନ ନ ଫେରିବାରୁ ଘରେ ସମସ୍ତେ ବ୍ୟସ୍ତ ହୋଇ ଉଠିଲେ । ତା'ପରେ ଆହୁରି ଦୁଇ ତିନିଦିନ ଅପେକ୍ଷା କରିବା ପରେ ଦେଖାଗଲା ଘର ଚଳିବା ମାଫି କୌଣସି ପଇସା ନାହିଁ । ଦୋକାନରୁ ବଲ୍‌ବ ଇତ୍ୟାଦି ଦିନକୁ ଯାହା କିଛି ବିକ୍ରୀ ହୁଏ, ତାହା କର୍ମଚାରୀ ଓ ମିସ୍ତ୍ରୀମାନେ ନେଇ ଖର୍ଚ୍ଚ କରନ୍ତି । ଘରେ ମୁଁ କିଛି ଜିନିଷପତ୍ର ଦେଇଗଲେ ମଧ୍ୟ ପ୍ରତ୍ୟହ ହାଟ ବଜାର ପାଇଁ ପାଞ୍ଚ ସାତ ଟଙ୍କା ଦରକାର । ମୋର ଯିବାର ଦଶଦିନ ବିତିଯିବା ପରେ ଘରେ ଭୀଷଣ ଅଭାବ ଅନୁଭୂତ ହେଲା । ଦିନେ ଖୁବ୍ ଭୋରରେ ଜଣେ ବୃଦ୍ଧ ଲୋକ ଆସି ମୋର ନାମ ଧରି ଘର ପାଖରେ ଡାକିବାକୁ ଲାଗିଲେ । ମୋର ସ୍ତ୍ରୀ ବାହାରି ତାଙ୍କୁ ପଚାରିଲେ ତାଙ୍କର ଆସିବାର କାରଣ । ସେ ବୃଦ୍ଧ ଲୋକଟି କହିଲେ— ସୁଶୀଳବାବୁ ଦେଓଘର ଯାଇଛନ୍ତି, ଯିବା ସମୟରେ ମୋତେ କହି ଯୋଇଥିଲେ । ସେ ଆଜି ପର୍ଯ୍ୟନ୍ତ ଫେରି ନାହାନ୍ତି କି ? ମୋର ସ୍ତ୍ରୀ କହିଲେ— ନାଁ, ଫେରି ନାହାନ୍ତି । ଉକ୍ତ ଭଦ୍ରଲୋକ କହିଲେ— ମା' ଗୋଟିଏ କାମ କରନ୍ତୁ । ସୁଶୀଳବାବୁ ମୋ' ପାଖରୁ କିଛି ଟଙ୍କା ପାଇବେ । ଆପଣ ଦୟାକରି ଏ ଟଙ୍କା ରଖନ୍ତୁ । (ମୁଁ ଠିକାଦାର ଲୋକ ସାଧାରଣତଃ ଏପରି ଭାବରେ ଟଙ୍କା ଲୋକମାନଙ୍କ ପାଖରେ ରହିଥାଏ ।) ଏହା କହି ସେହି ଭଦ୍ରଲୋକ ମୋ ସ୍ତ୍ରୀ ହାତକୁ ଏକଶହ ଟଙ୍କା ବଢ଼ାଇ ଦେଲେ । ଏକଥା ଶୁଣି ମୁଁ ନିଶ୍ଚିନ୍ତ ହେଲି ଯେ, ଯାହାହେଉ ମୋର customer (ଗ୍ରାହକ)ମାନଙ୍କ ଭିତରେ କେହି ଟଙ୍କା ଦେଇ ଯାଇଛନ୍ତି । ଭଲ ହିଁ ହେଲା । କିନ୍ତୁ ଏହା ପରେ ଯେଉଁଠି ଯେଉଁମାନଙ୍କ ପାଖରୁ ମୁଁ ଟଙ୍କା ପାଇବି ସମସ୍ତଙ୍କୁ ଯାଇ ପଚାରିଲି— କିଏ ଟଙ୍କା ଘରେ ଯାଇ ଦେଇ ଆସିଛନ୍ତି ? ଦେଖିଲି କେହି ଟଙ୍କା ଦେଇ ନାହାନ୍ତି । ଯାହା ପାଖରେ ଯାହା ପାଇବାର ଥିଲା ସମସ୍ତେ ହିସାବ କରି ମୋର ପ୍ରାପ୍ୟ ମୋତେ ପରିଶୋଧ କଲେ । କିନ୍ତୁ ସେହି ଦିନ ମୋ ଅନୁପସ୍ଥିତିରେ ଘରେ କିଏ ଟଙ୍କା ଦେଇ ଆସିଥିଲା ତା'ର ହଦିସ ବା ସନ୍ଦେଶ ଆଜି ପର୍ଯ୍ୟନ୍ତ ପାଇନାହିଁ । ମୋର ମନେ ହେଲା ଶ୍ରୀଶ୍ରୀ ଠାକୁର ଯେପରି ମୋତେ ଦେଓଘରେ ଅଟକାଇ ରଖିଥିଲେ, ଏଆଡ଼େ ତାଙ୍କର ଯେଉଁ ସନ୍ତାନମାନେ

ମୋ ଉପରେ ନିର୍ଭରଶୀଳ ତାଙ୍କୁ ଖୁଆଇ ବଞ୍ଚାଇବା ପାଇଁ ମଧ୍ୟ ସେ ହିଁ ଆସି ନିଜ ହାତ୍‌ରେ ଟଙ୍କା ଦେଇ ଯାଇଥିଲେ ଏବଂ ମୁଁ ଠାକୁର ବାଡ଼ିରୁ ଫେରିବା ସମୟରେ ଘରକୁ ଆସି ଯେପରି ବଜାରକୁ ସଙ୍ଗେ ସଙ୍ଗେ ଯିବାକୁ ନ ହେବ ତାହାରି ପାଇଁ ନଗେନ୍ ଦା' ମାଧ୍ୟମରେ ଡାଲି, କଞ୍ଚା ପରିବା, ଓ ଖୁଆପେଡ଼ା ଇତ୍ୟାଦି ସଙ୍ଗରେ ଦେଇଥିଲେ।

ପୁନର୍ବାର ତା' ପର ମାସ (ଶ୍ରାବଣ ମାସ) ୨୦ ତାରିଖରେ ମୁଁ ଯେତେବେଳେ ଫେରିଗଲି ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ମୋ ସାଙ୍ଗରେ କେତେକ ଲୋକ ଦୀକ୍ଷା ନେବା ପାଇଁ ଗଲେ, ଉପେନ୍ଦ୍ର ନାଥ ପାତ୍ର, ଦ୍ୱିଜେନ୍ଦ୍ର ନାଥ ଘୋଷ ଇତ୍ୟାଦି। ଅନ୍ୟ କେତେକ ସେଠାକୁ ଯାଇ ଦୀକ୍ଷା ନେଲେ। ମୁଁ ଶ୍ରୀଶ୍ରୀ ଠାକୁରଙ୍କ ନିକଟକୁ ଯାଇ ଘରେ ଦେଇଥିବା ଏକ ଶହେ ଟଙ୍କା କଥା କହିଲି। ଶ୍ରୀଶ୍ରୀ ଠାକୁର ଯେପରି କିଛି ଜାଣି ନାହାନ୍ତି ଏଇ ଭାବରେ କହିଲେ– ପରମ ପିତା ତାଙ୍କର ସନ୍ତାନମାନଙ୍କୁ କେତେବେଳେ କିପରି ସାହାଯ୍ୟ କରନ୍ତି ତାହା କୁହା ନ ଯାଏ। ଜୀବନରେ କିଛି ପ୍ରତ୍ୟାଶା ରଖିବ ନାହିଁ। ପରମ ପିତା ଯାହା ହେଲେ ଭଲ ହେବ ତାହା ହିଁ କରିବେ। ମନେ ରଖିଥିବ ପରମ ପିତା ହିଁ ପିତା। ସେ କାହାରି ମାଗିବା ସାପେକ୍ଷରେ ବସି ନାହାନ୍ତି। ଯେତେବେଳେ ଯାହା ପ୍ରୟୋଜନ, ସେ ଆପେ ଆପେ ଦିଅନ୍ତି। କିନ୍ତୁ ଜାଣିରଖ, ଚାଲିବାକୁ ହେବ ତାଙ୍କରି ନିର୍ଦ୍ଦେଶିତ ପଥରେ। ନିଜ ମନର ଖିଆଲରେ ଚାଲି କିଛି ପାଇବାର ପ୍ରତ୍ୟାଶା ରଖିଲେ ତାହା ପରିପୂରଣ ହେବାର ସମ୍ଭାବନା ରହେ ନାହିଁ।

ଚାରି ଦିନ ଠାକୁର ପାଖରେ ରଖିଲେ। ନିଜେ ମୋର ଆସିବା ଦିନ ସ୍ଥିର କରିଦେଲେ। ଆସିବା ଦିନ ସକାଳଠାରୁ ଶ୍ରୀଶ୍ରୀ ଠାକୁର ହସ ହସ ଭାବେ ଡାକି କହିଲେ– ଲାଗିପଡ଼ ପରମ ପିତାଙ୍କର କାମରେ। ଏଇ ଥର ଆସିବାବେଳେ ଆଶ୍ୱିନ ମାସ ଉତ୍ସବରେ ଗୋଟିଏ ସ୍ପେଶାଲ୍ ଟ୍ରେନ୍ ନେଇ ଆସିବ। ଯେତେବେଳେ ଦିନ ଚାରିଟା ବେଳେ ଆମ୍ଭେ ଆଶ୍ରମରୁ ବାହାରି ଆସୁଛୁ, ଠାକୁରଙ୍କର ସେ କି ହସ! ଆନନ୍ଦରେ ଫାଟି ପଡୁଛନ୍ତି। ମୁଁ ପ୍ରଣତ ହେବା ସଙ୍ଗେ ସଙ୍ଗେ କହିଲେ– 'ଜୟଗୁରୁ' ବୋଲି ବାହାରି ପଡ଼। ଏଥର ଆସିଲାବେଳେ ସଙ୍ଗରେ ବହୁତ ଲୋକ ନେଇ ଆସିବ। ଘରେ ଯାଇ ଚିଠି ଦେବ। ଗତ ଥର ଯାଇ ଚିଠି ଦେଇ ନାହିଁ। ମୁଁ କହିଲି–ଠାକୁର! ଆପଣ ତ ଅନ୍ତର୍ଯ୍ୟାମୀ, ସବୁ କିଛି ଜାଣିଛନ୍ତି। ଆଉ ଚିଠି ଦେଇ କ'ଣ ଜଣାଇବି? ଶ୍ରୀଶ୍ରୀ ଠାକୁର କହିଲେ– ଯାହା କିଛି କୁହନା କାହିଁକି ମୁଁ ଯାହା କହୁଛି ତାହା କରିବ। ଚିଠି ଦେବ କିପରି ରହୁଛ, କ'ଣ କରୁଛ ସବୁ କଥା ଜଣାଇ।

ଏଠାରୁ ୨୫ ଦିନ ପୂର୍ବେ ମୁଁ ଯେତେବେଳେ ଫେରି ଯାଇଥିଲି ସେତେବେଳେ ଯାଇଥିଲି କାନ୍ଦି କାନ୍ଦି, ଆଉ ଏବେ ବାହାରିଲା ବେଳେ ଆନନ୍ଦରେ ପ୍ରାଣ ନାଚି ଉଠୁଛି। ମନେ ହେଉଛି ଠାକୁର ଯାହା କହିଲେ ଜପରି ସବୁ କିଛି ସମାଧାନ କରି ଖୁବ୍ ଶୀଘ୍ର ଫେରି ଆସିବି ତାଙ୍କରି ଚରଣ ପ୍ରାନ୍ତେ। ଠାକୁରଙ୍କ ଉଲ୍ଲସିତ ଭାବ ଓ ହସ ହସ ମୁହଁ ଦେଖି ମୋର ମନ ମଧ୍ୟ ଉଲ୍ଲସିତ ହୋଇ ଉଠିଲା। ହସି ହସି ଠାକୁରଙ୍କ ଚରଣରେ ପ୍ରଣାମ କରି ବାହାରି ପଡ଼ିଲି ଓଡ଼ିଶା ଉଦ୍ଦେଶ୍ୟେ। ମନେ ହେଲା ଠାକୁର ମୋ ସାଙ୍ଗରେ ରହିଛନ୍ତି। ବିୟୋଗ ବ୍ୟଥା ଆଉ ଜାଗ୍ରତ ହୋଇ ଉଠିଲା ନାହିଁ। ପଥେ ପଥେ ଭାବି ଚାଲିଛି—ଠାକୁର, କିଏ? କିଏ ତୁମ୍ଭେ? ଗତ ଥର ମୁଁ ଏଠାରୁ ଗଲାବେଳେ ତୁମ୍ଭେ ନିଜେ କାନ୍ଦି ମୋତେ କନ୍ଦାଇ ଥିଲ, ଆଉ ଆଜି ତୁମ୍ଭେ ନିଜେ ହସି ହସି ମୋତେ ହସାଉଛ। ମୋର ନିଜସ୍ୱ ବୋଲି କୌଣସି କିଛି ନାହିଁ। ତୁମ୍ଭେ ଯେତେବେଳେ ଯେଉଁ ଭାବ ଧରୁଛ, ସେହି ଭାବରେ ଭାବିତ କରୁଛ ସମସ୍ତଙ୍କୁ। ଏହାରି ପାଇଁ ଲୋକ କ'ଣ ତୁମ୍ଭଙ୍କୁ କହନ୍ତି ବିଶ୍ୱନିୟନ୍ତା? ତୁମ୍ଭେ ବାରମ୍ବାର କହୁଛ– ତୁମ୍ଭେ ସବୁ କିଛି କରିପାର ଯଦି ତୁମ୍ଭ କଥା ମାନି ଆମେ ଚାଲିବା। ଏହା କ'ଣ ସତ୍ୟ? ମୁଁ ତ ଦେଖୁଛି ତୁମ୍ଭଙ୍କୁ ମାନିବାର ଖାଲି ଟିକେ ଚେଷ୍ଟା ଆମେ କରୁଛୁ, ବାକି ସବୁ ତ ତୁମ୍ଭେ କରାଇ ନେଉଛ ପ୍ରଭୁ! ଏହି କଥା ଦିନେ ମଧ୍ୟ ଠାକୁରଙ୍କୁ ପଚାରିଥିଲି। ଠାକୁର ଉତ୍ତରରେ କହିଥିଲେ– ମନୁଷ୍ୟ ଅଜଣା ପଥର ପଥିକ। ପରମ ପିତା ସବୁ କିଛି ଜାଣନ୍ତି। ତେଣୁ ସେ ଯେତେବେଳେ ତା'ର ସନ୍ତାନମାନଙ୍କୁ କିଛି ନିର୍ଦ୍ଦେଶ ଦିଅନ୍ତି, ଆଉ ତାଙ୍କ ସନ୍ତାନମାନେ ସେହି ନିର୍ଦ୍ଦେଶିତ ପଥରେ ଅଜଣା ହେଲେ ମଧ୍ୟ ପାଦ ବଢ଼ାନ୍ତି ସେତେବେଳେ ଦେଖାଯାଏ ଏକ ପାଦ ପରିବର୍ତ୍ତରେ ଭଗବାନ ଦଶ ପାଦ ଆଗେଇ ଆସି ପଥ ଦେଖାଇ ଟାଣି ନେଇଯା'ନ୍ତି କିନ୍ତୁ ଯଦି ତାଙ୍କ ନିର୍ଦ୍ଦେଶିତ ଆଦେଶ ପାଳନ କରା ନଯାଏ ତାହାହେଲେ ବିଧାତାର ମଧ୍ୟ ସାଧ୍ୟ ନାହିଁ ଯେ କାହାରି କିଛି ଭଲ କରିବା। ଆଉ ଏହି ଯେ ତାଙ୍କ କଥା ଶୁଣିବା, ଏହା ବାସ୍ତବ ଭାବରେ କାର୍ଯ୍ୟରେ ପରିଣତ କରିବାକୁ ହୁଏ।

**THE FULFILMENT:**

**'WHERE ACTION PURSUES DESIRE**
**FULFILMENT APPEARS IMMEDIATELY**
**WITH A SIMLE.'**

**--SREE SREE THAKUR**

## ॥ତିନି॥

୧୯୫୩ ମସିହା ଅଗଷ୍ଟ ମାସ। ଦିନେ ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଗଲା ବେଳକୁ ଠାକୁର ମୋତେ ଦେଖି କହିଲେ, "ଏଇ ସୁଶୀଳ, ଇଚ୍ଛା କଲେ ସେ ଗୋଟିଏ ସ୍ପେଶାଲ ଟ୍ରେନ୍ ନେଇ ଆସି ପାରେ।" ପ୍ରଥମେ ମୁଁ କିଛି ବୁଝି ପାରିଲି ନାହିଁ। ଜିଜ୍ଞାସୁ ଦୃଷ୍ଟି ନେଇ ଠାକୁରଙ୍କ ଆଡ଼କୁ ଚାହିଁବାରୁ ସେ ବୁଝେଇ କହିଲେ ଯେ, ଏଥର ଅକ୍ଟୋବର କନଫାରେନ୍ସକୁ (ପ୍ରତିବର୍ଷ ପହିଲା ବୈଶାଖ ଓ କୁମାର ପୂର୍ଣ୍ଣିମା ବେଳକୁ ଦେଓଘରଠାରେ ଉତ୍ସବ ହୁଏ। ଏଥିପାଇଁ ପୃଥିବୀର ବିଭିନ୍ନ ଅଞ୍ଚଳରୁ ହଜାର ହଜାର ଦର୍ଶନାର୍ଥୀ ଦେଓଘର ଠାରେ ଆସି ରୁଣ୍ଡ ହୁଅନ୍ତି।) ଆସିଲା ବେଳକୁ ଗୋଟିଏ ସ୍ପେଶାଲ ଟ୍ରେନ୍ ଓଡ଼ିଶାରୁ ନେଇ ଆସି ପାରିଲେ ଭଲ ହୁଅନ୍ତା। କିନ୍ତୁ ବାଲେଶ୍ୱରଠାରୁ ବୈଦ୍ୟନାଥ ଧାମ ଯାଏ ସ୍ପେଶାଲ ଟ୍ରେନ୍ ଯେ ଆସିବା ଅସମ୍ଭବ କଥା। ମୋ ଜୀବନରେ ପୂରା ଗାଡ଼ି ରିଜର୍ଭ କରିବା ଦୂରେ ଥାଉ ଗୋଟିଏ compartment ବି ରିଜର୍ଭ କରିନାହିଁ। ଠାକୁର ଏ କି କଥା କହୁଛନ୍ତି? ପୂରା ଟ୍ରେନ୍, ଅନ୍ତତ ୮ ଶହ ଯାତ୍ରୀ ପୂର୍ଣ୍ଣ ଗାଡ଼ି। ଅସମ୍ଭବ, ଅସମ୍ଭବ! କିନ୍ତୁ ସଙ୍ଗେ ସଙ୍ଗେ ମନେ ହେଲା, ଏପରି ଯେ କହୁଛନ୍ତି, ସେ ଆଉ କେହି ନୁହନ୍ତି; ସ୍ୱୟଂ ଶ୍ରୀଶ୍ରୀ ଠାକୁର, ଯେ ମୋତେ ଥରେ କହି ରଖିଥିଲେ– "ମୋ କଥାଗୁଡ଼ିକ କାର୍ଯ୍ୟରେ ପରିଣତ କରି ଦେଖିବ, ହେଉଛି କି ନାହିଁ, ନହେଲେ କହିବ।" ଏଥର କଣ ସେଇ ସୁଯୋଗ ଆସିଗଲା କି? ମୁଁ ତେଣୁ ସାହସ ବାନ୍ଧି କହିଲି– "ଚେଷ୍ଟାତ ମୁଁ କରିବି, ତେବେ ହେବ କି ନାହିଁ ଜାଣେନା"। ଶ୍ରୀଶ୍ରୀ ଠାକୁର କହିଲେ– "ତମେ ଚେଷ୍ଟା କଲେ ଦେଖିବ ଯେ ହେଇ କରି ରହିଛି।"

କିଛି ଦିନ ସେଠାରେ ରହି ବାଲେଶ୍ୱର ଫେରି ଆସିଲି। ତାପରେ ଲାଗି ପଡ଼ିଲି ସ୍ପେଶାଲ ଟ୍ରେନ୍ ପାଇଁ। ପ୍ରୟୋଜନୀୟ ପୋଷ୍ଟର ଛାପି ସହରମାନଙ୍କରେ ଓ ଗ୍ରାମମାନଙ୍କରେ ମରାଗଲା। ହ୍ୟାଣ୍ଡବିଲ ଛାପି ରାସ୍ତାରେ ବାଣ୍ଟିବାକୁ ଲାଗିଲି। ସିନେମାରେ ସ୍ଲାଇଡ଼ ଦେଲି, ତା'ଛଡ଼ା ବିଭିନ୍ନ ସହର ଓ ଗ୍ରାମାନଙ୍କରେ ନିଜେ ଯାଇ ସ୍ପେଶାଲ ଟ୍ରେନ୍ ଓ ଶ୍ରୀଶ୍ରୀ ଠାକୁରଙ୍କ କଥା କହିବାକୁ ଲାଗିଲି। ଠାକୁରଙ୍କର ଦିବ୍ୟ କଥା ଶୁଣି ସମସ୍ତେ ଉଲ୍ଲସିତ ହୁଅନ୍ତି, ତାଙ୍କୁ ଦେଖିବା ପାଇଁ ସମସ୍ତଙ୍କ ମନରେ ଆନନ୍ଦ ଜାତହୁଏ। ବ୍ୟକ୍ତିଗତ ଭାବେ ବହୁ ଲୋକ କେତେ କଥା ଆଲୋଚନା କରନ୍ତି। କିନ୍ତୁ ଟିକେଟ କେହି କିଣନ୍ତି ନାହିଁ। ଖାଲି କହନ୍ତି,–"ଏକ୍ଷଣି ତ ଡେରି ଅଛି, ପରେ ନେବା।" ବାଲେଶ୍ୱରରେ ମୋର ଇଲେକଟ୍ରିକ୍ ଦୋକାନରେ

ଟିକେଟ୍ ବିକ୍ରିର ଅଫିସ ହୋଇଥିଲା। ଦେଢ଼ମାସ କ୍ରମାଗତ ବୁଲି ଓ ପ୍ରଚାର କରି ଖଣ୍ଡିଏ ବି ଟିକେଟ ବିକ୍ରି ହେଲା ନାହିଁ। ବାଲେଶ୍ୱରକୁ ମଝିରେ ମଝିରେ ଫେରିଆସି ଦେଖେ, ସେଠାର ବି ଟିକେଟ ବିକ୍ରି ହୋଇ ନାହିଁ। ମୋ ସଙ୍ଗେ ସେତେବେଳକୁ ଚାରି ପାଞ୍ଚ ଜଣ ସହକର୍ମୀ— ଶ୍ରୀ ଉପେନ୍ଦ୍ର ପ୍ରସାଦ ପାତ୍ର, ଶ୍ରୀ ରାଜକୃଷ୍ଣ ଦେ, ଶ୍ରୀ ଶଶୀଦୁଲାଲ ଦେ— ଏମାନେ ଗ୍ରାମାଞ୍ଚଳର ପ୍ରଧାନ କର୍ମୀ। ସହରର କାମରେ ସାହାଯ୍ୟ କରୁଥିଲେ ଶ୍ରୀ ରାଧାକମଳ ଦାଶ, ଶ୍ରୀ ସୁବୋଧ ଚୌଧୁରୀ, ଶ୍ରୀ ରବିନାରାୟଣ ଦେ ଓ ବାଲେଶ୍ୱରରେ ରାଜାଭାବେ ପରିଚିତ ରାୟବାହାଦୁର ଶ୍ରୀ ମନ୍ମଥ ନାଥ ଦେବ। ସେ ଖୁବ୍ ସାହାଯ୍ୟ କରୁ ଥିଲେ ଓ ଉତ୍ସାହ ଦେଉଥିଲେ ସମସ୍ତ ବ୍ୟବସ୍ଥା ପାଇଁ।

ଦିନ ଯେତେ ଯେତେ ପାଖେଇ ଆସିଲା, ମୁଁ ସେତେ ବେଶି ଚିନ୍ତିତ ହୋଇ ଉଠିଲି। ଏ ପର୍ଯ୍ୟନ୍ତ ଜଣେ ତ କେହି ଯିବା ପାଇଁ ଟିକେଟ ନେଇ ନାହିଁ। ଅଥଚ ଗାଡ଼ିର ସକଳ ବ୍ୟବସ୍ଥା ହୋଇ ସାରିଛି। ଏଥିପାଇଁ ହାତରୁ ବହୁ ଟଙ୍କା ଖର୍ଚ୍ଚ କରି ପକାଇଲିଣି, ମୋ କ୍ଷମତାର ବାହାରେ ଧାର ମଧ୍ୟ କରି ସାରିଛି। ତେବେ ମନରେ ଗୋଟିଏ ଅସୀମ ଶକ୍ତି ଚିର ଜାଗ୍ରତ ହୋଇ ରହିଛି। ସବୁ ଗଲେ ମଧ୍ୟ ଗୋଟିଏ ବାସ୍ତବ ଜ୍ଞାନ ହେବ— ଶ୍ରୀଶ୍ରୀ ଠାକୁରଙ୍କ କଥା କେତେ ଦୂର ସତ୍ୟ। କଟକରୁ ଗୋଟିଏ ବଗିର ବ୍ୟବସ୍ଥା କରିଛି। ସେଥିରେ ୯୬ ଜଣ ପାସେଞ୍ଜର ଦରକାର। ସେଠାକାର ଗୁରୁ ଭାଇମାନଙ୍କୁ ଖବର ଦେଇଛି, ସେମାନେ ଯେଭଳି ସେଇ ବଗିରେ ଠାକୁର ଦର୍ଶନ କରିବାକୁ ଯାଆନ୍ତି। ଋତ୍ୱିକ ବୀରେନ ଦା ଜଣାଇଲେ ଯେ କଟକରୁ ସେମାନେ ଦିନେ ଆଗରୁ ଦେଓଘର ଯାଉଛନ୍ତି। ତେଣୁ ସେ ବଗିରେ ଯାଇ ପାରିବେ ନାହିଁ। ମୁଁ କହିଲି, ''ଦୟା କରି ଦିନେ ଡେରି କରି ଆସନ୍ତୁ। ତାହେଲେ ମତେ ଟଙ୍କାଗୁଡ଼ାକ ବୃଥା ହାତରୁ ଗଣିବାକୁ ହେବ ନାହିଁ।'' ସେ ଜଣାଇଲେ ଯେ, ତା ସମ୍ଭବ ନୁହେଁ। ସେ ଓ ତାଙ୍କ ପରିବାରର ୧୦/୧୫ ଜଣ ପୂର୍ବରୁ ଯିବା ପାଇଁ ସଂକଳ୍ପ କରି ସାରିଛନ୍ତି। ମାନସିକ ଅବସ୍ଥା ଆହୁରି ଖରାପ ହୋଇଗଲା। ତଥାପି 'ଜୟଗୁରୁ' କହି ଆଗେଇ ଆସିଲି ଓ ଭାବିଲି, ଦେଖେ ଶେଷକୁ କଣ ହେଉଛି। ଗାଡ଼ି ଛାଡ଼ିବା ପାଇଁ ଆଉ ମାତ୍ର ୫ ଦିନ ବାକି ଅଛି। ଦିନେ କଟକର ଶ୍ରୀ ଅକ୍ଷୟ ରାୟ ଚୌଧୁରୀ— ମୋର ପିଲା ଦିନର ବନ୍ଧୁ ଓ ଗୁରୁଭ୍ରାତା ତାଙ୍କୁ ଫୋନ୍ କରି କହିଲି ଯେ କଟକରୁ ଅନ୍ତତଃ ଏକ ଶହ ଜଣ ଲୋକ ଯିବା ଦରକାର। ତା' ନହେଲେ ମୋର ପ୍ରାୟ ୧୧ ଶହ ଟଙ୍କା ନଷ୍ଟ ହୋଇଯିବ। ଅକ୍ଷୟଦା' ମୋତେ ଫୋନରେ କହିଲେ— ଆଜି ଚାଲିଆସ, ଦୁଇ ବନ୍ଧୁ ଶେଷ ଚେଷ୍ଟା କରି ଦେଖିବା। ତା' ଛଡ଼ା

ଶ୍ରୀଶ୍ରୀ ଠାକୁର ତ ଅଛନ୍ତି, ଚିନ୍ତା କଣ ? ତାଙ୍କର ଏହି ଆଶ୍ୱାସନା ବାଣୀ ଶୁଣି ସେହି ରାତିରେ କଟକ ଚାଲି ଆସିଲି। ସକାଳେ ଦୁଇ ବନ୍ଧୁ ଟିକେଟ ବିକ୍ରି କରିବାକୁ ବାହାରି ଆଶ୍ଚର୍ଯ୍ୟ ହେଲୁଁ ଯେ, ଦିନ ଦଶଟା ସୁଦ୍ଧା ଆମର ୧୦୦ ଖଣ୍ଡ ଟିକେଟ ବିକ୍ରି ହୋଇ ଗଲା ଓ ଉତ୍ସବ ପାଇଁ ମଧ୍ୟ ୩୫୦ ଟଙ୍କା ସଂଗ୍ରହ ହୋଇ ପାରିଲା। ଦ୍ୱି ପ୍ରହର ଗାଡ଼ିରେ ବାଲେଶ୍ୱର ବାହାରିଲି। ଅକ୍ଷୟଦା' ଷ୍ଟେସନରେ ଛାଡ଼ି ଦେଇଗଲେ। କଟକ ବଗି ପାଇଁ ସିନା ନିଶ୍ଚିନ୍ତ ହେଲି, ପୁଣି ୭୦୦ ଯାତ୍ରୀ ଦରକାର ପୂରା ଗାଡ଼ିଟା ପାଇଁ।

ବାଲେଶ୍ୱରକୁ ଫେରି ଆସି ଦେଖିଲି ଏ ପର୍ଯ୍ୟନ୍ତ କୌଣସି ଟିକେଟ ବିକ୍ରି ହୋଇ ନାହିଁ। ସେଦିନ ବାରିପଦା (ମୟୂରଭଞ୍ଜ) ବାହାରିଲି। ସେଠାରେ ଋତ୍ୱିକ୍ ଶ୍ରୀ ଜ୍ୟୋତିର୍ମୟ ଘୋଷ ଓ ତାଙ୍କ ପରିବାରର ସମବେତ ଚେଷ୍ଟାରେ ଦିନକ ଭିତରେ ଦେଢ଼ଶ ଟିକେଟ ବିକ୍ରି ହୋଇଗଲା। ଟଙ୍କାନେଇ ମୁଁ ବାଲେଶ୍ୱର ଚାଲି ଆସିଲି। ଆଉ ମୋଟେ ହାତରେ ୨ ଦିନ ସମୟ ଅଛି, ବର୍ତ୍ତମାନ ବାଲେଶ୍ୱରରେ ଜଗି ରହିବା ଛଡ଼ା ଗତ୍ୟନ୍ତର ନାହିଁ। ପ୍ରତି ଘଣ୍ଟାରେ ରେଳ କମ୍ପାନୀରୁ ଫୋନ ଆସୁଛି, ଚାରିଆଡ଼ୁ ବହୁଲୋକ ନାନା ଖବର ଜାଣିବାକୁ ଚାହାନ୍ତି। ତା'ଛଡ଼ା ଉତ୍ସବ ପାଇଁ ଚାଉଳ, ଡାଲି ସଂଗ୍ରହ ହୋଇଛି। ଚାଉଳ ପ୍ରାୟ ୨୦୦ ମହଣ, ଡାଲି ପ୍ରାୟ ୫୦ ମହଣ ଭିକ୍ଷା କରି ସଂଗ୍ରହ ହୋଇଛି। ତା'ଛଡ଼ା ପ୍ରଚୁର ପରିବା। ବହୁ ଲୋକ ଯାଚିକରି ଚାଉଳ, ଡାଲି, କଖାରୁ ଓ ବାଲଟି ଆଦି ଦେଇଛନ୍ତି। ମୁଁ, ରାଜାସାହେବ ଓ ରବିଦା ଆମ୍ଭେ ବୁଲି ବୁଲି ଟଙ୍କା ସଂଗ୍ରହ କରୁଥାଉଁ। ସମୁଦାୟ ବୋଧହୁଏ ଦେଢ଼ ହଜାର ଟଙ୍କା ହେବ। ଆଜି ମୋର ଠିକ୍ ପରିମାଣ ମନେ ନାହିଁ। ସବୁ ହେଲା, କିନ୍ତୁ ଯାତ୍ରୀ ସେହି ବାରିପଦା ଓ କଟକରୁ ମିଶି ୨୫୦ରୁ ବେଶି ନୁହନ୍ତି। ତେଣୁ ଖୁବ୍ ଚିନ୍ତିତ ହୋଇପଡ଼ିଲି। ଗାଡ଼ି ୧୨ ତାରିଖ ରାତି ସାଢ଼େ ନଅଟାରେ ଛାଡ଼ିବ। ୧୦ ତାରିଖ ଦିନ ରାତି ୮ଟା ବେଳେ ଜଣେ ଲୋକ ଆସି ପଚାରିଲେ ସତରେ କ'ଣ ଗାଡ଼ି ଯାଉଛି ? ମୁଁ ''ନିଶ୍ଚୟ ଯିବ'' କହି ରେଳ କମ୍ପାନୀର ଚିଠି ପତ୍ର ଦେଖାଇଲି। ସେ ଦେଖି ଚିନ୍ତିତ ହୋଇ ୪ ଖଣ୍ଡ ଟିକେଟ କାଟିଲେ। ୧୧ ତାରିଖ ସକାଳୁ ଲୋକ ଆସି କ୍ରମାଗତ ଟିକେଟ ପାଇଁ ଭିଡ଼ କଲେ। ସେହି ଦିନକ ଭିତରେ ପ୍ରାୟ ଚାରିଶହ ଟିକେଟ ବିକ୍ରୟ ହୋଇ ଗଲା। ତହିଁ ଆର ଦିନ ୧୨ ତାରିଖରେ ଆଉ ପ୍ରାୟ ୩ ଶହ ଜଣ ଲୋକ ଆସି ଟିକେଟ କାଟିଲେ। ସବୁ ମିଶେଇ ପ୍ରାୟ ୧୦୦୦ ଲୋକ ନେଇ ଓଡ଼ିଶା ସତ୍‌ସଙ୍ଗର ଫେଷ୍ଟୁନ ଉଡ଼ାଇ ସ୍ପେଶାଲ ଟ୍ରେନ୍ ରାତି ସାଢ଼େ

ନଅଟାରେ ବାଲେଶ୍ୱର ଛାଡ଼ିଲା। ଯେତେବେଳେ ଗାଡ଼ିଛାଡ଼ିଲା, ପ୍ରାଣଖୋଲି 'ବନ୍ଦେ ପୁରୁଷୋତ୍ତମ' ବୋଲି ତାଙ୍କର ଚରଣ ବନ୍ଦନା କଲି ଓ ଭାବିଲି– ଏଥର ମଧ୍ୟ ମୋର ହାର୍ ହେଲା ଠାକୁର, ତୁମ୍ଭର ହିଁ ଜୟ ହେଲା। କିନ୍ତୁ ହାରିବାରେ ଯେ କେତେ ଆନନ୍ଦ, ତାହାତ ପୂର୍ବରୁ ଜଣା ନଥିଲା। ସାରା ରାତିଟି କେମିତି କଟିଗଲା।

ପର ଦିନ ୧୧ଟା ବେଳକୁ ଗାଡ଼ି ବୈଦ୍ୟନାଥଧାମ ଷ୍ଟେସନରେ ପହଞ୍ଚିଲା। ଲୋକମାନଙ୍କୁ ଯଥାସ୍ଥାନରେ ରଖି ଯେତେବେଳେ ଠାକୁର ଦର୍ଶନ କରିବାକୁ ଗଲି, ସେତେବେଳେକୁ ବେଳ ୪ଟା। ଶ୍ରୀଶ୍ରୀ ଠାକୁରଙ୍କର ଚରଣ ତଳେ ଯେତେବେଳେ ପ୍ରଣତି ଜଣାଇଲି– ଠାକୁର କହି ଉଠିଲେ– ଆଇଛିସ (ଆସିଲୁ)। ସାଙ୍ଗରେ ଆସିଥିବା ଅନ୍ୟ ସମସ୍ତଙ୍କୁ ଘରେ ରଖି ଦେଇ ଆସିଛୁ ତ? କିଏ ଗଛ ମୂଳେ ପଡ଼ି ନାହିଁ ତ? ମୁଁ କହିଲି,'' ହଁ ସମସ୍ତଙ୍କର ଖାଇବା ଓ ରହିବା ବନ୍ଦୋବସ୍ତ କରିଆସିଛି। ଗଛମୂଳେ କେହି ପଡ଼ିନି। ସେ ପୁଣି କହିଲେ, ''ଯୁନା ପିଲାଟି ପରା, ପୁଣି ଥରେ ଦେଖିଆ' କେହି ନଖାଇ ରହିଲେ କି। ତା'ପରେ ଆସି ବସି କଥାବାର୍ତ୍ତା କରିବା''। କି ଅସୀମ ଦରଦ ପ୍ରତିଟି ସନ୍ତାନ ପାଇଁ। ସମସ୍ତଙ୍କ ପାଇଁ ତାଙ୍କର ପ୍ରାଣ କାନ୍ଦେ। ସେଠାରେ ଆପଣା ପର ନାହିଁ। ୧୨ ଦିନରୁ ଅଧିକ ଉତ୍ସବ ଚାଲିଲା। ସେଥର ଲକ୍ଷାଧିକ ଲୋକଙ୍କର ସମାବେଶ ହୋଇଥିଲା। ଆଉ ସେ ଲକ୍ଷେ ଲୋକର ପ୍ରାଣକେନ୍ଦ୍ର ହେଲେ ଶ୍ରୀଶ୍ରୀ ଠାକୁର। ଖାଇବା, ଶୋଇବା ଓ ରହିବା କୌଣସି ଆଡ଼କୁ କାହାରି ଲକ୍ଷ୍ୟ ନାହିଁ। ସମସ୍ତେ ଶ୍ରୀଶ୍ରୀ ଠାକୁରଙ୍କର ଦର୍ଶନ ଆଶାରେ ତାଙ୍କ ଚାରିଆଡ଼େ ବୁଲୁଛନ୍ତି। ସେ ଯେ କି ଅସୀମ ଆନନ୍ଦ, ତାହା ଅବ୍ୟକ୍ତ।

ଆଉ ଦିନକର କଥା ମନେ ପଡ଼େ। ରାତ୍ରି ପ୍ରାୟ ଦେଢ଼ଟା ବେଳେ ବୈଦ୍ୟନାଥଧାମ ଷ୍ଟେସନରେ ଯାଇ ପହଞ୍ଚିଛି। ଭାବିଲି– ଶ୍ରୀଶ୍ରୀ ଠାକୁର ନିଶ୍ଚୟ ଏତେ ରାତିରେ ଶୋଇ ପଡ଼ିଥିବେ। ଶୀତ ଦିନ, ବିଶେଷ କରି ବିହାରର ଶୀତ। ଅନେକ ଭାବି ଷ୍ଟେସନର ବିଶ୍ରାମାଗାରରେ ଆଶ୍ରୟ ନେଲି। କିନ୍ତୁ କିଛି ଭଲ ଲାଗୁନି। ଇଚ୍ଛା ହେଉଛି, ଧାଇଁ ଯିବି ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ। ବୁଦ୍ଧି କହୁଛି– ଏତେ ଶୀତରେ ସେଠାକୁ ଯାଇ କଣ କରିବୁ? କିନ୍ତୁ ଶେଷ ପର୍ଯ୍ୟନ୍ତ ମନ ନିକଟରେ ବୁଦ୍ଧିର ପରାଜୟ ହେଲା। ଗୋଟିଏ ରିକ୍ସା ଡାକି ଆଶ୍ରମ ଉଦ୍ଦେଶ୍ୟରେ ବାହାରିଲି। ଆଶ୍ରମରେ ଯାଇ ପହଞ୍ଚିଲା ବେଳକୁ ରାତି ୩ଟା ପାଖାପାଖି। ରିକ୍ସାରୁ ଓହ୍ଲାଇ ଧୀରେ ଧୀରେ ଶ୍ରୀଶ୍ରୀ ଠାକୁର ଯେଉଁ ଘରେ ଶୁଅନ୍ତି ସେହି ଘର ପାଖକୁ ଗଲି। ଚାରିଆଡ଼ୁ ଦ୍ୱାର ଝରକା ବନ୍ଦଅଛି,

ତା' ଉପରେ ମୋଟା ଟାର୍ପୋଲିନ୍‌ର ପରଦା ଦିଆଯାଇଛି। ସେଠି ନିଃଶବ୍ଦରେ ଛିଡ଼ା ହୋଇଛି। ଏହି ସମୟରେ କାନ ପାରି ଶୁଣିଲି, ଭିତରୁ ଶ୍ରୀଶ୍ରୀ ଠାକୁର ଡାକ୍ତର ପ୍ୟାରୀଦାଙ୍କୁ କହୁଛନ୍ତି– କିଏ ଜଣେ ଆସିଲା, ଜୋତା ଶବ୍ଦ ହେଲା''। ପ୍ୟାରିଦା' କହିଲେ '' ବାହାରେ କିଏ''? ମୁଁ କହିଲି ମୁଁ। ମୋର କଥା ଶୁଣି ଶ୍ରୀ ଶ୍ରୀ ଠାକୁର କହି ଉଠିଲେ, ''ସୁଶୀଳା କିରେ?'' ମୁଁ କହିଲି– ଆଜ୍ଞା ହଁ। ମନେ ମନେ ଭାବିଲି ଲକ୍ଷ ଲକ୍ଷ ମଣିଷଙ୍କ କଣ୍ଠ ସ୍ୱର ମଧ୍ୟରେ ସେ କଣ ମୋର ସ୍ୱର ଚିହ୍ନିଛନ୍ତି, ନା ଅନ୍ୟ କିଛି। ଭାବିବାର ସମୟ ନାହିଁ– ସେ କହି ଉଠିଲେ ଆ' ଆ' ଭିତରକୁ ଆ'। ଭୀଷଣ ଶୀତ ହେଉଛି। ପ୍ୟାରୀଦା' କବାଟର ଶିକୁଳି ଖୋଲି ଦେଲେ। ମୁଁ ପର୍ଦ୍ଦା ଉଠାଇ ଭିତରକୁ ପଶିଲି। ଦେଖିଲି ଶ୍ରୀଶ୍ରୀ ଠାକୁର ବସିଛନ୍ତି– ଆଖି ଓ ମୁହଁରେ ରାତି ଜାଗରଣର ଚିହ୍ନ। ପ୍ରଣାମ କରିବା ପରେ ସେ କହିଲେ– ତୁ କେତେବେଳେ ଆସିଲୁ? ମୁଁ କହିଲି ପ୍ରାୟ ରାତି ଦେଢ଼ଟା ବେଳେ ଷ୍ଟେସନରେ ଆସି ପହଞ୍ଚିଲି। ତା' ପରଠାରୁ ଖାଲି ଭାବୁଛି–ଏତେ ରାତ୍ରିରେ ଆପଣଙ୍କ ପାଖକୁ ଆସିବି କି ନାହିଁ? କିନ୍ତୁ ଶେଷପର୍ଯ୍ୟନ୍ତ ନ ଆସି ରହି ପାରିଲି ନାହିଁ। ନ ଆସିଲେ ମୋତେ ଖରାପ ଖରାପ ଲାଗିବ।

ଶ୍ରୀଶ୍ରୀ ଠାକୁର କହିଲେ– ''ସେତିକିବେଳେ ଚାଲି ଆସିଥିଲେ ଭଲ ହୋଇଥା'ନ୍ତା। ରାତ୍ରି ଦେଢ଼ଟାବେଳୁ ମୁଁ ଉଠି ବସିଛି। କୌଣସି ମତେ ନିଦ ଆସୁ ନାହିଁ। ତୁ ଆସିଥିଲେ ବସି ଗପ କରିଥା'ନ୍ତେ।'' ମୁଁ କଲିକତାରୁ ଗୁଆଘିଅରେ ତାକାଇ ଅମୃତି (ଜଲ୍‌ବି) ତିଆରି କରି ନେଇ ଯାଇଥିଲି, ଯେପରି ଠାକୁରଙ୍କ ଭୋଗରେ ଲାଗି ପାରିବ। ତରତରରେ ସେ ଠୁଙ୍ଗା ମୁଁ ବ୍ୟାଗରୁ ବାହାର କଲି। ଦୁଇଟା ଠୁଙ୍ଗା ଦେଖି ଠାକୁର ପଚାରିଲେ– ''ଦୁଇଟା ଜାଗାରେ କାହିଁକି ଆଣିଛୁ?'' ମୁଁ କହିଲି, ''ଆପଣ କହିଥିଲେ– ''ଯେତେବେଳେ ଆସିବୁ ରମଣସାର ମା' ପାଇଁ କିଛି ନେଇ ଆସିବୁ।'' ତେଣୁ ତା' ପାଇଁ ଅଲଗା କରି ଆଉ ଗୋଟିଏ ଠୁଙ୍ଗାରେ ଅମୃତି ଆଣିଛି। ଶ୍ରୀଶ୍ରୀ ଠାକୁର ଅମୃତି ଦେଖି ବଡ଼ ମା'ଙ୍କୁ ଦେବାକୁ କହିଲେ। ବଡ଼ ମା' ପାଖରେ ବସିଥିଲେ। ଏତେ ରାତ୍ରିରେ ବି ତାଙ୍କ ଆଖିରେ ନିଦ ନାହିଁ। ଶ୍ରୀଶ୍ରୀ ଠାକୁର ଯେଉଁଠି, ବଡ଼ ମା' ବି ସେଇଠି। ସୂର୍ଯ୍ୟର ଯେପରି ଛାୟା ସେହିଭଳି ବଡ଼ ମା' ସବୁବେଳେ ଶ୍ରୀ ଶ୍ରୀ ଠାକୁରଙ୍କୁ ଅନୁସରଣ କରି ଚାଲିଛନ୍ତି। ବଡ଼ ମା'.....ଲକ୍ଷ୍ମୀ ମା' ହାତ ପାତି ଠୁଙ୍ଗା ଗ୍ରହଣ କଲେ।

ଶ୍ରୀଶ୍ରୀ ଠାକୁର ମୋତେ କହିଲେ– 'ଯେତେବେଳେ ଏତେ କଷ୍ଟ କଲୁଣି, ରମଣସାର ମା'ର ଅମୃତି ତା' ଘରେ ଦେଇଆ। ଶୋଇ ପଡ଼ିଥିଲେ ଉଠାଇ

ଦେଇ ଆସିବୁ'। ମୁଁ ସଙ୍ଗେ ସଙ୍ଗେ ବାହାରି ପଡ଼ିଲି। ବାଟରେ ଯାଉଁ ଯାଉଁ ଭାବୁଥାଏ କି ଆଶ୍ଚର୍ଯ୍ୟ! ରାତ୍ର ଦେଢ଼ଟାରେ ମୁଁ ଷ୍ଟେସନରେ ଆସି ପହଞ୍ଚିଛି, ଆଉ ଠାକୁର ବି ସେତିକି ବେଳଠାରୁ ଉଠି ବସିଛନ୍ତି। ମୋ ପରି ଜଣେ ନଗଣ୍ୟ ମଣିଷ ପାଇଁ ତାଙ୍କର କି ବ୍ୟାକୁଳତା। ମନେ ମନେ ଭାବିଲି– ନା, ଏଭଳି ଯେତେବେଳେ ନାଇଁ ସେତେବେଳେ ଠାକୁରଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେବା ଭଲ ନୁହେଁ। ଯେତେହେଲେ ବି ତାଙ୍କର ମଣିଷ ଦେହ ତ! କିନ୍ତୁ ମୁଁ କ'ଣ କରିବି? ମନ ଭିତରେ ତାଙ୍କୁ ଦେଖିବା ପାଇଁ କେତେବେଳେ ଯେ ତୀବ୍ର କ୍ଷୁଧା ଜାଗ୍ରତ ହୁଏ, ତା'ର ନିଶ୍ଚୟତା କାହିଁ? ହିସାବର ବାହାରେ ମନ; କେତେବେଳେ ଯାଇ ତାଙ୍କ ପାଖେ ହାଜର ହୋଇଯାଏ। ରମଣସାର ମା'ଙ୍କୁ ଜଲ୍‌ବି ଦେଇ ଫେରି ଆସିଲି। ଶ୍ରୀଶ୍ରୀ ଠାକୁର କହିଲେ– ରମଣର ମା' କ'ଣ କହିଲା ରେ? ମୁଁ କହିଲି– ସେ ପ୍ରଥମେ ତ ନିଦରୁ ଉଠିଲା ନାହିଁ, ଏତେ ରାତ୍ରିରେ ନିଦ ଭାଙ୍ଗି ଦେଲାରୁ 'ଛୋଟ ଲୋକ, ପାଜି' ଇତ୍ୟାଦି କହି ଗାଳି ଦେଲା। କିନ୍ତୁ ଅତି କଷ୍ଟରେ ଯେତେବେଳେ ବୁଝେଇ କହିଲି ଯେ ଶ୍ରୀଶ୍ରୀ ଠାକୁର ଖାଇବାକୁ ପଠେଇଛନ୍ତି– ସେତେବେଳେ କବାଟ ମେଲାଇ ଅମୃତି ଦେଖି କହିଲା– ବାଃ, ଏ ତ ଢାକାଇ ଅମୃତି। କିନ୍ତୁ ବର୍ତ୍ତମାନ ଖାଇବି କେମିତି? ସକାଳ ହେଲାଣି, ଇଷ୍ଟଭୃତି ନକରି ଖାଇବି କେମିତି? ମୁଁ କହିଲି ଯଦି ଖାଇବାକୁ ଇଚ୍ଛା ହେଉଛି ତ ଖାଇ ନିଅ, ସକାଳ ହୋଇନି, ରାତ୍ର ମୋଟେ ୩ଟା।

ସଙ୍ଗେ ସଙ୍ଗେ ରମଣସାର ମା' ଗୋଟିଏ ଅମୃତି ପାଟିରେ ପକାଇ ଦେଲେ ଏବଂ ଖାଇ ଖୁବ୍ ସୁଖ୍ୟାତି କରିବାକୁ ଲାଗିଲେ। କହିଲେ ବହୁ ଦିନ ହେବ ଏଭଳି ଅମୃତି ଖାଇନି, ଠିକ୍ ଢାକାଇ ଅମୃତି। ପାକିସ୍ଥାନରୁ ଆସିବା ପରେ ଏଇ ପ୍ରଥମ ଖାଇଲି। ଶ୍ରୀଶ୍ରୀ ଠାକୁର ଶୁଣି ଖୁବ୍ ହସିବାକୁ ଲାଗିଲେ ଓ କହିଲେ– ''ଆଜି ରମଣ ମା'ର ସାଧନାର ସିଦ୍ଧି ଲାଭ ହେଲା। ତା'ର ଜିଭରେ ସ୍ୱାଦ ଅଛି, ଯେ ଯାହା ଦେଲେ ତାକୁ ଖାଇ ଭଲ ହେଲେ ବି ଦୋଷ ବାହାର କରେ! କିନ୍ତୁ ଆଜି ଶୁଣୁଛି, ଖାଲି ଭଲ କହିଲା। ତା' ହେଲେ ଆଉ କଥା ନାହିଁ। କାଲି ଦେଖିବୁ ସେ ଆଉ ତୋ ପିଛା ଛାଡ଼ିବ ନାହିଁ। ଖାଲି ପ୍ରଶଂସା କରି ବୁଲିବ। ପ୍ରାୟ ସବୁ ମଣିଷ ଏହି ରମଣସାର ମା' ପରି ନିଜ ପାଉଣା ଗଣ୍ଡାକ ପାଇଲେ ପଛେ ପଛେ ଧାଆନ୍ତି ଓ ସ୍ତୁତି କରନ୍ତି। ଆଉ ତା' ନହେଲେ ବା ଡେରି ହେଲେ କିଛି ଶୁଣନ୍ତି ନାହିଁ, ନିନ୍ଦା ଓ ଆକ୍ରୋଶରେ ଫାଟି ପଡ଼ନ୍ତି। ତେଣୁ ଯେ ଯାହା ଚାହେଁ, ସାମ୍ଭାବ୍ୟ ପକ୍ଷେ ତାକୁ ତା ଦେବାକୁ ହୁଏ। ଅବଶ୍ୟ ଏହି ଦେବାରେ ଯେପରି

ତା'ର କିଛି କ୍ଷତି ନହୁଏ। ତା'ପରେ ମୈତ୍ରୀ ଘନ ହୋଇ ଆସିଲେ ତାକୁ ଶୁଭ ପଥରେ ନେଇ ହୁଏ। ଅବଶ୍ୟ କେତେଗୁଡ଼ିଏ ଲୋକ ଅଛନ୍ତି, ଖାଲି ନେଇଯା'ନ୍ତି, କିନ୍ତୁ ଶୁଭ ପଥରେ ସହଜରେ ପାଦ ବଢ଼ାନ୍ତି ନାହିଁ। ସେମାନଙ୍କ ପାଇଁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ହୁଏ। ଏ ଧୈର୍ଯ୍ୟ ଦ୍ୱାରା ନିଜର କ୍ଷମତା ଯେ କେତେ ବଢ଼ିଯାଏ, ତା' ଆଉ କହି ଶେଷ କରି ହେବନାହିଁ।''

ପର ଦିନ ସନ୍ଧ୍ୟାରେ ଶ୍ରୀଶ୍ରୀ ଠାକୁରଙ୍କର ଦେହ ଖରାପ ହେଲା। ସେ ଥରକୁ ଥର କମ୍ପି ଉଠୁଛନ୍ତି। ଡାକ୍ତରମାନେ ଏ ଅବସ୍ଥା ଦେଖି ଅସ୍ଥିର। ମୁଁ ଶୁଣିଲି ଠାକୁରଙ୍କର ଏ ଅବସ୍ଥା ୬/୭ ଦିନ ଧରି ହେଉଛି। କାଲି ଟିକେ କମ୍ ଥିଲା, ଆଜି ଏ ଓଳିଠାରୁ ପୁଣି ବଢ଼ିଛି। କେହି କାରଣ ନିର୍ଣ୍ଣୟ କରିପାରୁ ନାହାନ୍ତି। ଡାକ୍ତରମାନଙ୍କ ମତରେ ମିଠା ଜିନିଷ ଖାଇଲେ ଏପରି ବେଶି ହୁଏ। ଜଣେ ଡାକ୍ତର କହିଲେ— ଆମେ ଠାକୁରଙ୍କର ମିଠା ଖାଇବା ବନ୍ଦକଲେ କ'ଣ ହେବ? ଜଣେ ଜଣେ ଭକ୍ତ ଆଦର କରି ମିଠା ନେଇ ଆସନ୍ତି। ଯେପରି କାଲି ସୁଶୀଲ ଦା' ଅମୃତି ଆଣିଥିଲେ। ଆଜି ଠାକୁର ଖାଇଲାବେଳେ ମାଗି ମାଗି ୩ଟା ଅମୃତି ଖାଇଲେ। ବଡ଼ ମା' ବାଧ୍ୟ ହୋଇ ଦେଲେ। ଏ ଭକ୍ତମାନଙ୍କ ଯୋଗରୁ ଠାକୁରଙ୍କୁ ସୁସ୍ଥ ରଖିବା କଠିନ। ଶ୍ରୀଶ୍ରୀ ଠାକୁର ସଙ୍ଗେ ସଙ୍ଗେ କହିଲେ, 'ତୁମେ ସବୁ ବଡ଼ ବଡ଼ ଡାକ୍ତର, ଆଉ ଏମିତି ଡାକ୍ତରୀ କରୁଛ ଯେ ମୋର ଖାଇବା ପିଇବା ବନ୍ଦ ହୋଇଗଲାଣି। ତମେ ଯେତେବେଳେ ଯାହା କୁହ ମୁଁ ସବୁ ଶୁଣେ। ଆଉ ଏଇ ଶୁଣିବାରୁ ମୋର ଖାଇବା ପିଇବା ତମ ଇଚ୍ଛା ଉପରେ ନିର୍ଭର କରୁଛି। କିନ୍ତୁ ସେଥିରେ ମୁଁ ଦିନକୁ ଦିନ ବେଶି ଅସୁସ୍ଥ ହେଉଛି ସିନା କମ୍ ନାହିଁ। ଆଜି ସିନା ଅମୃତି ଖାଇଲି— ଏ କେତେ ଦିନ ଧରି ଏ ରୋଗ ଭୋଗୁଥିଲି କାହିଁକି? ତମେ ଯାହା ଖାଇବାକୁ ଦେଉଛ ସେହି ଜିନିଷତ ଖାଉଛି। ମଣିଷକୁ ଦୋଷୀ କରି ପାରିଲେ ବା ଆଘାତ ଦେଇ ପାରିଲେ ତମେମାନେ ଖୁସି ହୁଅ। ଏଇଟା କିନ୍ତୁ ଭଲ ନୁହେଁ। ସୁଶୀଲ କ'ଣ ଜାଣିଥିଲା ମୋର ଶରୀର ଅସୁସ୍ଥ ବୋଲି। ତା'ଛଡ଼ା ମୁଁ ଇଚ୍ଛା କରି ଖାଇ ନଥିଲେ ସେ କିଛି କହି ନଥାନ୍ତା। ସେ ଦେଇ କରି ଖୁସି ଓ ମୋର ଖାଇବାକୁ ଇଚ୍ଛା ହେଲା, ତେଣୁ ଖାଇଛି।'

ଏକଥା ଶୁଣି ଗୋଟିଏ ଦିଗରୁ ମୋର ଆନନ୍ଦ ଯେମିତି ହେଲା— କାରଣ ଶ୍ରୀଶ୍ରୀ ଠାକୁର ଅନ୍ତର୍ଯ୍ୟାମୀ, ମୋତେ ଆସାମୀର କାଠଗଡ଼ାରୁ ରକ୍ଷାକଲେ। କିନ୍ତୁ ଅନ୍ୟ ଦିଗରୁ ଭାବିବାକୁ ଲାଗିଲି— ଏହି ଅମୃତି ଶ୍ରୀଶ୍ରୀ ଠାକୁରଙ୍କର

ଅସୁସ୍ଥ ହେବାର କିଛି କାରଣ ନୁହେଁ ତ। ଏକାନ୍ତରେ ଠାକୁରଙ୍କୁ ପଚାରିଲି– "ଠାକୁର! ଥରେ ଥରେ ଭାବି ଠିକ୍ କରି ପାରେନା, କଣ କଲେ ଭଲ ହୁଏ। ଯେମିତି ଏଥର ଅମୃତି ଆଣିଲି, ଆପଣଙ୍କ ପାଇଁ ଗ୍ରହଣୀୟ କି ନା, ତା ନବୁଝି ଅଣା ହେଲା ଅଥଚ ଦୂରରୁ ବୁଝି ପାରିଲା ଭଳି ଶକ୍ତି ମୋର ନାହିଁ। ଏ ଅବସ୍ଥାରେ କଣ କରିବି?" ଶ୍ରୀଶ୍ରୀ ଠାକୁର କହିଲେ– ଏତେ କଥା ଭାବିବା ଭଲ ନୁହେଁ। ଯାହାକୁ ଭଲ ପାଅ, ଅନ୍ତର ଯା' ଚାହେଁ ତା' କରିବାକୁ ହୁଏ। ତା' କେତେବେଳେ କାହାର ଖରାପ କରେନା। ଯେପରି ପୁତ୍ର ପାଇଁ ପିତା ବଜାରରେ ଯାହା ଭଲ ଦେଖେ, ତା' ନ ଖାଇ ନ ପିଇ ପୁଅ ପାଇଁ ଆଣେ। ତା' ଭିତରେ ବିଷ ବା ଏଭଳି କିଛି ଜିନିଷ ଆଣେ ନା, ଯାହା ଦ୍ୱାରା ପୁତ୍ରର କୌଣସି କ୍ଷତି ହେବ। ଲୋକମାନଙ୍କ କଥାରେ କାନ ଦେବୁ ନାହିଁ। ତୋତେ ଯେତେବେଳେ ଯାହା ଭଲ ଲାଗେ ତାହା ଆଣିବୁ, ମୋର ଯେତେବେଳେ ଯାହା ଇଚ୍ଛା ହେବ, ଖାଇବି ବା ବାଣ୍ଟି ଦେବି। ଅସଲ କଥା ତୁ ଯାହା ଦେବୁ ମୁଁ ତାହା ଗ୍ରହଣ କରିବି। ଏତେଗୁଡ଼ାଏ ଅମୃତି ଆଣିଥିଲୁ ମୁଁ ମୋଟେ ୨/୩ ଖଣ୍ଡ ଖାଇଛି। ସେହିଭଳି ଗୋଟିଏ ଜିନିଷ ବି ମୁଁ ଏ ମୁଖରେ ନ ଖାଇ ଅନ୍ୟ ମୁଖରେ ଖାଇପାରେ। କାଲି ଯେ ରମଣର ମା' ଖାଇଛି, ତା' ମଧ୍ୟ ମୁହିଁ ତା' ମୁହଁରେ ଖାଇଚି। ମୂଳକଥା ହେଲା, ତୋର ଦେବା ଓ ମୋର ଗ୍ରହଣ କରିବା। ଏଟା ଖାଲି ତୋ ପାଇଁ ନୁହେଁ, ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ। ଡାକ୍ତରମାନେ ରୋଗୀ ପ୍ରତି ଯାହା ଯାହା କରିବା ଆବଶ୍ୟକ ତାହା କରନ୍ତି ଓ କହନ୍ତି। ସେଥିପାଇଁ ମନରେ ଦୁଃଖ କରିବୁ ନାହିଁ। ତୋତେ ଆଘାତ ଦେବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ। ମୋର ଅସୁସ୍ଥ ହେବାର କାରଣ ଖୋଜୁ ଖୋଜୁ ଗୋଟିଏ କାରଣ ପାଇଲେ। ଆଉ ତା' ସହିତ ତୋର ନାମଟି ବି ଜଡ଼ିତ ହୋଇ ପଡ଼ିଲା। ପ୍ରକୃତରେ ଏଟା ଅସଲ କାରଣ ନୁହେଁ। ତାଙ୍କର ଗୋଟିଏ ଧାରଣା ମାତ୍ର। ଅମୃତିଗୁଡ଼ିକ ଖୁବ୍ ଭଲ– ମନେ ହେଉଥିଲା ଆଉ ଦୁଇ ଚାରି ଖଣ୍ଡ ଖାଏ। କିନ୍ତୁ ପେଟରେ ଆଉ ଜମା ଜାଗା ନ ଥିବାରୁ ପାରିଲି ନାହିଁ।

**TRUE KNOWLEDGE :**

**TO KNOW**
**IS TO FOLLOW**
**AND TO FULFIL!**

**–SREE SREE THAKUR**

# ।। ଚାରି ।।

ଏହାର କିଛି ଦିନ ପରେ ଶ୍ରୀଶ୍ରୀ ଠାକୁର ଯତୀ ଆଶ୍ରମରେ ବସିଅଛନ୍ତି। ଗୋଟିଏ ଛୋଟ ବାଳକ କଲିକତାରୁ ଆସିଛି। ଠାକୁରଙ୍କୁ ପ୍ରଣାମ କରି ଗୋଟିଏ ସେଲୁଲଏଡ଼ର ଛୋଟ ଡିବା ଦେଲା। ଡିବାଟି ଦେଖିବାକୁ ଖୁବ୍ ସୁନ୍ଦର। ଠାକୁର ହାତରେ ଧରି ଏପାଖ ସେପାଖ ଦେଖିବାକୁ ଲାଗିଲେ। ବାରମ୍ବାର ଏଭଳି ଦେଖିବାରୁ ଉପସ୍ଥିତ ଲୋକଙ୍କ ଭିତରୁ ଜଣେ କହିଲେ– ଠାକୁର! ଏଗୁଡ଼ାକ କଲିକତା ଫୁଟ୍‌ପାଥ୍‌ରେ କିଣିବାକୁ ମିଳେ, ଦାମ୍ ବି ଖୁବ୍ ଶସ୍ତା। ଶ୍ରୀଶ୍ରୀ ଠାକୁର କହିଲେ– ପଇସା ଦେଇ ଏହାର ମୂଲ୍ୟ ନିରୂପଣ କରି ହୁଏ ନାହିଁ। କି ସୁନ୍ଦର ଦେଖିବାକୁ, ଆଉରି ସୁନ୍ଦର ହେଲା– ଯିଏ ଆଣିଛି, ସେ ଗୋଟିଏ ଛୋଟ ପିଲା। ବାଟରେ ଯାଉ ଯାଉ ଏ ସୁନ୍ଦର ଜିନିଷଟି ଦେଖି ମୋ କଥା ତା'ର ମନେ ପଡ଼ିଛି। କେତେ ଯତ୍ନ ସହକାରେ ସେ ନେଇ ଆସିଛି। ଏ ପଇସାରେ ସେ ଅନ୍ୟ କିଛି କିଣି ଖାଇ ପାରିଥାଆନ୍ତା ବା ନିଜ ପାଇଁ ଖେଳଣା କିଣି ପାରିଥାଆନ୍ତା, ତା' ନକରି ତା'ର ମୋ କଥା ମନେ ପଡ଼ିଛି ଏବଂ ତା'ର ସାମର୍ଥ୍ୟ ଭିତରେ ଯାହା ସବୁଠାରୁ ସୁନ୍ଦର ଭାବିଛି, ତା' ମୋ' ପାଇଁ ନେଇ ଆସିଛି। ତା' ପାଖରେ ଏ ଜିନିଷର ଦାମ୍ ଯାହା, ତା'ର ତୁଳନା ହୁଏ ନାହିଁ। ପଇସା ହିସାବ କରି ବିଚାର କରନାହିଁ। ତା'ର ଏହି– sentiment ଟି ହେଲା ଅତି ମୂଲ୍ୟବାନ୍। ଏଇ sentiment ଯାହାର ଯେତେ ବେଶି ଥାଏ ସେ ଜୀବନରେ ସେତେବେଶି ବଡ଼ ହୋଇ ଉଠେ। ଦେଖିଲି ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଜିନିଷର ଦାମ୍ ଯେତେ ବେଶି ନୁହେଁ ତାଠାରୁ ସେ ବେଶି ଦାମ୍ ଦିଅନ୍ତି ଅନ୍ତରର। ସେଇଥିପାଇଁ ତ ମୋର ମନେ ହୁଏ ସେ ଅନ୍ତର୍ଯ୍ୟାମୀ।

**FRANK BUT SWEET :**

**BE FRANK TO TELL**
**BUT ALWAYS WITH A SWEET TONGUE**

**–SREE SREE THAKUR**

## ।। ପାଞ୍ଚ ।।

୧୯୫୩ ସାଲ। ଶ୍ରୀଶ୍ରୀ ଠାକୁରଙ୍କର ଜନ୍ମ ଉତ୍ସବ ସରି ଯାଇଛି। ଉତ୍ସବରେ ଆଗତ ଭକ୍ତମଣ୍ଡଳୀ ଧୀରେ ଧୀରେ ସମସ୍ତେ ଚାଲି ଯାଇଛନ୍ତି। ମୋ ସାଙ୍ଗରେ ଯେଉଁମାନେ ସବୁ ଓଡ଼ିଶାରୁ ଆସିଥିଲେ ପ୍ରାୟ ହଜାରେ ଲୋକ, ସେମାନଙ୍କ ସାଙ୍ଗରେ ମୋର ଫେରିଯିବାର ଇଚ୍ଛା ଥିଲା ; କିନ୍ତୁ ଶ୍ରୀଶ୍ରୀ ଠାକୁରଙ୍କର ଅନୁମତି ମିଳି ନାହିଁ ମୋର ଯିବାପାଇଁ। ଠାକୁର କହିଲେ– କଥାବାର୍ତ୍ତା କିଛି ହୋଇନାହିଁ, ଭିଡ଼ କମିଗଲେ ବସି କଥା ହେବା ରୁହ। ବିଗତ ଚାରିମାସ ବ୍ୟବସାୟ, ବାଣିଜ୍ୟ କିଛି ଦେଖି ପାରିନାହିଁ। ଓଡ଼ିଶାରୁ ଗୋଟିଏ ସ୍ପେଶାଲ୍ ଟ୍ରେନ୍ ନେଇ ଆସିବା ପାଇଁ ଠାକୁର କହିଥିଲେ। ସେଥିରେ ଲାଗି ପଡ଼ିଥିଲି। ମନ ବ୍ୟସ୍ତ ହେଉଛି ଘରକୁ ଫେରିଯାଇ ବ୍ୟବସାୟ ଦେଖିବା ପାଇଁ। ଏଆଡ଼େ ଠାକୁରଙ୍କୁ ଛାଡ଼ି ଯିବା ପାଇଁ ମଧ୍ୟ ମନ ଚାହୁଁ ନାହିଁ। ମନର ଏଇ ଦ୍ୱନ୍ଦ ଭାବ ସାଙ୍ଗରେ ଯେତେବେଳେ ଠାକୁରଙ୍କ ଆଦେଶ ହେଲା ତାଙ୍କ ପାଖରେ ରହିବା ପାଇଁ, ନିର୍ବିବାଦରେ ରହିଗଲି।

ଦିନ ପରେ ଦିନ ବିତି ମାସ ହେବାକୁ ଚାଲିଲାଣି। ଠାକୁର ସବୁବେଳେ ଡାକି ପାଖରେ ବସାଉଛନ୍ତି। ପ୍ରାୟ ଦିନ ସକାଳେ ମୋତେ ପ୍ରଥମେ ଦେଖିବା ସାଙ୍ଗେ ସାଙ୍ଗେ କହି ଉଠୁଛନ୍ତି–"Come to me, Come to me, I will make you a fishers of man"। ପ୍ରଥମ ଦିନ ମୁଁ ପଚାରିଲି– ଠାକୁର ! ଏ କଥାର ଅର୍ଥ କ'ଣ ? ଶ୍ରୀଶ୍ରୀ ଠାକୁର କହିଲେ– ଭଗବାନ ଯୀଶୁ ସମୁଦ୍ର କୂଳରେ ଠିଆ ହୋଇ ଯେଉଁ ଲୋକମାନେ ମାଛ ଧରୁଥିଲେ ସେମାନଙ୍କ ଭିତରୁ କେତେକ ଭକ୍ତଙ୍କୁ ଡାକି କହିଥିଲେ– ଆସ, ଆସ, ମୋ ପାଖକୁ ଆସ, ମୁଁ ତୁମ୍ଭମାନଙ୍କୁ ମାଛ ଧରା ପରିବର୍ତ୍ତରେ ମନୁଷ୍ୟ ଧରିବାର କୌଶଳ ଶିଖାଇ ଦେବି। ଆଜି ତୁମ୍ଭଙ୍କୁ ମୁଁ ମଧ୍ୟ ସେହି କଥା କହୁଛି। ଆସ, ମୁଁ ତୁମ୍ଭଙ୍କୁ ମନୁଷ୍ୟ ଧରିବାର ପନ୍ଥା ଶିଖାଇ ଦେବି। ମୁଁ କହିଲି– ଠାକୁର ! ମନୁଷ୍ୟ ଧରିବା ଅର୍ଥ ଆପଣ କ'ଣ କହୁଛନ୍ତି ମୁଁ କିଛି ବୁଝି ପାରୁନାହିଁ। ଶ୍ରୀଶ୍ରୀ ଠାକୁର କହିଲେ– ମନୁଷ୍ୟ ଧରିବା ଅର୍ଥ, ପ୍ରତିଟି ମନୁଷ୍ୟ କାମ, କ୍ରୋଧ, ଲୋଭ, ମଦ, ମୋହ, ମାତ୍ସର୍ଯ୍ୟରେ ମାତି ରହିଛନ୍ତି। ଅର୍ଥାତ୍ କ୍ଷୁଦ୍ରସ୍ୱାର୍ଥ ଗଣ୍ଡୀ ଦ୍ୱାରା ଆବଦ୍ଧ ରହିଛନ୍ତି। କିନ୍ତୁ କାହାରି ଅନ୍ତରରେ ଶାନ୍ତି ନାହିଁ। କ୍ଷଣିକ ସୁଖ ଆଶାରେ ଚିର ଦୁଃଖରେ ବୁଡ଼ି ରହିଛନ୍ତି। ତୁମ୍ଭର କର୍ମ

ହେବ— ପ୍ରତିଟି ମନୁଷ୍ୟକୁ ସେହି ନିମଜ୍ଜମାନ ଅବସ୍ଥାରୁ ତୋଳିଧରି ଆନନ୍ଦର ସନ୍ଧାନ ଦେବା। ପ୍ରତିଟି ମନୁଷ୍ୟକୁ ଐଶ୍ୱର୍ଯ୍ୟଶାଳୀ କରି ତୋଳିବାକୁ ହେବ।

ମନୁଷ୍ୟ ଜାଣେନା ସେ କ'ଣ ଚାହେଁ, କ'ଣ ପାଇଲେ ତା'ର ଜୀବନ ସମୃଦ୍ଧଶାଳୀ ଓ ସାର୍ଥକ ହୋଇ ଉଠିବ। ତେଣୁ ଅନ୍ଧାର, ଅଜଣା ପଥରେ ଘୂରିବୁଲି ହେଉଛନ୍ତି। ତାଙ୍କୁ ଦେଖାଇବାକୁ ହେବ ସେହି ଅନନ୍ତ ପଥ, ଯେଉଁ ପଥର ସନ୍ଧାନ ପାଇବା ହିଁ ପ୍ରତି ମନୁଷ୍ୟର ଚରମ ଚାହିଦା। ତୁମ୍ଭେ ନିଜେ ସେହି ପଥରେ ଚାଲି ତୁମ୍ଭ ସମ୍ମୁଖରେ ଆଗତ ସମସ୍ତଙ୍କୁ ସେହି ପଥର ସନ୍ଧାନ ଦେବାପାଇଁ ଚେଷ୍ଟା କରିବ। ପ୍ରତି ମନୁଷ୍ୟକୁ ଦୁଃଖ ଜଞ୍ଜାଳମୟ ସଂସାରରୁ ଧରିଆଣି ସତ୍ୟ, ଶିବ ଓ ସୁନ୍ଦର ଜଗତକୁ ନେଇଯିବ। ମନେ ରଖିଥିବ ମଳିନତା ଦ୍ୱାରା ଆବୃତ୍ତ ରହିଲେ ମଧ୍ୟ ପ୍ରତିଟି ମନୁଷ୍ୟର ଶେଷ ପର୍ଯ୍ୟନ୍ତ (Ultimate) ଚାହିଦା କିନ୍ତୁ ଏହା ହିଁ। ଆଉ ତାହାରି ପାଇଁ ତୁମ୍ଭଙ୍କୁ କହୁଛି— ସବୁ କିଛି ଛାଡ଼ି, ଆସ ମୋ ପାଖକୁ, ମୁଁ ତୁମ୍ଭଙ୍କୁ ଦେଖାଇବି ସେହି ପଥ ଏବଂ ଶିଖାଇବି କିପରି ଲୋକକୁ ନେଇଯାଇ ପାରିବ ସେହି ଚିର ଆନନ୍ଦମୟ ଶାନ୍ତି ପଥରେ। ଏହି ଭାବରେ ପ୍ରତିଦିନ ସକାଳେ ଠାକୁର ଦେଖିବାମାତ୍ରକେ ଆନନ୍ଦ ସହକାରେ କହି ଉଠୁଥିଲେ— Come to me, Come to me.....ପ୍ରଥମେ ପ୍ରଥମେ ଘର–ସଂସାର, ବ୍ୟବସାୟ–ବାଣିଜ୍ୟ କଥା ମନ ଭିତରେ ଆସି ଉଙ୍କି ଝୁଙ୍କି ହେଲେ ମଧ୍ୟ ପଛରେ ଆଉ ଏସବୁ ମନକୁ ଆସିଲା ନାହିଁ।

ମହାନନ୍ଦେ ଦିନ କଟୁଛି। ଠାକୁର ପାଖେ ପାଖେ ରଖି ଲୋକଚରିତ୍ର ସମ୍ବନ୍ଧରେ ସଚେତନ କରି ରଖୁଛନ୍ତି, ଦୋଷତ୍ରୁଟି ସବୁ ଦେଖାଇ ଦେଉଛନ୍ତି। ସାଙ୍ଗେ ସାଙ୍ଗେ କହୁଛନ୍ତି— ଏହି ଦୋଷତ୍ରୁଟିଗୁଡ଼ିକ କିନ୍ତୁ ଅସଲ ମନୁଷ୍ୟଟି ନୁହେଁ, ଏହା ହେଉଛି ତାଙ୍କର ସେହି ଚରିତ୍ର ଯାହାକି ବାହାରୁ ଆସିଛି, ଦିନେ ବାହାରି ଯିବ। ତେଣୁ ସବୁବେଳେ ଚେଷ୍ଟିତ ରହିବ ମନୁଷ୍ୟର ଯାହାକିଛି ଖରାପ ତାହା ସଙ୍ଗରେ uncompromising ରହିବାକୁ। ଚେଷ୍ଟା ରଖିବ କିପରି ସେହି କୁଚରିତ୍ରକୁ ଦୂର କରିଦେଇ ତାହାରି ସ୍ଥଳରେ ସୁ ଆଣି ବସାଇ ପାରିବ। ଆହୁରି କହିଲେ— ସେହି ଯେ ଇଂରାଜୀରେ କ'ଣ ଗୋଟିଏ କଥା ଅଛିନା, 'Hate the sin, not the sinner' କଥାଟି ବଡ଼ ଖାଣ୍ଟି। ମୋର ଖୁବ୍ ଭଲ ଲାଗେ। ଯେ କୌଣସି ମନୁଷ୍ୟ ଭିତରୁ ଯେତେ ପରିମାଣରେ ଖରାପ ଜିନିଷ ବାହାର କରିଦେଇ ପାରିବ ଆଉ ସେ ସ୍ଥାନରେ ଆଣି ଶୁଭ ସନ୍ଦିପୀ ଯାହା ତାହାକୁ ବସାଇ ଦେଇ ପାରିବ, ମନୁଷ୍ୟ କିନ୍ତୁ ସେତେ ପରିମାଣରେ ଦେବତ୍ୱର

ଦୀପ୍ତିରେ ସମାଜ, ଜାତି ଦୀପ୍ତିମାନ ଅଧିକାରୀ ହୋଇ ଉଠିବ। ତାଙ୍କର ଦୀପ୍ତିରେ ସମାଜ, ଜାତି ଦୀପ୍ତିମାନ ହୋଇ ସୁନ୍ଦରାଲୋକରେ ଆଲୋକିତ କରି ବିକୀରଣ କରିବ ରଶ୍ମୀଛଟା। ଏହିପରି ଦିନ ବିତିଯାଉଛି। ଠାକୁର ହାତ ଧରି ଧରି ନେଇ ଚାଲିଛନ୍ତି। ଆଶ୍ରମରେ କୌଣସି ଅଦୀକ୍ଷିତ ଲୋକ ଠାକୁର ଦର୍ଶନରେ ଆସିଲେ ଅନେକ ସମୟରେ ଠାକୁର ମୋତେ ପଠାଇ ଦେଉଛନ୍ତି ତାଙ୍କ ପାଖକୁ। କହୁଛନ୍ତି:– ଯା', ତାଙ୍କ ସାଙ୍ଗରେ କଥା କହ। ଶତ ଶତ ଲୋକ ଆସନ୍ତି। ତାଙ୍କର ହଜାର ହଜାର ପ୍ରଶ୍ନ, ସେହି ସମସ୍ତ କେତେକଙ୍କର ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡୁଛି ମୋତେ। ସତ୍ୟ ଉପରେ ଯାହା ପାରୁଛି ସମାଧାନ କରି ଦେଉଛି। ଯାହାର ସମାଧାନ କରିପାରୁ ନାହିଁ ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଆସି ତାହା ପଚାରି ଜାଣି ନେଉଛି ସେ ସବୁ କଥାର ଅନ୍ତର୍ନିହିତ ଅର୍ଥ। ଲୋକମାନଙ୍କ ସାଙ୍ଗରେ କଥା କହି ଫେରି ଆସିଲେ ଶ୍ରୀଶ୍ରୀ ଠାକୁର ନିଜ ଠାରୁ ମୋତେ ପଚାରନ୍ତି କିଏ କଣ କହିଲେ ଏବଂ ମୁଁ ବା ତାର କି ଉତ୍ତର ଦେଲି। ମୋ ଉତ୍ତରରେ ଭୁଲ ଥିଲେ ଠାକୁର ସ୍ନେହ ପ୍ରୀତି ସହକାରେ ତାହାର ସଂଶୋଧନ କରି ଦେଉଥିଲେ। ସାମ୍ଭାବ୍ୟ କ୍ଷେତ୍ରରେ ପୁଣି ମୋତେ ପଠାଉଥିଲେ ତାଙ୍କ ପାଖକୁ ନିଜର ଭୁଲକୁ ସଂଶୋଧନ କରି ସତ୍ୟକୁ କହି ଆସିବା ପାଇଁ।

ଏହା ପରେ ପରେ ଦେଖାଗଲା ଅନେକ ଆସି ଅନେକ ପ୍ରଶ୍ନ ଠାକୁରଙ୍କୁ ପଚାରୁଛନ୍ତି। ଠାକୁର ମୋତେ ଡାକି ତାଙ୍କର ସେହି ପ୍ରଶ୍ନର ଉତ୍ତର ଦେବାକୁ କହିଲେ ବା ସମାଧାନ କରିବାକୁ କହିଲେ। ସାଙ୍ଗେ ସାଙ୍ଗେ କହୁଥିଲେ ତାଙ୍କ ସମ୍ମୁଖରୁ ବାହାରି ଉପସ୍ଥିତ ଲୋକମାନଙ୍କୁ ନେଇଯାଇ ସବୁକିଛି ବୁଝାଇ ଦେବା ପାଇଁ। ମୋର ବୁଝିଥିବା ଜ୍ଞାନବୁଦ୍ଧି ଦ୍ୱାରା ଯେତେଦୂର ସମ୍ଭବ ସେହି ସବୁ ଲୋକଙ୍କ ପ୍ରଶ୍ନର ଉତ୍ତର ଦେଉଥିଲି। ତା'ପରେ ପୁଣି ସେମାନେ ଠାକୁରଙ୍କ ପାଖକୁ ଆସି ପ୍ରଣାମ କରି ହୃଷ୍ଟ ମନରେ କହୁଥିଲେ– ଠାକୁର! ଆମର ପ୍ରଶ୍ନର ସମାଧାନ ହୋଇଗଲା। ମୁଁ ଯେତେବେଳେ ସେହିମାନଙ୍କ ସଙ୍ଗରେ କଥା କହୁଥିଲି ସେତେବେଳେ ମନେ ହେଉଥିଲା ଠାକୁର ଯେପରି ମୋ ଭିତରେ ରହି ସେମାନଙ୍କ ପ୍ରଶ୍ନର ଉତ୍ତର ଦେଉଛନ୍ତି। କାହିଁକିନା ସେମାନଙ୍କର ପଚାରିଥିବା ବହୁତ କଥା ଯାହାକି ମୁଁ ଜୀବନରେ କେବେ ଶୁଣି ନାହିଁ ବା ଜାଣିନାହିଁ, ସମାଧାନ କରିବାତ ଦୂରର କଥା। କିପରି ସେଗୁଡ଼ିକ ଜଳବତ୍ ତାଙ୍କୁ ବୁଝାଇ ଦେଉଥିଲି ଏବଂ ସେମାନେ ମଧ୍ୟ ବୁଝି ଯାଉଥିଲେ।

ଏହି ଅଭିନବ ଦର୍ଶନ ମୋ ପାଖରେ ଅଭିନବ ହୋଇ ଉଠିଲା। ମୁଁ ଦେଖିଲି ଠାକୁର ଏକମାତ୍ର ଦେହରେ ସେହି ଯେ ଗୋଟିଏ ଯାଗାରେ ବସି ରହିଛନ୍ତି ତାହା ନୁହେଁ, ସେ ସର୍ବଦା ସର୍ବସ୍ଥାନରେ ବ୍ୟାପ୍ତ। ସେମାନେ ଚାଲିଯିବା ପରେ ଠାକୁର ମୋତେ ପଚାରି ତାଙ୍କର ପ୍ରଶ୍ନ ଏବଂ ମୋର ଉତ୍ତର ଶୁଣି ପ୍ରାୟ ସବୁ ଦିନ କୁହନ୍ତି– ସେମାନଙ୍କୁ ଯାହା କହିଲ ତାହା ଯଦି ତୁମେ ନିଜେ ସତ୍ୟ ବୋଲି ବୁଝିଥାଅ ସେପରି ଚରିତ୍ର ଗଠନ ନିଜେ କର। ମନରେ ବହୁତ ସତ୍ୟ ଭାସି ଆସେ ପୁଣି ମେଘପରି ଭାସିଯାଏ। କିନ୍ତୁ ସେହି ସତ୍ୟକୁ ଧରି ରଖିବାକୁ ହୁଏ ନିଜର ଆଚରଣ ଦ୍ୱାରା ଚରିତ୍ର ମାଧ୍ୟମରେ। ତାହାହେଲେ ହିଁ ପରମପିତାର ଆଶୀର୍ବାଦ ଲାଭର ଅଧିକାରୀ ହୋଇ ଉଠିବ। ନ ହେଲେ ଯେତେ ଭଲ କଥା ।ଜାଣନା କାହିଁକି, କହି ପାରନା କାହିଁକି ସେଗୁଡ଼ିକ କିଛିମାତ୍ର ତୁମ ଜୀବନକୁ ଉର୍ଦ୍ଧ୍ୱ ଆଡ଼କୁ ଯିବାରେ ସାହାଯ୍ୟ କରିବ ନାହିଁ। ମୁଁ ଗୋଟିଏ ବଣୁଆ ଲୋକ। ମୋତେ ଧରି ଆଣି ଠାକୁର ଶିବ ଗଢ଼ିବାକୁ ଆରମ୍ଭ କଲେ। କିନ୍ତୁ କେତିକି ଶୁଣୁଛି ତାଙ୍କର କଥା ? ପ୍ରବୃତ୍ତି ତାଡ଼ିତ ମନ ହିଁ ଯେ ମୋର ଗୁରୁ, ମୋର ପରିଚାଳକ, ସେହି ମନକୁ କବ୍‌ଜା କରି ଠାକୁର ଧିରେ ଧିରେ ବୃତ୍ତିମୋହଠାରୁ ଇଷ୍ଟ ଆଡ଼କୁ ମୁହଁ ଫେରେଇବାକୁ ଲାଗିଲେ ମୋର ଅଜାଣତରେ। ସେତେବେଳେ ତାହାର ଖବର ମୁଁ ପାଇଲି ନାହିଁ।

**TRUTH :**

**THAT WHICH KEEPS OUR BEING**
**FIRM AND COMPACT**
**IS TRUE TO US!**

**–SREE SREE THAKUR**

## ।। ଛଅ ।।

ଦିନେ ଦ୍ୱିପ୍ରହରରେ ଠାକୁର ବିଶ୍ରାମାନ୍ତେ ସାଢ଼େ 'ତିନିଟାବେଳେ' ମୋତେ ଡାକି ତାଙ୍କ ପାଖରେ ବସିବାକୁ କହିଲେ। ବାହାରର କବାଟ ଝରକା ମୋତେ ବନ୍ଦ କରିବାକୁ କହିଲେ। ବନ୍ଦ କରିଆସି ଠାକୁରଙ୍କ ପାଖେ ବସିବା ସଙ୍ଗେ ସଙ୍ଗେ ଠାକୁର କହି ଉଠିଲେ– ତୋତେ ଛାଡ଼ିବାକୁ ମୋର ମନ ଚାହୁଁ ନାହିଁ। ସବୁବେଳେ ଇଚ୍ଛା ହେଉଛି, ତୋତେ ପାଖରେ ରଖି ବସି ଗଳ୍ପ କରିବି। ତେଣୁ ମୁଁ କହୁଛି ପ୍ରତିଦିନ ଏହି ସମୟରେ ଏଠିକି ଆସିବୁ, ବସିବୁ। ତୁ ଆଉ ମୁଁ ଛଡ଼ା ଆଉ କେହି ରହିବେ ନାହିଁ। ମୋର ଛାତି ଭିତରେ ଆନନ୍ଦର ଲହରି ଖେଳିଗଲା। ଠାକୁର! କିଏ ତୁମେ? ମୁଁ ମୋର ଚିର ବୁଭୁକ୍ଷିତ ଅନ୍ତରରେ ଚରି ବୁଲୁଛି ସମାଜ ଭିତରେ। କେହି ମୋର ନାହିଁ। ମୋର ସେହି ଅନ୍ତରର ବ୍ୟାକୁଳତା ଶୁଣି, ମୋର ସେହି ଦୁରାବସ୍ଥା ଦେଖି ତୁମେ ନିଜେ ଆସି ଏକାନ୍ତ ପରି ମୋତେ ଡାକି ଆଣିଲ ତୁମ ପାଖକୁ। ନାମଧ୍ୟାନ, ସାଧନ ଭଜନ ଠାକୁର ପାଖରେ ରଖି କରାଇବାକୁ ଆରମ୍ଭ କଲେ। ତାହା ସଙ୍ଗେ ସଙ୍ଗେ ଫିଟାଇ ଦେଲେ ମୋର ଅନ୍ତରଟିକୁ। ତାଙ୍କ ପାଖରେ କହିଲି ମୋର ଜୀବନର ଯେତେ କିଛି ଗୋପନ କଥା। ପାପ ପୁଣ୍ୟ, ଭଲ ମନ୍ଦ କିଛିର ବିଚାର ରହିଲା ନାହିଁ ସେଥିରେ। ଶ୍ରୀଶ୍ରୀ ଠାକୁର ମଧ୍ୟ କହିଲେ ତାଙ୍କ ଜୀବନର ବହୁ କିଛି ଇତିହାସ ଯାହାକି ଅଭିନବ କରି ତୋଳିଲା ମୋର ଜୀବନକୁ। ଦିନେ ଠାକୁର କହିଲେ– ତୁ ମୋର ବନ୍ଧୁ ବୋଲି ମନେ ରଖିବୁ। ସମସ୍ତେ ମୋତେ ଠାକୁର ସଜାଇ artificial life lead (ନକଲ ସଂପର୍କ ସ୍ଥାପନ) କରୁଛନ୍ତି। ମନର କଥା କେହି ମୋତେ ଫିଟାଇ କୁହନ୍ତି ନାହିଁ। ବାଛି ବାଛି ବଡ଼ କଥା, ଭଲ ଭଲ କଥା ଏସବୁ ପଚାରନ୍ତି ଯାହା ସାଙ୍ଗରେ ତାଙ୍କ ଅନ୍ତରର କୌଣସି ଯୋଗ ନାହିଁ। ଆଉ ଯେଉଁମାନଙ୍କ ସାଙ୍ଗରେ ଟିକିଏ ଅନ୍ତରଙ୍ଗତାର ସୃଷ୍ଟି ହୁଏ ସେମାନେ ସବୁବେଳେ ଅର୍ଥ, ସମ୍ପଦ–ମାନ, ଯଶ ପାଇବା ପାଇଁ ମୋତେ ବ୍ୟତିବ୍ୟସ୍ତ କରି ତୋଳନ୍ତି।

ତାଙ୍କର ସେହି ଚାହିଦାଗୁଡ଼ିକ ପରିପୂରଣ କରୁ କରୁ ମୋର ଦିନ ବିତିଯାଉଛି। କିନ୍ତୁ ଯାହା ପାଇଁ ମୁଁ ଆସିଛି ତାହା କରିବି ଯେଉଁ ଲୋକମାନଙ୍କ ମାଧ୍ୟମରେ ସେହି ଲୋକମାନେ ଆସି ନାହାନ୍ତି। ତଥାପି ପରମ ପିତାର ଦୟାରେ ଯେଉଁମାନେ

ଆସିଛନ୍ତି— ମୁଁ ବସି ନାହିଁ, ତାଙ୍କରି ଦ୍ୱାରା ପରମ ପିତାର କର୍ମ କରି ଚାଲିଛି। ମୋତେ କେହି ଭଲ ପାଆନ୍ତି ନାହିଁ। ଯେଉଁମାନେ ମୋତେ ଭଲ ପାଉଛନ୍ତି ବୋଲି ଦେଖୁଛୁ, ସେମାନେ ମୋତେ ତାଙ୍କର ଚାହିଦାଗୁଡ଼ିକ ପରିପୂରଣ ହେବାର ଯନ୍ତ୍ର ସ୍ୱରୂପ ଭାବି ମୋ ପଛେ ପଛେ ବୁଲୁଛନ୍ତି, ଆଉ ମୋତେ ଭଗବାନ, ଅବତାର ଇତ୍ୟାଦି ଯାହାକିଛି କହୁଛନ୍ତି, ସେଗୁଡ଼ିକ ମଧ୍ୟ ତାଙ୍କର ସ୍ୱାର୍ଥ ପୂରଣ କରିବା ପାଇଁ। ମୋତେ ସେମାନେ ଯେତେ ବଡ଼ କରି ଉଠାଇ ପାରିବେ ତାଙ୍କର ସ୍ୱାର୍ଥ ମଧ୍ୟ ସେତେ ପରିମାଣରେ ରକ୍ଷିତ ହେବ। କିନ୍ତୁ ତୁମକୁ ମୁଁ କହୁଛି— ପରମପୁରୁଷ ଯେ, ସେ ବହୁ ବଲ୍ଲଭା। ସେ ସମସ୍ତଙ୍କୁ ଚାହାନ୍ତି। କେହି ତାଙ୍କୁ କହି ବଡ଼ କରିବ ସେ ତାହାର ସପକ୍ଷରେ ନଥା'ନ୍ତି। ସେ ଧନ୍ଦା ମଧ୍ୟ ତାଙ୍କ ମୁଣ୍ଡରେ ନାହିଁ। ତାଙ୍କୁ ଧରି ଯେ ଯେତେ ପରିମାଣରେ ଅନୁସରଣ କରି ପାରିବ ସେ ସେତେ ଆଗେଇଯିବ, ବ୍ରହ୍ମବିଦ୍ ହୋଇ ଉଠିବ। ଏହା ଭିତରେ ମତଲବ କରି କ୍ଷୁଦ୍ର ସ୍ୱାର୍ଥ ପରିପୂରଣ କରିବା ପାଇଁ ଯାହା କିଛି କରନା କାହିଁକି, ଯାହା କିଛି କହନା କାହିଁକି, ପାଇପାରିବ ବହୁ ପାର୍ଥିବ ବସ୍ତୁ କିନ୍ତୁ ପାଇବ ନାହିଁ ସେହି ଅମୂଲ୍ୟ ଧନ, ଯାହା ମାଧ୍ୟମରେ ଏ ମାୟାଜାଲ କଟାଇ ସବୁକିଛି ଅସୁନ୍ଦର ଭିତରେ ସୁନ୍ଦରକୁ ଦେଖି ନିଜେ ସୁନ୍ଦର ହୋଇ ଚିର ଶାନ୍ତିର ଅଧିକାରୀ ହୋଇ ପାରିବ। ଏକ କଥାରେ ଈଶ୍ୱିତ୍ୱ ଲାଭ ହେବ ନାହିଁ କୌଣସି ଚାଲାକି ମାଧ୍ୟମରେ। ସେଥିପାଇଁ ତୁମକୁ କହୁଛି— ମୋର ଏଠି ଯେଉଁଠି ଯାହାକିଛି ଦେଖନା କାହିଁକି କାହାରି ଦ୍ୱାରା ଆକର୍ଷିତ ହେବ ନାହିଁ। ମନ ଭିତରେ ଯେତେବେଳେ ଯାହା କିଛି ଆସିବ ସାଙ୍ଗେ ସାଙ୍ଗେ ତାକୁ ଭିତରେ ସ୍ଥାନ ନ ଦେଇ ମୋତେ ଆସି ପଚାରିବ।

ଠାକୁରଙ୍କର ଏହି କଥାଗୁଡ଼ିକ ମୋର ଜୀବନରେ ଦିଗନ୍ତହୀନ ସମୁଦ୍ରରେ ଭାସୁଥିବା ଦିଗନିର୍ଣ୍ଣୟ କଣ୍ଟା ବା କମ୍ପାସ ପରି ହୋଇ ପ୍ରତିଭାତ ହେଲା। ବହୁ ଭାବରେ ଲୋକ ଈଶ୍ୱରଙ୍କର ସାଧନା କରନ୍ତି। ମଧୁରଭାବ, ଦାସ୍ୟଭାବ, ପିତୃଭାବ, ଭ୍ରାତୃଭାବ ଇତ୍ୟାଦି। କିନ୍ତୁ ଠାକୁର ମୋ ସାଙ୍ଗରେ ଯେଉଁ ସମ୍ପର୍କ ସ୍ଥାପନ କରିଦେଲେ ତାହା ସଖ୍ୟ ବା ବନ୍ଧୁଭାବ। ମନୁଷ୍ୟ ହିସାବରେ ଠାକୁଙ୍କର ବୟସ ତଫାତ୍ ମୋଠାରୁ ବହୁତ। ତାଙ୍କର ପୁତ୍ରଠାରୁ ମଧ୍ୟ ମୁଁ ବୟସରେ ଛୋଟ; କିନ୍ତୁ ଠାକୁର ଯେଉଁ ସମ୍ପର୍କ ଯେଉଁ ସ୍ଥାନରୁ ସ୍ଥାପିତ କଲେ ତାହା ଏଇ ମନୁଷ୍ୟ ସମ୍ପର୍କ ନୁହେଁ, ଏ ସଂପର୍କ ଚିରନ୍ତନ ଶାଶ୍ୱତ। ବୟସର ସ୍ଥାନ

ଏଠାରେ ନାହିଁ, ଜାତି ନାହିଁ, ସମାଜ ନାହିଁ। ମନେ ପଡ଼ିଲା ଦାର୍ଶନିକ ବିଶ୍ୱକବିଙ୍କର ସେହି କଥା—

'ସାମାଜ ସଂସାର ମିଛେ ସବ୍,
ମିଛେ ଏ ଜୀବନେର କଲରବ୍।'

ସମାଜ, ସଂସାର ସବୁ ମିଛ, ଆଉ ମିଛ ଏ ପାର୍ଥିବ ଜୀବନରେ ସଂପଦ ଲାଭ ପାଇଁ ଆମେ ଯାହାକିଛି କଲରବ କରି ଚାଲିଛୁ।

ଏହି ଭାବରେ ତିନିମାସ ବିତିଗଲା। ପ୍ରତିଦିନ ସାଢ଼େ ତିନିଟାଠାରୁ ରାତି ସାଢ଼େ ନଅଟା ପର୍ଯ୍ୟନ୍ତ ବନ୍ଦ ଘରେ ଠାକୁର ମୋତେ ନେଇ ବସନ୍ତି। ''ଦୁଜନେ ମୁଖୁମୁଖୀ, ଗଭୀର ସୁଖେ ସୁଖୀ।''

ମୋର ପ୍ରଶ୍ନ କିଛି ନାହିଁ। ଅର୍ଥହୀନ ବହୁ କଥା ବ୍ୟକ୍ତ କରେ ମୋର ମନର ମଣିଷ ଆଗରେ। ଜନ୍ମ ହେବା ଦିନଠାରୁ ଯାହା କିଛି ମୋର ଜୀବନର ଘଟଣା। ଯେତେଦୂର ଯାଏ ମନେ ପଡ଼େ ସବୁ କହିଯାଏ ଠାକୁରଙ୍କ ଆଗରେ। ଠାକୁର ଆଗ୍ରହ ସହକାରେ ଶୁଣନ୍ତି ସବୁ କଥା। ମଝିରେ ମଝିରେ ସେହି ସବୁ କଥାର ପଛ ଧରି ପଚାରନ୍ତି ଆଉ ଅନେକ କଥା ଯାହାକି ମୋର ଅନ୍ତରରେ ସୁପ୍ତ ହୋଇ ରହିଥିଲା, ଭୁଲି ଯାଇଥିଲି। ସେଗୁଡ଼ିକ ମଧ୍ୟ ବାହାର କରି ଆଣୁଥାନ୍ତି ଏବଂ ଶ୍ରୀଶ୍ରୀ ଠାକୁର ତାଙ୍କର ଜୀବନ—ଇତିହାସର ବହୁତ କଥା ବ୍ୟକ୍ତ କରୁଥାନ୍ତି ନିଜ ମୁହଁରେ ମୋ ପାଖରେ। କେତେବେଳେ ବା ପ୍ରୟୋଜନ ହେଲେ ବାହାରୁ କାହାକୁ ଡାକି ଆଣି ତାଙ୍କ ଜୀବନର କୌଣସି ଗୋପନ କାହାଣୀ ମୋତେ କହିବା ପାଇଁ ଆଦେଶ କରନ୍ତି ଏବଂ ତାଙ୍କ କଥା ସରିବା ପରେ ପୁଣି ତାଙ୍କୁ ବାହାରକୁ ଯିବା ପାଇଁ କୁହନ୍ତି। ଚାଲେ ଆମ୍ଭର ନିଭୃତ ଆଲୋଚନା।

ଠାକୁର ତାଙ୍କର ନିଜର ବାଲ୍ୟଜୀବନ, ପାଠ୍ୟଜୀବନ, କଲିକତାରେ ରହିଥିବା ସମୟରେ ବିଭିନ୍ନ ଘଟଣା, ବିବାହ, ଦାମ୍ପତ୍ୟ ଜୀବନ ଏବଂ ସନ୍ତାନମାନଙ୍କର ଜନ୍ମ କାହାଣୀ ସବୁ କଥା ନିଜ ମୁହଁରେ କହିଲେ। ମୁଁ କହିଲି ଠାକୁର! ଏ ସବୁ ମୋର ଜାଣି ଲାଭ କ'ଣ? ମୋର ମନରେ ଏ ସବୁ ପ୍ରଶ୍ନ କେବେ ଆସି ନାହିଁ। ମୁଁ ଆସିଛି ଆପଣଙ୍କ ପାଖରେ ସାଧନା କରିବାପାଇଁ, ମୋତେ ଦୟା କରି ସେହି ପଥ ଦେଖାଉଛନ୍ତି, ସେଥିପାଇଁ ମୁଁ ଧନ୍ୟ।

ଶ୍ରୀଶ୍ରୀ ଠାକୁର କହିଲେ ସବୁ କିଛି ଜାଣି ରଖ। ଏହା ଜାଣି ରଖିବା ଭଲ। ନ ହେଲେ ପରବର୍ତ୍ତୀ ଜୀବନରେ ମନୁଷ୍ୟ ବହୁତ କିଛି ଅସତ୍ୟ ପ୍ରଚାର କରିବେ ଯାହାକି ତୁମ ମନର ବିଶ୍ୱାସର ମୂଳରେ ଆଘାତ କରିପାରେ। ଜାଣିବା, ଚିହ୍ନିବା, ବୁଝିବା ଯଦି ଖାଣ୍ଟି ଥାଏ ତାହାହେଲେ ସମସ୍ତ ପୃଥିବୀ ମିଶି, ଯେ ଯାହା କିଛି କହୁନା କାହିଁକି, ତୁମକୁ କେହି ସ୍ଥାନଚ୍ୟୁତ କରି ପାରିବେ ନାହିଁ। ଶ୍ରୀଶ୍ରୀ ଠାକୁରଙ୍କ ସାଙ୍ଗରେ ଶ୍ରୀଶ୍ରୀ ବଡ଼ମା'ଙ୍କର ବିବାହ କଥା କହି ଠାକୁର ମୋତେ କହିଲେ– ତୋର ବଡ଼ ମା' ଲକ୍ଷ୍ମୀ ମା। ମୋତେ ଲୋକେ ଠାକୁର କୁହନ୍ତୁ, ଯାହା କୁହନ୍ତୁ, ତା'ର ବହୁ କିଛି ସମ୍ଭବ ହୋଇ ପାରିଛି ମହାଲକ୍ଷ୍ମୀ ତୋର ବଡ଼ ମା' ମୋ ପାଖରେ ରହିବାରୁ। ଏହାରି ସାଥେ ସାଥେ ଠାକୁର କହିଲେ ବିବାହ ପରେ ପରେ ବଡ଼ ମା' ଏହି ବିରାଟ ସଂସାର ମଝିରେ ଆସି କିଭଳି ଆଶ୍ରମର ସଂପୂର୍ଣ୍ଣ ଦାୟିତ୍ୱ ମୁଣ୍ଡରେ ଉଠାଇ ନେଲେ।

ଶ୍ରୀଶ୍ରୀ ଠାକୁରଙ୍କର ମା' ଜନନୀ ମନମୋହିନୀ ଦେବୀ ବଞ୍ଚି ରହିଥାନ୍ତି। ବାବା ଶିବଚନ୍ଦ୍ର ଚକ୍ରବର୍ତ୍ତୀ, ଜନନୀ ମନମୋହିନୀ ଦେବୀଙ୍କର ମାତା ମଧ୍ୟ ଜୀବିତ। ମୁଣ୍ଡ ଉପରେ ଏତେ ଅଭିଭାବକ। ସେମାନେ ଖାଲି ଅଭିଭାବକ ନୁହଁନ୍ତି, ବ୍ୟକ୍ତିତ୍ୱ ସଂପନ୍ନ, ବହୁ ଲୋକର ପୂଜ୍ୟ ଓ ପୂଜନୀୟ। ତାଙ୍କରି ଭିତରେ ଏହି କ୍ଷୁଦ୍ର ବାଳିକା ବଧୂ କିପରି ଚରିତ୍ର ବଳ ଓ ମାନସିକ ବଳ, ସଂଯମ ଦ୍ୱାରା ଧୀରେ ଧୀରେ ସମସ୍ତଙ୍କ ପାଖରେ ଅଚ୍ଛେଦ୍ୟ ହୋଇ ଉଠିଲେ, ସେସବୁ କାହାଣୀ ଯେତେବେଳେ ଶ୍ରୀଶ୍ରୀ ଠାକୁର ମୋ ଆଗରେ ବ୍ୟକ୍ତ କଲେ, ମୁଁ ଦେଖିଲି ଠାକୁର ଯାହା କଥା କହୁଛନ୍ତି ସେ ଜଣକ କେବଳ ତାଙ୍କର ସ୍ତ୍ରୀ ନୁହଁନ୍ତି, ସେ ଜଣେ ବିଶ୍ୱଜନନୀ, ମହାଲକ୍ଷ୍ମୀ। ସେ ମହାଲକ୍ଷ୍ମୀର ଚରିତ୍ର ବର୍ଣ୍ଣନା ତାଙ୍କରି ସ୍ରଷ୍ଟା ପାଖରୁ ଯେତେବେଳେ ଶୁଣିଲି ମୁଗ୍ଧ ହୋଇଗଲି। ବଡ଼ ମା'ଙ୍କ ଆଡ଼କୁ ମୋ ଆଖି ପୂର୍ବରୁ କେବେ ପଡ଼ି ନଥିଲା, ଏବେ ମୋ ଆଖି ପଡ଼ିଲା ତାଙ୍କ ଉପରେ। କି ସଂଯମିତ ଅହିଂସ ଜୀବନ।

ମୁଁ ଶ୍ରୀଶ୍ରୀ ବଡ଼ମା'ଙ୍କ କଥା ଏଠାରେ ଲେଖିବାକୁ ବସିନାହିଁ। କିନ୍ତୁ ପରମପୁରୁଷ ଶ୍ରୀଶ୍ରୀ ଠାକୁରଙ୍କ ମୁହଁରୁ ଯାହା କିଛି ଶୁଣିଲି, ଅନ୍ଧ ମୁଁ, ପରମାପ୍ରକୃତି ଉପରେ ଶ୍ରଦ୍ଧା ଓ ଭକ୍ତିରେ ମୁଣ୍ଡ ଅବନତ ହେଲା। ଠାକୁରଙ୍କର ବହୁ ଭକ୍ତ ବହୁ ଭାବରେ ଠାକୁରଙ୍କୁ ଚାହିଁଛନ୍ତି, ସ୍ତ୍ରୀ ପୁରୁଷ ନିର୍ବିବାଦରେ। ମଧୁରଭାବ

ବା ସ୍ୱାମୀ ହିସାବରେ ମଧ୍ୟ ଅନେକେ ଠାକୁରଙ୍କୁ ଚାହିଁଛନ୍ତି। ଏହା ଭିତରେ ସ୍ତ୍ରୀ, ପୁରୁଷ ସବୁ ପ୍ରକାରର ଲୋକ ଅଛନ୍ତି। ମୋର ମନେ ପଡ଼େ, ଦିନେ ଜଣେ ଆମେରିକାନ ସାହେବ 'ତାଙ୍କ ନାମ ମି: ଡନ୍ (ପୂରା ନାମ ମନେ ନାହିଁ) ତାଙ୍କୁ ମୁଁ ପଚାରିଥିଲି— ତୁମେ ଠାକୁରଙ୍କ ପାଖେ ପାଖେ ଆସି ରହିଛ। ତୁମର ପୂର୍ବଜୀବନର ଖାଇବା, ବୁଲିବା, ଚାଲିବା, ଶୋଇବା ଇତ୍ୟାଦି ସବୁ କିଛିକୁ ବିସର୍ଜନ ଦେଇ ଏହି ଭାରତୀୟ ଅତି ସାଧାରଣ ପ୍ରଥାରେ ଖାଲି ଡାଲି, ଭାତ, ଯାହାକି ଆନନ୍ଦବଜାରର ପ୍ରତିଦିନର ପ୍ରସାଦ, ତାହାକୁ ଖାଇ ଏବଂ ଆଶ୍ରମର ଅତି ସାଧାରଣ ଜୀବନଯାପନ କରି କ'ଣ ପାଇଁ ରହିଛ? ସେ ଉତ୍ତର ଦେଲେ— ମୋର ଠାକୁରଙ୍କୁ ଭଲ ଲାଗେ। I love him. ପୁଣି ମୁଁ ତାଙ୍କୁ ପ୍ରଶ୍ନ କଲି— ଠାକୁରଙ୍କୁ ତୁମର କିପରି ଭଲ ଲାଗେ— As a father, as a brother or as a friend? ବାପା ପରି କିମ୍ବା ବନ୍ଧୁ ପରି?

ଡନ୍ ସାହେବ କହି ଉଠିଲେ— No, no. I love him as my husband. ନା, ନା, ମୁଁ ତାଙ୍କୁ ଭଲ ପାଏ ମୋର ସ୍ୱାମୀ ବୋଲି। ମୁଁ ଚମକି ଉଠିଲି। ଏହି ପୁରୁଷ ସାହେବ କ'ଣ କହୁଛନ୍ତି? ଜଣେ ପୁରୁଷ ଆଉ ଜଣେ ପୁରୁଷଙ୍କୁ କିପରି ସ୍ୱାମୀ ବୋଲି ଭାବି ପାରେ? ଡନ୍‌ଙ୍କୁ ସେ କଥା ପଚାରିଲି। ଡନ୍ ସାହେବ କହିଲେ— ମୁଁ ମଧ୍ୟ ତୁମ କଥା ବୁଝି ପାରୁଛି। ପୂର୍ବେ ହେଲେ ମୁଁ ମଧ୍ୟ ଏହାକୁ ଅସମ୍ଭବ ବୋଲି ମନେ କରିଥାନ୍ତି। କିନ୍ତୁ ଠାକୁରଙ୍କ ପାଖକୁ ଆସିବାପରେ ଏହି ସତ୍ୟ ମୋ ପାଖରେ ଆବିଷ୍କୃତ ହେଲା। ଆଜିକାଲି ଠାକୁରଙ୍କ ପାଖକୁ ଗଲେ ମୋର ଯେପରି ମନେ ପଡ଼େ ଠାକୁର ମୋର ସ୍ୱାମୀ। ମୋର ସମସ୍ତ ଦେହ ଭିତରେ ଯେପରି ଗୋଟିଏ ଶିହରଣ ଖେଳିଯାଏ, ମୁଁ ଉପଲବ୍ଧି କରେ ଜୀବନର ଚରମ ଆନନ୍ଦ। ଏହା undescribable। ତୁମକୁ ଠିକ୍ ବ୍ୟକ୍ତ କରି ବୁଝାଇ ପାରିବି ନାହିଁ। ଆହୁରି ବହୁତ କଥା ହେଲା ସାହେବ ଡନ୍‌ଙ୍କ ସାଙ୍ଗରେ। କିନ୍ତୁ ନୂଆ କରି ଦେଖିଲି ଶ୍ରୀଶ୍ରୀ ଠାକୁରଙ୍କୁ। ଠାକୁରଙ୍କୁ ମୋର ମଧ୍ୟ ଖୁବ୍ ଭଲ ଲାଗେ। ପୃଥିବୀର ସବୁ କିଛି ଛାଡ଼ି ତାଙ୍କ ପାଖରେ ରହିଲେ ମନେହୁଏ ଆଉ କିଛି ଦରକାର ନାହିଁ। ଠିକ୍ ସେହିପରି ପୃଥିବୀର ପ୍ରତିଟି ମନୁଷ୍ୟ ଠାକୁରଙ୍କୁ, ସେ ପୁରୁଷ ହେଉ ବା ସ୍ତ୍ରୀ ହେଉ, କେତେ ପ୍ରକାରରେ ଭଲ ପାଆନ୍ତି ତାର ସୀମା ନାହିଁ। ଅସୀମଙ୍କୁ ଆବଦ୍ଧ

କରିବାକୁ ଚାହାଁନ୍ତି ସ୍ୱାମୀ ମଧ୍ୟରେ, ଯେ ଯାହାର ବିଭିନ୍ନ ଭାବଦ୍ୱାରା। ମହାଭାବୀ ସେ, ସମସ୍ତଙ୍କର ଭାବକୁ ହିଁ ପରିପୂରଣ କରନ୍ତି। କିନ୍ତୁ ଏହା ଭିତରେ ଏହି ପାର୍ଥିବ ଦେହର କିଛି ମୂଲ୍ୟ ନାହିଁ। ସେ ଏକ ମହା ଅପାର୍ଥିବ ଧନ। ଏହା କ'ଣ ରାଧା କୃଷ୍ଣଙ୍କର ମଧୁର ଭାବ! ଚିର ଚୈତନ୍ୟ ପୁରୁଷ କୃଷ୍ଣ, ତାଙ୍କର ହ୍ଲାଦିନୀ ଶକ୍ତି ରାଧା, ଏହା ଦେହ ଧାରଣର କୌଣସି ସାପେକ୍ଷ ରଖେ ନାହିଁ। କିନ୍ତୁ ଉପଲବ୍ଧି କରିବାକୁ ହେଲେ, demonstration ଦେଖାଇବାକୁ ହେଲେ ଦେହ ଧାରଣ କରି ଲୋକ ସମକ୍ଷେ ଉପସ୍ଥିତ କରାଇବା ଛଡ଼ା ଆଉ ଗତି ନାହିଁ। ବହୁ ପୁରୁଷ ଯେପରି ଠାକୁରଙ୍କୁ ଏହି ଭାବରେ ଭଲ ପାଇ ସାଧନା କରୁଥିଲେ ସେହିପରି ବହୁ ପ୍ରକୃତି ବା ନାରୀ ମଧ୍ୟ ଶ୍ରୀଶ୍ରୀ ଠାକୁରଙ୍କୁ ମଧୁର ଭାବରେ ଚାହିଁଥିଲେ ଏବଂ ପ୍ରକୃତିର ସହଜାତ ଧର୍ମ ହିସାବରେ ସେମାନେ ଠାକୁରଙ୍କୁ ସ୍ୱାମୀ ରୂପରେ ବରଣ କରିଥିଲେ। ଶ୍ରୀଶ୍ରୀ ଠାକୁର କିନ୍ତୁ କାହାରି ସଙ୍ଗେ ସ୍ୱାମୀ–ସ୍ତ୍ରୀର ସ୍ଥୂଳ ସଂପର୍କ ସ୍ଥାପନ କରି ନଥିଲେ, ଅଥଚ ସମସ୍ତଙ୍କ ଅନ୍ତରକୁ ପରିପୂରଣ କରୁଥିଲେ।

ଶ୍ରୀଶ୍ରୀ ଠାକୁରଙ୍କ ମୁହଁରୁ ଜାଣିଲି କିପରି ଠାକୁରଙ୍କ ଜୀବନରେ ବହୁ ଦିଗରୁ ଆକ୍ରମଣ ଆସିଲା ଏବଂ ତାହାରି ମାଧ୍ୟମରେ ଠାକୁର ସମସ୍ତଙ୍କୁ ନେଇ ଚାଲିଛନ୍ତି ସେହି ମୁକ୍ତି ଆଡ଼କୁ। ଶ୍ରୀଶ୍ରୀ ଠାକୁର ତାଙ୍କର ତିନୋଟି ପୁତ୍ର, ତିନୋଟି କନ୍ୟା ଏବଂ ଆଉ ଗୋଟିଏ ମୃତ ପୁତ୍ରର ଜନ୍ମ ଇତିହାସ କହିଲେ। ସେହି ଘର ଭିତରେ ଶ୍ରୀଶ୍ରୀ ଠାକୁର ଦିନେ କହିଲେ କିପରି ବଡ଼ଦା'ଙ୍କର ଜନ୍ମ ହେଲା। ଠାକୁର ସବୁବେଳେ ଶିଷ୍ୟ ତଥା ଭକ୍ତମଣ୍ଡଳୀ ନେଇ ବ୍ୟାପୃତ୍ତ ରହିଛନ୍ତି। ବଡ଼ମା' ଗୃହ ସଂସାର ସବୁକିଛି ନେଇ ଦିନରାତି ମାତି ରହିଛନ୍ତି। କିନ୍ତୁ ବିଶ୍ୱ ପ୍ରସବିନୀ ମାତା, ସେ ଚାହୁଁଛନ୍ତି ପ୍ରକୃତିର ନିୟମକୁ ରକ୍ଷା କରିବା ପାଇଁ ସନ୍ତାନ, ବିଶେଷ କରି ପୁତ୍ର ସନ୍ତାନ। କେତେ କେତେବେଳେ ଠାକୁରଙ୍କ ସହିତ ଦିନ ଭିତରେ ବଡ଼ମା'ଙ୍କ ସଙ୍ଗରେ ଦୃଷ୍ଟି ବିନିମୟ ହେଲେ କଥାବାର୍ତ୍ତା କରିବାର ସୁଯୋଗ ନାହିଁ। ଠାକୁର ସବୁବେଳେ ତାଙ୍କର କୃଷ୍ଟି ସନ୍ତାନ ଏବଂ ଗୁରୁଜନମାନଙ୍କ ଦ୍ୱାରା ପରିବେଷ୍ଟିତ।

ରାତିରେ ଘରକୁ ଶୋଇବାକୁ ଆସନ୍ତି। କିନ୍ତୁ ଘରେ ରହନ୍ତି କେତେ ଦିନ? ବଡ଼ମା'ଙ୍କୁ ଆଦର କରି ସ୍ନେହର ସୋହାଗ ଜଣାଇ ନିଦ୍ରାକୋଳରେ ରଖି ଚାହାଁରି ଯାଆନ୍ତି ବିଶ୍ୱର ଡାକରେ। ରାତିରେ ଭକ୍ତ ମଣ୍ଡଳୀଙ୍କୁ ନେଇ

ନିଶା ଅତିବାହିତ କରନ୍ତି ନାମ ଧ୍ୟାନ ଓ ସାଧନା ମାଧ୍ୟମରେ। ନିଦ୍ରାଭଙ୍ଗ ପରେ ବଡ଼ମା' ଦେଖନ୍ତି ତାଙ୍କ ପାଖରେ ନାହାନ୍ତି ତାଙ୍କର ପତି– ଯେକି ବିଶ୍ୱପତି। ଆଦ୍ୟାଶକ୍ତି ମାତା ବିଛଣାରୁ ଉଠିଆସି ଲାଗିପଡ଼ନ୍ତି ତାଙ୍କ ଚିରାଚରିତ ଗୃହକର୍ମରେ। ଏହିପରି ଅବସ୍ଥାରେ ଦିନେ ଠାକୁରଙ୍କୁ ସେ କହିଲେ– ମୋତେ ଗୋଟିଏ ପୁତ୍ର ଦିଅ। ମୁଁ ମା' ହେବାକୁ ଚାହେଁ। ଶ୍ରୀଶ୍ରୀ ଠାକୁର ଚିନ୍ତିତ ହୋଇ ପଡ଼ିଲେ। ଶକ୍ତି ସ୍ୱରୂପା ମା' ଯଦି ଚାହେଁ ତାର ସନ୍ତାନ, କି ସାଧ୍ୟ ପିତାର ତାକୁ ତାହା ନ ଦେଇ ପାରେ? ଚିନ୍ତିତ ମନରେ ଠାକୁର କହିଲେ– ମୁଁ ଏ ସମ୍ବନ୍ଧରେ କିଛି ଜାଣେ ନାହିଁ। ତୁମେ ଯାଅ ମୋର ମାଆଙ୍କୁ କହିବ। ଶ୍ରୀଶ୍ରୀ ଠାକୁର ଆଶ୍ରୟ ନେଲେ ତାଙ୍କର ମା'ଙ୍କର ଅଞ୍ଚଳ ତଳେ। ମାତା ମନମୋହିନୀ ତାଙ୍କୁ ଜନ୍ମ ଦେଇଛନ୍ତି। ଖାଲି ଜନ୍ମ ନୁହେଁ, ଠାକୁର ସ୍ୱୟଂ ଭଗବାନ ହେଲେ ମଧ୍ୟ ଏହି ପାର୍ଥିବ ଜଗତରେ ଆସି ଲୋକଙ୍କୁ ଆପଣ ଆଚରି ଧର୍ମଶିକ୍ଷା ଦେବାପାଇଁ ଯେଉଁ ଦୀକ୍ଷା ଗ୍ରହଣ କରିଛନ୍ତି, ତାହା ମଧ୍ୟ ହୋଇଛି ତାଙ୍କର ମାତାଙ୍କ ମାଧ୍ୟମରେ। ଶ୍ରୀଶ୍ରୀ ମା' ଜନନୀ ମନମୋହିନୀ ଏକାଧାରରେ ତାଙ୍କର ଗର୍ଭଧାରିଣୀ, ଅନ୍ୟ ଦିଗରେ ଧର୍ମ ଜୀବନରେ ଋତ୍ୱିକ୍ ଯାହା ମାଧ୍ୟମରେ ଆନୁଷ୍ଠାନିକ ବୀଜମନ୍ତ୍ର ଆସିଛି ତାଙ୍କ ପାଖରୁ। ଏଠାରେ ଉଲ୍ଲେଖ ଥାଉକି ଯେ ଶ୍ରୀଶ୍ରୀ ଠାକୁରଙ୍କୁ ଯେତେବେଳେ ତାଙ୍କର ମାତା ଗୁରୁ ନିର୍ଦ୍ଦେଶରେ ଦୀକ୍ଷା ଦେଲେ ଶ୍ରୀଶ୍ରୀ ଠାକୁର ସାଙ୍ଗେ ସାଙ୍ଗେ କହି ଉଠିଲେ– ମା', ନୂଆ କିଛି କହ, ନୂଆ କିଛି କହ। ଏ ନାମ ତ ମୁଁ କରି ଆସୁଛି ତୋ ଗର୍ଭରେ ରହିବା ଦିନଠାରୁ। ଠାକୁରଙ୍କ ମୁହଁରୁ ଏକଥା ଶୁଣି ଜନନୀ ମନ ମୋହିନୀଙ୍କର ମନେ ପଡ଼ିଗଲା ତାଙ୍କର ନିଜର ଗୁରୁ ସନ୍ଥ ହୁଜୁର ମହାରାଜଙ୍କର କଥା ଯେକି ୯ ବର୍ଷ ବୟସରେ ତାଙ୍କୁ ସ୍ୱପ୍ନରେ ଦୀକ୍ଷା ଦେଇଥିଲେ। ପରେ ନିଜେ ସଶରୀରରେ ଆସି ଦୀକ୍ଷା ଦେଇ କହିଥିଲେ– ମନମୋହିନୀ, ତୁମେ ସାବଧାନରେ ରହିବ ତୁମ ଗର୍ଭରେ ପରମପୁରୁଷ, ପରମସନ୍ଥ ଦୟାଲ ପୁରୁଷ ସ୍ୱୟଂ ଆସି ଜନ୍ମ ଗ୍ରହଣ କରିବେ। ଶ୍ରୀଶ୍ରୀ ଠାକୁର ଯେତେବେଳେ କହିଲେ– ମୁଁ ତୋର ଗର୍ଭରେ ରହିବା ଦିନଠାରୁ ଏ ନାମ କରି ଆସୁଛି, ମାତା ମନମୋହିନୀଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ– ଏହି ସେହି ଦୟାଲ ପୁରୁଷ ଯେକି ଦୟାକରି ଆସି ସ୍ଥାନ ନେଇଛନ୍ତି ତାଙ୍କରି ଘରେ।

ଯାହାହେଉ ଶ୍ରୀଶ୍ରୀ ଠାକୁର ବଡ଼ମା'ଙ୍କୁ କହିଲେ ମା'ଙ୍କୁ କହିବା ପାଇଁ ତାଙ୍କର ପୁତ୍ରାକାଂକ୍ଷା କଥା। ବଡ଼ମା' ସ୍ୱାମୀଙ୍କର ଏହି ଆଦେଶ ଶୁଣି ଆରକ୍ତିମ ମୁହଁରେ ତାଙ୍କ ପାଖରୁ ଚାଲିଗଲେ। କିନ୍ତୁ ଏକଥା ଜନନୀ ମନମୋହିନୀଙ୍କୁ କହି ପାରିଲେ ନାହିଁ। କିପରି ତାହା ସମ୍ଭବ? ସ୍ୱାମୀ ପାଖରେ ଯାହା କୁହାଯାଏ ଅନ୍ୟତ୍ର କ'ଣ ତାହା କହିବା ସମ୍ଭବ? ବିତିଗଲା କିଛିଦିନ। ପୁନରାୟ ଠାକୁରଙ୍କ ପାଖରେ ନିବେଦନ କଲେ ବଡ଼ମା' ତାଙ୍କ ଅନ୍ତରର କଥା। ଠାକୁରଙ୍କର ସେହି ଗୋଟିଏ ଜବାବ– ମା'ଙ୍କୁ କୁହ। ଏପରି ବାରମ୍ବାର ଏକା ଧରଣର ଜବାବ ପାଇ ଦିନେ ବାଧ୍ୟ ହୋଇ ବଡ଼ମା' ନିବେଦନ କଲେ ତାଙ୍କ ଅନ୍ତରର କଥା ଜନନୀ ମନମୋହିନୀ ତଥା ଶାଶୁଙ୍କ ଆଗରେ। ମନମୋହିନୀ ଏକଥା ଶୁଣି କହି ଉଠିଲେ– ଏକଥା ମୋ ପାଖରେ କାହିଁକି? ଯାଅ, ଅନୁକୂଳକୁ କୁହ। ବଡ଼ମା ବାଧ୍ୟ ହୋଇ ଲଜ୍ଜାରୁଣ ମୁହଁରେ ମୁଣ୍ଡନତ କରି ଜନନୀ ମନମୋହିନୀଙ୍କ ଆଗରେ ସବୁକଥା ଖୋଲି କହିଲେ।

ସେହିଦିନ ଠାକୁର ଯେତେବେଳେ ଅନ୍ଦର ମହଲରେ ଭୋଗ ପାଇଁ ଆସିଲେ, ମା' ପୁଅକୁ ଖୁଆଇବାକୁ ବସି କହିଲେ– ଅନୁକୂଳ! ତୋର ତ ବହୁତ ସନ୍ତାନ। ତାଙ୍କୁ ନେଇ ସବୁବେଳେ ତୋର ଦିନ ବିତିଯାଉଛି। ଏ କ୍ଷୁଦ୍ର ଘର ସଂସାର ତୋତେ ଅଟକାଇ ପାରୁ ନାହିଁ। କିନ୍ତୁ ବଡ଼ ବୋହୂ, ସେ କଅଣ ନେଇ ରହିବ? ତାକୁ ଗୋଟିଏ ପୁଅ ଦେ। ଶ୍ରୀଶ୍ରୀ ଠାକୁର ହଠାତ୍ ଚମକି ଉଠିଲେ ଓ କହିଲେ– ମା! ତୁ ମା' ହୋଇ ଆଜି ଏ କଣ ଆଦେଶ କରୁଛୁ? ମୁଁ ତ ତୋର ଆଦେଶ ଲଙ୍ଘନ କରି ପାରିବି ନାହିଁ। ଠାକୁର ଧିରେ ଆହାର ସାରି ଉଠିଲେ। ଶ୍ରୀଶ୍ରୀ ଠାକୁରଙ୍କର ଏହି ଜୀବନ କାହାଣୀ ଆଉ ଜଣେ ଲୋକ ଆସି ଠାକୁରଙ୍କ ସାମ୍ନାରେ ମୋତେ କହିଲେ ସେହି ନିଭୃତ କକ୍ଷରେ। ଠାକୁର ଏସବୁ କଥା ଅନୁମୋଦନ କଲେ ଏବଂ ସେହି ବୃଦ୍ଧାମା'ଙ୍କୁ ଯେକି ଏସବୁ କଥା ପୂର୍ବରୁ ଜାଣିଥିଲେ ତାଙ୍କୁ ସେଠାରୁ ଚାଲିଯିବାକୁ କହିଲେ। ମା' ବାହାରିଯିବା ପରେ ଠାକୁର କହିଲେ– ମୁଁ ଖାଇ ଉଠି ଆସିଲି, କିନ୍ତୁ ମୋର ମନ ଭିତରଟା ଖୁବ୍ ଅଶାନ୍ତ ହେଉଥାଏ। ଏହା କିପରି ସମ୍ଭବ? ମୁଁ ପଚାରିଲି– ଠାକୁର! ଏହା ଅସମ୍ଭବ କାହିଁକି? ସ୍ୱାମୀ ସ୍ତ୍ରୀ ସାଙ୍ଗରେ ଯୁକ୍ତ ହେଲେ ତାହାରି ମାଧ୍ୟମରେ ସନ୍ତାନ ହେବ। ଏହାତ

ସମସ୍ତଙ୍କ ପାଖରେ ଆନନ୍ଦର କଥା । ସ୍ୱାମୀ ସ୍ତ୍ରୀ ଦୁଇ ଜଣଙ୍କର ଆନନ୍ଦ ମାଧ୍ୟମରେ ହିଁ ଏହି ପୃଥିବୀର ଯାହା କିଛି ସୃଷ୍ଟି ହୁଏ । ଠାକୁର କହିଲେ– ତାହା ଠିକ୍, କିନ୍ତୁ ମୋର ଜୀବନଟା କିପରି ଗୋଟାଏ ଅଲଗା ପ୍ରକାରର । ମନଟାକୁ ଦେହମୁଖୀ କରିପାରୁ ନାହିଁ । ବିସ୍ତାରିତ ମନକୁ ଶଙ୍କୁଚିତ କରି ଦେହ ମୁଖୀ କରିବା ଏବଂ ଖାଲି ଦେହ ମୁଖୀ ନୁହେଁ, ସେହି ମନକୁ ଜନନେନ୍ଦ୍ରୀୟ ବା ଲିଙ୍ଗ ଆଡ଼କୁ ନେଇଯିବା ମୋ ପକ୍ଷରେ ଏକ ପ୍ରକାର ଅସମ୍ଭବ ହୋଇ ଉଠିଲା । ଏକ ଦିଗରେ ସ୍ତ୍ରୀର ସ୍ୱାଭାବିକ ଆକାଂକ୍ଷା, ତାହା ସାଙ୍ଗରେ ମାତୃ ଆଦେଶ । ଏହାକୁ ପାଳନ କରିବା ପାଇଁ ମୁଁ ବାରମ୍ବାର ଚେଷ୍ଟା କରି ବ୍ୟର୍ଥ ହୋଇ ପଡୁଛି । ମନକୁ ଦେହମୁଖୀ କରି ପାରୁ ନାହିଁ । ତୋର ବଡ଼ମା' ସାଙ୍ଗରେ ଘନ ଘନ ଦେଖା କରିବାକୁ ଆରମ୍ଭ କଲି । ଆଦିରସର ଆଳାପ ଆଲୋଚନା କରିବାକୁ ଆରମ୍ଭ କଲି । କିନ୍ତୁ କୌଣସି ପ୍ରକାରେ ମନକୁ ଟାଣି ପାରୁ ନାହିଁ ଏହି ଶରୀର ଆଡ଼କୁ । ଏହିଭଳି ୧୧ ମାସ ଚେଷ୍ଟା ପରେ ସମ୍ଭବ ହେଲା ମୋ ପକ୍ଷେ ମାତୃ ଆଦେଶ ପାଳନ କରିବା । ମୋର ଏବେବି ମନେ ପଡୁଛି ସେ କି କଷ୍ଟକର ଅବସ୍ଥା । ସହବାସ ସମୟରେ ମୋର ମନେ ହେଉଥିଲା ମୋର ଦେହର ହାଡ଼ଗୁଡ଼ିକ ଯେପରି ଭାଙ୍ଗି ଯାଉଛି । ସମସ୍ତ ଦେହଟା ସଂକୁଚିତ ହୋଇ ପଡୁଛି । ଯେପରି ଗୋଟାଏ ଛୋଟ ଗାତ ଭିତରେ ମୋର ବିରାଟ ଦେହଟିକୁ କେହି ଟାଣି ନେଇ ଆଉ ପାଖକୁ ନେଇ ଯାଉଛନ୍ତି ନିର୍ଦ୍ଦୟ ଭାବେ । ହାତଗୋଡ଼ ଭାଙ୍ଗି ମାଂସ ଚମଡ଼ା ଛିଣ୍ଡି ଯାଉଛି । ଯାହାହେଉ କାର୍ଯ୍ୟ ସମାଧାନ ହେଲା । ଏହି ଭାବରେ ବଡ଼ଖୋକା ତଥା ପ୍ରଥମ ପୁତ୍ର ଅମରେନ୍ଦ୍ର ନାଥ ଚକ୍ରବର୍ତ୍ତୀ ଆସିଲା ପୃଥିବୀକୁ ।

ମୁଁ ଏହି ଅପୂର୍ବ କଥା ଶୁଣି ବିସ୍ମୟ ହତବାକ୍ ହୋଇ ଅନାଇ ରହିଲି ବିଶ୍ୱେଶ୍ୱର ଆଡ଼କୁ । ପଚାରିଲି–ଠାକୁର । ଆପଣଙ୍କର ଏତେ କଷ୍ଟ ହେଲା କାହିଁକି ? ପୃଥିବୀର ଲୋକ ଏହି ସ୍ତ୍ରୀ ସହବାସ ଲାଗି କ'ଣ ନ କରୁଛନ୍ତି ? ଏହି ଆନନ୍ଦ ଠାରୁ ଚରମ ଆନନ୍ଦ ତାଙ୍କ ଜୀବନରେ ଆଉ କିଛି ନାହିଁ ବୋଲି ପୁରୁଷ ଛୁଟି ଚାଲିଛି ସ୍ତ୍ରୀ ପଛରେ ଏବଂ ସ୍ତ୍ରୀ ଲୋକ ଛୁଟି ଚାଲିଛି ପୁରୁଷ ପଛରେ । ଆଉ ତାହା ଆପଣଙ୍କୁ ଏତେ ଖରାପ ଲାଗିଲା ?

ଶ୍ରୀଶ୍ରୀ ଠାକୁର କହିଲେ– ପରମ ପିତାଙ୍କ ଦୟାରେ ପ୍ରତିଟି ମୁହୂର୍ତ୍ତ ମୁଁ ଉପଭୋଗ କରୁଛି କୋଟି କୋଟି ରମଣର ସୁଖ। ପ୍ରତିଟି ଲୋମକୂପ ମୋର ପ୍ରତିମୁହୂର୍ତ୍ତରେ ରମଣର ଆନନ୍ଦରେ ରୋମାଞ୍ଚିତ ହୋଇଥାଏ। ଆଗେ କେତେ କେତେବେଳେ ଭିତରେ ଏତେ ଆନନ୍ଦ ଉଚ୍ଛୁଳି ଉଠୁଥିଲା ଯେ, ଏହି ଦେହ ତାକୁ ସମ୍ଭାଳିପାରୁ ନ ଥିଲା। ଦେହର ବିଭିନ୍ନ ଲୋମକୂପର ମୂଳ ଫାଟିଯାଇ ତୀବ୍ର ଗତିରେ ରକ୍ତ ବାହାରି ଆସୁଥିଲା। ଧୀରେ ଧୀରେ ଦେହ ଏ ସବୁ ସହି ଗଲା। କିନ୍ତୁ ଆନନ୍ଦ କ୍ରମାଗତ ବଢ଼ି ଚାଲିଛି। ସେହି ଅବସ୍ଥା ଛାଡ଼ି ଆଉ ଗୋଟିଏ ଦେହ, ଗୋଟିଏ ପ୍ରକୃତି ବା ସ୍ତ୍ରୀ ଦେହର ମିଳନ ଭିତରେ କିପରି ସେହି ଆନନ୍ଦର କୋଟି କୋଟି ଭାଗରୁ ଗୋଟିଏ ଭାଗ ମଧ୍ୟ ଆସିପାରେ ?

ମୁଁ କହିଲି– ଠାକୁର! ଶୁଣିଛି ଶ୍ରୀଶ୍ରୀ ରାମକୃଷ୍ଣ ଦେବ, ଶ୍ରୀ ଚୈତନ୍ୟ ଦେବ ତାଙ୍କର ମଧ୍ୟ ଏପରି ଦେହର ଲୋମକୂପ ଦେଇ ରକ୍ତ ବାହାରି ଆସୁଥିଲା। ତାହା କ'ଣ ଏହାରି ପାଇଁ? ଶ୍ରୀଶ୍ରୀ ଠାକୁର କହିଲେ– ହଁ, ଦେହ ପ୍ରଥମ ଅବସ୍ଥାରେ ଏହାକୁ ସହିପାରେ ନାହିଁ। ତାହାରି ପାଇଁ ଏଇ ଭାବରେ ଦେହ ଫାଟି ଯାଇ ବା ବିଭିନ୍ନ ଛିଦ୍ର ଦେଇ ଧାରା ବାହାରି ଆସେ। ମୁଁ କହିଲି– ଠାକୁର! ଯୁଗେ ଯୁଗେ ଯେଉଁ ଭଗବାନ ଆସିଛନ୍ତି, ଧରନ୍ତୁ ଯେପରି ଶ୍ରୀକୃଷ୍ଣ, ତାଙ୍କର କ'ଣ ଏପରି ହେଉଥିଲା ? ସେମାନେ ମଧ୍ୟ ପୃଥିବୀର ପ୍ରକୃତିର ନିୟମ ପାଳନ କରି ତାଙ୍କର ସୃଷ୍ଟି ରଖିଯାଇଥିଲେ। ଶ୍ରୀଶ୍ରୀ ଠାକୁର କହିଲେ– ହଁ, କୃଷ୍ଣ ଠାକୁରଙ୍କୁ ମଧ୍ୟ ଏହିପରି ଅବସ୍ଥା ହୋଇଥିଲା। ତାଙ୍କର ସ୍ତ୍ରୀମାନେ ଯେତେବେଳେ ତାଙ୍କ ପାଖରୁ ସନ୍ତାନ ମାଗୁଥିଲେ (ଅବଶ୍ୟ ବହୁ ସ୍ତ୍ରୀଙ୍କ ଭିତରେ କତିପୟ ସ୍ତ୍ରୀଙ୍କର ସନ୍ତାନ ହୋଇଥିଲା) କୃଷ୍ଣ ଠାକୁର ତାଙ୍କର ସେହି କଥା ମାନି ନେଇ ଗ୍ରହଣ କରିବା ପରେ ଅନ୍ତତଃ ୬ ମାସ ଲାଗୁଥିଲା ତାଙ୍କର ମନକୁ ଦେହମୁଖୀ କରି ସ୍ତ୍ରୀସହବାସ କରି ସନ୍ତାନ ଦେବା ପାଇଁ।

ସ୍ୱୟଂ ଶ୍ରୀଶ୍ରୀ ଠାକୁରଙ୍କ ମୁହଁରୁ ଶ୍ରୀକୃଷ୍ଣଙ୍କର ସୃଷ୍ଟିର ରହସ୍ୟ ତଥା ଦାମ୍ପତ୍ୟ ଜୀବନ ସମ୍ବନ୍ଧରେ କଥା ଶୁଣି ପୁନର୍ବାର ବିସ୍ମୟରେ ଚାହିଁ ରହିଲି ତାଙ୍କ ଆଡ଼କୁ। ମନେ ମନେ କହିଲି– ହେ ପ୍ରଭୁ, ଏଇ ଥର ତ ଧରା ଦେଇଛ। ସବୁବେଳେ କହୁଛ– ପରମ ପିତା କରନ୍ତି, ପରମ ପିତା କରନ୍ତି, କିନ୍ତୁ ଆଜି ଏଇ ମୁହୂର୍ତ୍ତରେ ଯାହା କହିଲ ସେଥିରୁ କ'ଣ ପ୍ରମାଣିତ ହେଉ ନାହିଁ

ଯେ ତୁମେ ହିଁ ତ ପରମ ପିତା? ଠିକ୍ ଏହି ଭାବରେ ଏକା ପଥର ଆଶ୍ରୟ ଗ୍ରହଣ କରି ବଡ଼ମା' ମାଗିଲେ ଠାକୁରଙ୍କ ପାଖରେ ୨ୟ ପୁତ୍ର। କହିଲେ– ଏକ ପୁତ୍ର ଉପରେ ନିର୍ଭର କରାଯାଏ ନାହିଁ। କେତେବେଳେ କଅଣ ହେବ, ତେଣୁ ମୋତେ ଆହୁରି ଗୋଟିଏ ପୁତ୍ର ଦିଅ। ମାତୃ ଆଦେଶ ପାଳନ ହେଲା।

ପ୍ରଥମ ପରି ୨ୟ ଥର ମଧ୍ୟ ବଡ଼ମା' ଜନନୀ ମନମୋହିନୀଙ୍କର ଆଦେଶ ମାଧ୍ୟମରେ ପରମ ପୁରୁଷଙ୍କ ପାଖରୁ ଲାଭ କଲେ– ୨ୟ ପୁତ୍ର ଛୋଟ ଦା' ତଥା ଶ୍ରୀ ବିବେକରଞ୍ଜନ ଚକ୍ରବର୍ତ୍ତୀଙ୍କୁ। ଏହି ଛୋଟ ଦା (ବିବେକରଞ୍ଜନ ଚକ୍ରବର୍ତ୍ତୀ) ସେ ଶ୍ରୀଶ୍ରୀ ଠାକୁରଙ୍କର ନୟନର ମଣି, ଶ୍ରୀ ଶ୍ରୀ ଠାକୁର ମଧ୍ୟ ତାଙ୍କୁ ଡାକୁଥିଲେ ''ମନି, ମନି'' ବୋଲି। ସବୁବେଳେ ପାଖେ ପାଖେ ରଖୁଥିଲେ। ପାବନା ହିମାଇତପୁର ଛାଡ଼ି ଶ୍ରୀ ଶ୍ରୀ ଠାକୁର ଯେତେବେଳେ ବୈଦ୍ୟନାଥ ଦେଓଘରକୁ ଆସିଲେ ସେତେବେଳେ ବଡ଼ଦାଙ୍କୁ ଶ୍ରୀ ଶ୍ରୀ ଠାକୁର ତାଙ୍କ ଝିଅ ପିଲାଙ୍କୁ ନେଇ ରହିବା ପାଇଁ ନିର୍ଦ୍ଦିଷ୍ଟ କଲେ ଆଶ୍ରମରୁ ଅଧାମାଇଲ ଦୂରରେ 'ଗୋଲାପବାଗ' ନାମକ ବାଡ଼ିରେ। ଆଉ ଛୋଟଦା ଯାହାଙ୍କୁ ଶ୍ରୀଶ୍ରୀ ଠାକୁର ''ମନି, ମନି'' ବୋଲି ଡାକୁଥାନ୍ତି, ସେହି ନୟନର ମଣି ବିବେକରଞ୍ଜନ ଚକ୍ରବର୍ତ୍ତୀଙ୍କୁ ସପରିବାରରେ ରଖିଲେ ନିଜ ପାଖରେ। ବଡ଼ାଲ ବାଙ୍ଲାର ଏକତାଲାରେ ରହନ୍ତି ଶ୍ରୀଶ୍ରୀ ଠାକୁର ସ୍ୱୟଂ, ଆଉ ଦ୍ୱିତଳରେ ରହିବାର ସ୍ଥାନ ନିର୍ଦ୍ଦିଷ୍ଟ ହେଲା–ପୂଜ୍ୟପାଦ ଛୋଟଦା' ତଥା ବିବେକରଞ୍ଜନ ଚକ୍ରବର୍ତ୍ତୀଙ୍କ ପାଇଁ। ଏହିପରି ବହୁବର୍ଷ ଅତିବାହିତ ହେବା ପରେ ଶ୍ରୀଶ୍ରୀ ଠାକୁର ଦେହତ୍ୟାଗର କିଛିଦିନ ପୂର୍ବେ ପୂଜ୍ୟପାଦ ଛୋଟଦା'ଙ୍କୁ ସ୍ୱତନ୍ତ୍ର ଘର ତିଆରି କରି ଦେଲେ, ଆଉ ସେ ଘରର ନାମ ଦେଲେ ''ବିବେକ ବିତାନ।''

୨ୟଥର ପୁନରାୟ ମାତୃ ଆଦେଶ ପାଳନ କଲେ ଠାକୁର। ବଡ଼ମା' ଦ୍ୱିତୀୟ ଗର୍ଭଜାତ ପୁତ୍ର ଓ ସ୍ୱାମୀର ଅସଂଖ୍ୟ ମନ୍ତ୍ରପୂତ ସନ୍ତାନମାନଙ୍କୁ ନେଇ ତାଙ୍କ ସଂସାର କରିବାରେ ବ୍ୟସ୍ତ ରହିଲେ। ୨ୟ ପୁତ୍ର ଛୋଟଦା (ବିବେକ ରଞ୍ଜନ ଚକ୍ରବର୍ତ୍ତୀ)ଙ୍କ ଜନ୍ମର ବେଶ୍ କିଛି ଦିନ ପରେ ବଡ଼ମା'ଙ୍କ ପାଖରେ ଲୋକମାନେ କହିବାକୁ ଲାଗିଲେ– କେବଳ ପୁତ୍ର ହେଲେ ହୁଏ ନାହିଁ, କନ୍ୟା ହେବା ମଧ୍ୟ ପ୍ରୟୋଜନ। କନ୍ୟାଦାନ ଶ୍ରେଷ୍ଠ ଦାନ। କାହିଁ ବଡ଼ମା'ର ସେହି କନ୍ୟାତ ନାହିଁ? ଏହାରି ମାଧ୍ୟମରେ ପୁନରାୟ ଯଥାବିଧି ଠାକୁରଙ୍କ ପାଖରେ କନ୍ୟା ମାଗିଲେ ବଡ଼ମା'। ପ୍ରଥମ କନ୍ୟା ସାଧନାଦିଦିର ଜନ୍ମ ହେଲା ସେହି

ଏକା ପଦ୍ଧତିରେ। ପୁତ୍ର ପରି ବଡ଼ମା ୨ୟ କନ୍ୟା ମାଗିଲେ। ଶ୍ରୀଶ୍ରୀ ଠାକୁର ତାଙ୍କର ସେହି ମନସ୍କାମନା ପୂର୍ଣ୍ଣ କଲେ। ସାଂତ୍ୱନାଦିଦିର ଜନ୍ମ ହେଲା। କିନ୍ତୁ ପ୍ରତିଟି ଜନ୍ମ ଯେ ଠାକୁରଙ୍କ ପାଖରେ କେତେ ବଡ଼ କଷ୍ଟକର ଅବସ୍ଥା ତାହା ଭାଷାର ଅତୀତ। ଶ୍ରୀଶ୍ରୀ ଠାକୁର କହିଲେ ମାତା ଯେତେବେଳେ ସନ୍ତାନ ପ୍ରସବ କରେ ସେତେବେଳେ ତାର କଷ୍ଟର ସୀମା ନଥାଏ। କିନ୍ତୁ ସନ୍ତାନର ମୁହଁ ଦେଖିଲେ ମହା ଆନନ୍ଦରେ ସବୁ ଦୁଃଖ ଭୁଲିଯାଏ। ସେହିପରି ଏହି ସନ୍ତାନମାନେ ଜନ୍ମ ହେଲା ପରେ ପରେ ମନରେ ଆନନ୍ଦ ହିଁ ହୋଇଛି। ପରମ ପିତାର ସନ୍ତାନ, ମୋ ମାଧ୍ୟମରେ ମଧ୍ୟ ପୃଥିବୀରେ ଆସିବା ଦେଖି।

ଏହିପରି ଶ୍ରୀଶ୍ରୀ ଠାକୁର କାଜଲଦା'ଙ୍କ ଜନ୍ମ ସମ୍ବନ୍ଧରେ ମଧ୍ୟ କହିଲେ, ସାନ ମା' ତଥା ବଡ଼ମା'ଙ୍କର ଏକମାତ୍ର ଛୋଟ ଭଗିନୀ ସର୍ବମଙ୍ଗଳାଦେବୀ ଯେ କି ଶିଶୁ କାଳଠାରୁ ବଡ଼ମା' ତଥା ଠାକୁରଙ୍କ ପାଖରେ ଲାଳିତ ପାଳିତ ଓ ବର୍ଦ୍ଧିତ; ଶ୍ରୀଶ୍ରୀ ଠାକୁରଙ୍କୁ ସେ କେବେ ଭଗ୍ନୀପତି ହିସାବରେ ଦେଖି ନାହିଁ। ବିଶ୍ୱର ଲୋକ ଭାଙ୍ଗି ପଡୁଛନ୍ତି ଠାକୁରଙ୍କ ପାଖରେ ପରମ ପୁରୁଷ ହିସାବରେ, ସର୍ବମଙ୍ଗଳା ମଧ୍ୟ ତାଙ୍କୁ ସେହି ବିଶ୍ୱସ୍ରଷ୍ଟା ପୁରୁଷ ଛଡ଼ା ଆଉ କିଛି ଭାବି ପାରି ନାହାନ୍ତି ଅନ୍ତରରୁ। ଅନ୍ୟ କୌଣସି ପୁରୁଷ ତାଙ୍କର ଆଖିରେ ପଡ଼ି ନାହିଁ ଯେ କି ତାଙ୍କର ଭଗ୍ନୀପତି ତଥା ବିଶ୍ୱପତି ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଠିଆ ହୋଇପାରେ। ଶ୍ରୀଶ୍ରୀ ଠାକୁରଙ୍କ ବ୍ୟତୀତ ଅନ୍ୟକୌଣସି ପୁରୁଷଙ୍କୁ ସେ ନିଜ ଜୀବନ ସ୍ୱାମୀ ହିସାବରେ ଭାବିବାର କଳ୍ପନା ମଧ୍ୟ କରି ନାହାନ୍ତି। ପରିଣତିରେ ଯାହା ହେବାର ତାହା ହିଁ ହେଲା। ଯଥେଷ୍ଟ ଶିକ୍ଷାରେ ଶିକ୍ଷିତା ହୋଇ ମଧ୍ୟ (ଯେ କି ସେତେବେଳେର ବି.ଏସ୍.ସି. ପାଶ୍) ଯେତେବେଳେ ଶ୍ରୀଶ୍ରୀ ବଡ଼ମା ଓ ଶ୍ରୀଶ୍ରୀ ଠାକୁର ତାଙ୍କୁ ବିବାହ ଦେବା ପାଇଁ ପାତ୍ର ଅନୁସନ୍ଧାନ କରିବାରେ ଲାଗିଲେ ମାସୀମା ତଥା ସାନମା' ସର୍ବମଙ୍ଗଳାଦେବୀ ମନେ ମନେ ଚଞ୍ଚଳ ହୋଇ ଉଠିଲେ। ଏହା କିପରି ସମ୍ଭବ? ମୋର ଏଇ ଦେହ ଆଉ କାହାକୁ ତ ସମର୍ପଣ କରି ହେବ ନାହିଁ! ମୀରାବାଈ ଯେପରି ତାଙ୍କର ଦେହ, ମନ ସମର୍ପିତ କରିଥିଲେ ଶ୍ରୀକୃଷ୍ଣ ତଥା ନନ୍ଦଲାଲାଙ୍କୁ, ପାର୍ଥିବ ଜଗତର ମନୁଷ୍ୟ ସ୍ୱାମୀଙ୍କୁ ସର୍ବପ୍ରକାର ସେବା ଶୁଶ୍ରୂଷା ଓ ଶ୍ରଦ୍ଧା ଭକ୍ତି କରିବା ସତ୍ତ୍ୱେ ନିଜ ଦେହକୁ କେତେବେଳେ ମନୁଷ୍ୟରୂପୀ ସ୍ୱାମୀଙ୍କୁ ଛୁଇଁବାକୁ ଦେଉ ନଥିଲେ, ସର୍ବମଙ୍ଗଳା ଦେବୀ ସେହପରି ଭାବିଲେ। ମୋର ଏହି ଦେହ ଛୁଇଁବାର ଅଧିକାର ଏ ପୃଥିବୀରେ ଆଉ କାହାରିର ନାହିଁ। ମୁଁ ଦେଇ ପାରିବି ନାହିଁ ଆଉ କାହାରିକୁ ସେହି ଅଧିକାର।

ସେ ମାତୃସମା ବଡ଼ ଭଗିନୀ ଯାହାଙ୍କ ଆଶ୍ରୟରେ ଚିରଲାଳିତ ପାଳିତ ସେହି ଭଉଣୀଙ୍କୁ ସେ ଅନ୍ତରର ସବୁ କଥା ଖୋଲି କହିଲେ। ବଡ଼ମା' ଶୁଣି ଚିନ୍ତିତ ହୋଇ ପଡ଼ିଲେ। କହିଲେ– ସବୁ ତ ବୁଝିଲି, କିନ୍ତୁ ତୋର ଜୀବନଟାକୁ ଏପରି କାହିଁକି ନଷ୍ଟ କରିବୁ? ତୁ ଲେଖା ପଢ଼ା ଶିଖିଛୁ, ପରମ ପିତାଙ୍କ ଦୟାରେ ଦେଖିବାକୁ ମଧ୍ୟ ସୁନ୍ଦରୀ। ଭଲ ପାତ୍ର ଦେଖି ଆମ୍ଭେ ତୋତେ ବିବାହ ଦେବା। ଛୁଆ ପିଲା ନେଇ ଘରସଂସାର କରିବୁ, ସୁଖୀ ହେବୁ। ଶ୍ରୀଶ୍ରୀ ଠାକୁରଙ୍କ କଥା କହି କହିଲେ– ତାଙ୍କୁ ତ ଦେଖିଛୁ ମହେଶ୍ୱର, ଭୋଳାନାଥ। ବିଶ୍ୱର ସମସ୍ତଙ୍କୁ ଦେଖୁଛନ୍ତି, ମୋତେ ଦେଖିବାର ତାଙ୍କର ବେଳ କାହିଁ? ତୁ ଆସି କାହିଁକି ଏହା ଭିତରେ ପଡ଼ିବୁ? କ'ଣ ବା ତାଙ୍କ ପାଖରୁ ପାଇବୁ? ସର୍ବମଙ୍ଗଳା ଦେବୀଙ୍କର ସେହି ଏକ କଥା। ଦିଦି ମୁଁ ବିବାହ କରିବାକୁ ଚାହୁଁ ନାହିଁ। ମୁଁ ଏହିଭଳି ଭାବରେ ଚିରଦିନ ତୁମ ପାଖରେ ରହିବି। ଶ୍ରୀଶ୍ରୀ ବଡ଼ମା' ସନ୍ତାନତୁଲ୍ୟା ଛୋଟ ଭଗିନୀକୁ ପ୍ରାଣାଧିକ ଭଲ ପା'ନ୍ତି। ଶ୍ରୀଶ୍ରୀ ଠାକୁରଙ୍କୁ ଯାଇ ଏ କଥା କହିଲେ। ଶ୍ରୀଶ୍ରୀ ଠାକୁର ସବୁ ଶୁଣି ବଡ଼ମା'ଙ୍କୁ କହିଲେ– ବଡ଼ବୋହୂ, ଏ ତୁମେ କ'ଣ କହୁଛ? ମୁଙ୍ଗଲି (ସର୍ବମଙ୍ଗଳାଙ୍କର ଡାକ ନାମ) ର କ'ଣ ମୁଣ୍ଡ ଖରାପ ହୋଇ ଯାଇଛି କି? ତାକୁ ବୁଝାଇ ସୁଝାଇ ଭଲ ପାତ୍ର ଦେଖି ବିବାହ ଦେବାର ଚେଷ୍ଟା କର। ବଡ଼ମା' ସାନ ଭଉଣୀ ଏବଂ ବିଶ୍ୱମ୍ଭର ସ୍ୱାମୀ କାହାରିକୁ ମତ କରାଇ ପାରିଲେ ନାହିଁ।

ସାନ ଭଉଣୀ ଚାହୁଁନି ଅନ୍ୟତ୍ର ବିବାହ କରିବାକୁ, ତା'ଠାରୁ ତାର ମୃତ୍ୟୁ ମଧ୍ୟ ଶ୍ରେୟ। ଆଉ ଅନ୍ୟ ଏକ ଦିଗରେ ତାର ନିଜର ପତି ତଥା ବିଶ୍ୱପତି ଠାକୁରଙ୍କୁ ମଧ୍ୟ ରାଜି କରାଇ ହେଉନାହିଁ। କୌଣସି ଉପାୟନ୍ତର ନ ଦେଖି ବଡ଼ମା ପୁନରାୟ ଦ୍ୱାରସ୍ଥ ହେଲେ ତାଙ୍କ ନିଜର ଶାଶୂ ତଥା ଜନନୀ ମନମୋହିନୀ ଦେବୀଙ୍କ ନିକଟରେ। ତାଙ୍କୁ ଯାଇ ବିସ୍ତାରିତ ସବୁ କହିଲେ, ମନମୋହିନୀ ଦେବୀ ପିଲାକାଳରୁ ସର୍ବମଙ୍ଗଳାଙ୍କୁ ପାଖେ ପାଖେ ରଖିଛନ୍ତି। ଆଉ ସେହି ସୁଚରିତ୍ରା, ସୁଲକ୍ଷଣା ଝିଅଟିକୁ କୌଣସି ସତ୍‌ପାତ୍ରସ୍ଥ କରିବା ପାଇଁ ଚାରିଆଡ଼େ ଆଖି ବୁଲାଇ ଚାଲିଛନ୍ତି, ମାତ୍ର ସେପରି ମନମୁତାବକ ପାତ୍ର ପାଉ ନାହାନ୍ତି। ଆଜି ବଡ଼ ବୋହୂ ପାଖରୁ ଏକଥା ଶୁଣି ପ୍ରଥମେ ମନରେ ଦ୍ୱିଧା ଆସିଲେ ମଧ୍ୟ ଅନେକ ଭାବିଚିନ୍ତି ଓ ବଡ଼ମା'ଙ୍କର ସନିର୍ବନ୍ଧ ଅନୁରୋଧରେ ସର୍ବମଙ୍ଗଳା ଦେବୀ ସାଙ୍ଗରେ କଥା କହି ତାଙ୍କର ମନୋଭାବ ବୁଝି ଶ୍ରୀଶ୍ରୀ ଠାକୁରଙ୍କୁ ଡାକି ଜନନୀ ମନମୋହିନୀ ଦେବୀ କହିଲେ– ପିଲାକାଳରୁ ସର୍ବମଙ୍ଗଳା ଏ

ସଂସାରରେ ରହିଛି। ଏ ଘରକୁ ନିଜ ଘର ଛଡ଼ା ସେ ଅନ୍ୟ କିଛି ଭାବି ପାରିନାହିଁ। ଆଜି ତାର ବିବାହ ଦେବା କଥା ଶୁଣି ସେ ଅନ୍ୟତ୍ର ବିବାହ ହେବାକୁ ଚାହୁଁ ନାହିଁ। ମୁଁ ବଡ଼ବୋହୂ ପାଖରୁ ଏକଥା ଶୁଣି ଅନେକ ଭାବିଚିନ୍ତି ସ୍ଥିର କରିଛି– ତୁ ତାକୁ ଗ୍ରହଣ କର। ଶ୍ରୀ ଶ୍ରୀ ଠାକୁର କହିଲେ– ମା' ତୁ କ'ଣ କହୁଛୁ। ଏହା କିପରି ସମ୍ଭବ? ସର୍ବମଙ୍ଗଳାକୁ ଏଠାଂକାର ସମସ୍ତେ ଭଲପାନ୍ତି। ମୁଁ ବି ଚାହେଁ ସେ ସୁଖୀ ହେଉ। ତାକୁ ସତ୍ ପାତ୍ର ଦେଖି ଅନ୍ୟତ୍ର ବିବାହ ଦେଲେ ଘର ସଂସାର ନେଇ ଆନନ୍ଦରେ ରହିପାରିବ। ଜନନୀ ମନମୋହିନୀ କହିଲେ– ତାଙ୍କୁ ସବୁ ପ୍ରକାରରେ ବୁଝା ହୋଇଛି, ଦେଖା ହୋଇଛି ସେ ବିବାହ କରିବାକୁ ନାରାଜ। ଚିରଜୀବନ ଅବିବାହିତ ରହିବା ଠାରୁ ମୋର ମତରେ ତାଙ୍କୁ ଗ୍ରହଣ କଲେ ଭଲ ହେବ। ସେ ତାର ଦେହ, ମନ ପ୍ରାଣ ସବୁ ତୋତେ ସମର୍ପଣ କରି ଦେଇଛି ବହୁପୂର୍ବରୁ।

ଶ୍ରୀଶ୍ରୀ ଠାକୁର କହିଲେ– ମା', ତୁ ତ ଦେଖିଛୁ ମୋ ଜୀବନର ଧାରା ଅନ୍ୟ ପ୍ରକାର। ମୁଁ ସମସ୍ତଙ୍କୁ ଚାହୁଁଛି କିନ୍ତୁ ଜଣେ କାହାକୁ ନେଇ ରହିପାରୁନାହିଁ। ତେଣୁ ସର୍ବମଙ୍ଗଳା ଏଠାରେ କିଛି ପାଇବ ନାହିଁ। ମା' କହିଲେ– ମୁଁ ତୋର ସବୁକଥା ବୁଝୁଛି। କିନ୍ତୁ ସର୍ବମଙ୍ଗଳା ଦିଗରେ ଅନାଇଲେ ଏବଂ ତୋର ନିଜର ଦେଇଥିବା ନୀତି ଯେଉଁଥିରେ ତୁ ବହୁ ବିବାହ ସମର୍ଥନ କରିଛୁ ଅବଶ୍ୟ ସେ ବିବାହ ବର୍ଣ୍ଣାଶ୍ରମ ସମର୍ଥିତ; ତୋର ସେହି ସମର୍ଥିତ ନୀତି ତୁ ନିଜେ ଯଦି ପାଳନ ନକରୁ ତାହା ହେଲେ ଅନ୍ୟଲୋକ ତାହା ଶୁଣିବ କାହିଁକି? ତୁ ଯେତେବେଳେ ଯାହା କିଛି କହିଛୁ ସବୁ କିଛି ନିଜେ କରି କରାଇ ଲୋକଙ୍କୁ ଦେଖାଇଛୁ। କିନ୍ତୁ ତୋର ଏ ବହୁ ବିବାହ (Polygamy) ନୀତି ନିଜେ ଆଚରଣ କରି ମନୁଷ୍ୟ ସମାଜରେ ଦେଖାଇବା ଉଚିତ ନୁହେଁ କି? ତେଣୁ ମୁଁ କହୁଛି– ତୁ ସର୍ବମଙ୍ଗଳାଙ୍କୁ ଗ୍ରହଣ କର। ଶ୍ରୀଶ୍ରୀ ଠାକୁର କହିଲେ– ମା', ତୁ ଶେଷ ପର୍ଯ୍ୟନ୍ତ ମୋହରି ନୀତି ଦେଇ ମୋତେ ଚାପି ଧରିଲୁ? ମୋର କିଛି କହିବାର ନାହିଁ। ତୁମ୍ଭେ ତୁମ୍ଭ ବଡ଼ବୋହୂ ସାଙ୍ଗରେ କଥା କୁହ, ତାହାର ଯାହା ମତ ହେବ ତାହା ହିଁ ହେବ।

ଏହି ଭାବରେ ଶ୍ରୀଶ୍ରୀ ଠାକୁରଙ୍କର ମତ ନେଇ ଜନନୀ ମନମୋହିନୀ ଓ ଶ୍ରୀଶ୍ରୀ ବଡ଼ମା' ଚିରଦିନପାଇଁ ସର୍ବମଙ୍ଗଳାକୁ ସେହି ବଂଶର ବଧୂ କରିନେଲେ। ଏକ ଶୁଭଦିନ ଦେଖି ଶ୍ରୀଶ୍ରୀ ଠାକୁର ତାଙ୍କୁ ଗ୍ରହଣ କଲେ ଧର୍ମପତ୍ନୀ ରୂପରେ। ସର୍ବମଙ୍ଗଳା ଦେବୀର ସାଧନା ଓ ସ୍ୱପ୍ନ ସଫଳ ହେଲା। ଶ୍ରୀଶ୍ରୀ ଠାକୁର

କହିଲେ– ଏହାର କିଛିକାଳ ପରେ ଦିନେ ତୋର ବଡ଼ମା' ଆସି ମୋତେ କହିଲେ ମୁଙ୍ଗଲୀକୁ ଗୋଟିଏ ପୁଅ ଦିଅ। ସେ କଣ ନେଇ ରହିବି? ଶ୍ରୀଶ୍ରୀ ଠାକୁର କହିଲେ– ବଡ଼ବୋହୂ, ତୁମେ ତୁମର ନିଜର ଜୀବନ ଦେଇ ଜାଣିଛ ମୋର ନିଜର ଇଚ୍ଛା ଉପରେ କିଛି ନିର୍ଭର କରେନା। ପରମପିତା ଯେତେବେଳେ ଯାହା କରାଇବାର କରି ନିଅନ୍ତି। ତେବେ କାହିଁକି ଏ ଅନୁରୋଧ କରୁଛ? ବଡ଼ମା ସର୍ବମଙ୍ଗଳା ଦେବୀ ସହିତ ଦ୍ୱାରସ୍ଥ ହେଲେ ଜନନୀ ମନମୋହିନୀଙ୍କର। ତାଙ୍କ ପାଖରେ ବ୍ୟକ୍ତ କଲେ ସର୍ବମଙ୍ଗଳାର ମନର କଥା। ଜନନୀ ପୁତ୍ରକୁ ଡାକି କହିଲେ– ସର୍ବମଙ୍ଗଳାକୁ ଗୋଟିଏ ପୁଅ ଦେ, ସେ ତାହା ନେଇ ରହିବ। ଏହାରି ପରିଣତିରେ ସର୍ବମଙ୍ଗଳାର ପୁତ୍ର ସନ୍ତାନ ଲାଭ ହେଲା। ଶ୍ରୀଶ୍ରୀ ଠାକୁରଙ୍କ ସମ୍ମୁଖରେ ବସି ତାଙ୍କରି ଆଦେଶରେ ଶ୍ରୀଶ୍ରୀ ଠାକୁରଙ୍କର ୨ୟ ସ୍ତ୍ରୀ ଓ ତାଙ୍କର ପୁତ୍ର ହେବାର ଏହି କାହାଣୀ କହି ଶୁଣାଇଲେ ମାୟା ମାସୀମା। ତାହାଙ୍କୁ ଶ୍ରୀଶ୍ରୀ ଠାକୁର ଡାକୁଥିଲେ ଭେଲକୁଲ ମା'। ମାୟାମାସୀମା ଠାକୁରଙ୍କୁ ସବୁବେଳେ ଗୋପାଳ, ଗୋପାଳ, ବୋଲି ଡାକଥାନ୍ତି। ମାୟା ମାସୀମା ଶ୍ରୀଶ୍ରୀ ଠାକୁରଙ୍କ ସମ୍ମୁଖେ ବସି ଆହୁରି କହିଲେ– ମଙ୍ଗଳା କାଜଲକୁ ପାଇବା ପୂର୍ବରୁ ଠାକୁରଙ୍କୁ କହିଥିଲେ– ମୋତେ ଏପରି ଗୋଟିଏ ପୁଅ ଦିଅନ୍ତୁ ଯେ କି ଆପଣଙ୍କ ପରି ହେବ। ମାୟାମାସୀମା'ର ଏକଥା ଶୁଣି ଶ୍ରୀଶ୍ରୀ ଠାକୁର ମୋତେ କହିଲେ– ମନେ ରଖିଥିବୁ ମୋତେ ଯେ ଯାହା ମାଗିଲେ ଯେ ମୁଁ ଦେଇ ପାରିବି ତାହା ନୁହେଁ, ପରମପିତାଙ୍କ ଦୟାରେ ସେହି ସମୟରେ ଦେଇହୁଏ ଯେତେବେଳେ ସେ, ମୁଁ ଯେତେବେଳେ ଯାହା କହିବି ସେ କଥାଗୁଡ଼ିକ ପରିପାଳନ କରି ଠିକ୍ ଠିକ୍ ପଥରେ ଆଗେଇ ଚାଲେ। ମୁଙ୍ଗଲୀ (ସର୍ବମଙ୍ଗଳା) ର ନିଷ୍ଠା ଓ ଆପ୍ରାଣ ଆକୁଳତା ଉପରେ ପରମପିତାର ଦୟାରେ କାଜଲର ଜନ୍ମ।

ଏହି ଭାବରେ ଠାକୁର ମୋତେ ସେହି ନିଭୃତ ନିବାସରେ ନେଇ ବସି ତାଙ୍କର ଜୀବନର ବିଭିନ୍ନ ଇତିହାସ କେତେବେଳେ ନିଜ ମୁହଁରେ, କେତେବେଳେ ବା କାହାକୁ ଡାକି ଆଣି ସାମ୍ନାରେ ବସାଇ ତାଙ୍କ ଦ୍ୱାରା କୁହା କରାଇଲେ। ସେହି ଦିନ ବୁଝି ପାରୁ ନଥିଲି ଏହାର ଅନ୍ତର୍ନିହିତ ଅର୍ଥ। ଯେତେଦିନ ବିତିଯାଉଛି ସେତେ ଉପଲବ୍ଧି କରିପାରୁଛି ମୋର ଜୀବନକୁ ଇଷ୍ଟମୁଖୀ ରଖିବା ପାଇଁ ଏହାର ପ୍ରୟୋଜନ କେତେ ବେଶି, ଏହିପରି ଦିନ ପରେ ଦିନ ଚାଲିଛି। ଦିନେ କେତେକ ଲୋକ ଆସି ମୋତେ କହିଲେ– ସୁଶୀଲଦା, ଏହା କ'ଣ

ଭଲ ହେଉଛି? ଆପଣ ଦ୍ୱିପ୍ରହରଠାରୁ ରାତ୍ରି ନଅଟା, ସାଢ଼େ ନଅଟା ପର୍ଯ୍ୟନ୍ତ ଠାକୁରଙ୍କୁ ନେଇ କବାଟ ବନ୍ଦ କରି ରହୁଛନ୍ତି। ଆଉ କେହି ତାଙ୍କ ପାଖକୁ ଯାଇପାରୁ ନାହାନ୍ତି। ଏପରି କି କେତେ ଥର ସ୍ୱୟଂ ବଡ଼ମା' ଆସି ମଧ୍ୟ ଫେରି ଯାଇଛନ୍ତି। (ଶ୍ରୀଶ୍ରୀ ଠାକୁର ତାଙ୍କୁ ଦୁଇ ଚାରିକଥା କହି ଫେରାଇଛନ୍ତି।) ମୁଁ କହିଲି– ମୁଁ କ'ଣ କରିବି? ଠାକୁର ନିଜେ ମୋତେ ଡାକି ନେଉଛନ୍ତି, ବସାଇ ରଖୁଛନ୍ତି। ଆଶ୍ରମର ସବୁ ମୁଖିଆ ଲୋକମାନେ ମୋତେ ପରାମର୍ଶ ଦେଲେ ଆପଣ ୩ଟା ବେଳେ ଆଶ୍ରମରେ ନ ରହି ବାହାରେ ଯାଇ ରହିବେ। ତାହାହେଲେ ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଖୋଜି ନ ପାଇଲେ ଆଉ କିଛି ଅସୁବିଧା ହେବ ନାହିଁ। ମୋର ମନେ ମନେ ସେମାନଙ୍କର ଏହି ପରାମର୍ଶ ଭଲ ଲାଗିଲା ନାହିଁ। ତଥାପି ମନେ ମନେ ଶ୍ରୀଶ୍ରୀ ଠାକୁରଙ୍କୁ ସ୍ମରଣ କରି କହିଲି– ଠାକୁର! ତୁମ୍ଭେ ତ ଅନ୍ତର୍ଯ୍ୟାମୀ। ସବୁକିଛି ଜାଣିପାରୁଛ। ଏହି ପରିସ୍ଥିତିରେ ମୁଁ କଣ କରିବି, ମୋତେ କ୍ଷମା ଦିଅ ପ୍ରଭୁ।

ତପ୍ରରେ ମୁଁ ଆଶ୍ରମ ଛାଡ଼ି ଦୂରରେ ବଡ଼ଦା' ଘର ସମ୍ମୁଖରେ ସେତେବେଳେ ଯେଉଁ ଦ୍ୱିତଲା ଘରଟି ଥିଲା ତା ଉପରେ ଯାଇ ବସି ରହିଲି। ଏଡ଼ମଣ୍ଡ ଯୋଶେଫ ସ୍ପେନ୍‌ସାର ଓ ରେ ଆରଚାର ହାଉଜରମ୍ୟାନ ସାଙ୍ଗରେ ଯାଇ କଥାବାର୍ତ୍ତା କହିବାକୁ ଲାଗିଲି। ଦ୍ୱିପ୍ରହର ସାଢ଼େ ତିନିଟା ବାଜିଗଲା। ମନ ଭିତରଟା ଛଟପଟ କରି ଉଠୁଛି। ପ୍ରତିଦିନ ଏହି ସମୟରେ ଠାକୁରଙ୍କ ପାଖରେ ଉପସ୍ଥିତ ହେଉଥିଲି। ଆଜି ଲୁଚି ଆସି ଏଠାରେ। ମନ କିନ୍ତୁ ପଡ଼ି ରହିଛି ସେଠାରେ, ମୋର ମନର ମନୁଷ୍ୟ, ପରମ ବାନ୍ଧବ ସଦ୍‌ଗୁରୁ ଶ୍ରୀଶ୍ରୀ ଠାକୁରଙ୍କ ଚରଣରେ। ହଠାତ୍ କାନକୁ ଭାସି ଆସିଲା, ତଳୁ କିଏ ଜଣେ ଡାକୁଛନ୍ତି– ସୁଶୀଲଦା, ସୁଶୀଲଦା ଏଇଠି ଅଛନ୍ତି କି? ବାରନ୍ଦାରେ ଆସି ମୁହଁ ବଢ଼ାଇ ଦେଖିଲି ଜଣେ ଲୋକ ଠିଆ ହୋଇଛନ୍ତି। ମୋତେ ଦେଖି କହିଲେ– ସୁଶୀଲଦା' ଚଳନ୍ଦି ଆସନ୍ତୁ ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଡାକୁଛନ୍ତି। ମୁଁ ଆଉ କ୍ଷଣିକ ମାତ୍ର ଅପେକ୍ଷା ନକରି ଦଉଡ଼ି ଆସି ଉପସ୍ଥିତ ହେଲି ଠାକୁର ସମ୍ମୁଖରେ। ଠାକୁର ମୋତେ ଦେଖି କହିଲେ– କବାଟ ବନ୍ଦ କରି ଦେ। ତାପରେ କହିଲେ– କୁଆଡ଼େ ଥିଲୁ? କେତେବେଳୁ ତୋ ପାଇଁ ଅପେକ୍ଷା କରୁଛି। ଚାରିଆଡ଼େ ଲୋକ ତୋତେ ଖୋଜି ଖୋଜି ପାଉ ନାହାନ୍ତି। ମୁଁ କହିଲି– ନରାଲ ହାଉସରେ ସ୍ପେନସାରଦା'ଙ୍କ ଘରେ ବସିଥିଲି। ତାପରେ ମୋର ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଅନୁପସ୍ଥିତ ରହିବାର କାରଣ ସବୁ ବିସ୍ତାରିତ ଭାବେ ଠାକୁରଙ୍କୁ ଜଣାଇଲି।

ଠାକୁର ମୋତେ କହିଲେ— କିଏ କ'ଣ କହୁଛି ସେଥିରେ କାନ ଦେବ ନାହିଁ। ମୁଁ ଯାହା କହିବି ତାହା ନିଷ୍ଠା ସହକାରେ ଶୁଣିବ। ଇଷ୍ଟଙ୍କ ପାଖରୁ ଦୂରେଇ ଦେବା ପାଇଁ ବହୁତ ଆସୁରିକ ଶକ୍ତି ବହୁତ ବେଶରେ ଆସି ବହୁ ଯୁକ୍ତି ଦେଖାଇବେ କିନ୍ତୁ ସର୍ବ ଉର୍ଦ୍ଧ୍ୱରେ ଇଷ୍ଟ ବା ଗୁରୁ। ତାଙ୍କ ନିର୍ଦ୍ଦେଶ କାହାରି କଥାରେ କେତେବେଳେ ହେଲେ ଅବହେଳା କରିବ ନାହିଁ। ତୁମ ପାଇ କଣ ଭଲ, କଣ ମନ୍ଦ, କଣ କରିବା ଉଚିତ୍, କଣ କରିବା ଉଚିତ ନୁହେଁ ତାହା ମୁଁ କହିଦେବି।

ମୁଁ କହିଲି— ଠାକୁର ! ଆମ୍ଭେମାନେ ଏତେ ସମୟ ବସି କଥାବାର୍ତ୍ତା ହେଉଛୁଁ। ଏହାରି ଭିତରେ କେତେଲୋକ ଆସି ଫେରି ଯାଉଛନ୍ତି। ଆପଣଙ୍କ ସାଙ୍ଗରେ କଥା କହି ପାରୁ ନାହାନ୍ତି ବା ଦର୍ଶନ କରିପାରୁ ନାହାନ୍ତି। ଏପରିକି ବଡ଼ମା' ମଧ୍ୟ କୁଆଡ଼େ କେତେ ଥର ଆସି ଫେରିଯାଇଛନ୍ତି। ଠାକୁର କହିଲେ— କିଏ କୁଆଡ଼େ ଫେରିଯାଉଛି ମୁଁ ଜାଣିଛି। ଠିକ୍ ଠିକ୍ ପ୍ରୟୋଜନ ଥିଲେ ମୁଁ ସେମାନଙ୍କୁ ଡାକିଆଣି ତାଙ୍କ କଥା ଶୁଣିବି, ତୁମ୍ଭର ତାହା ପାଇଁ ଚିନ୍ତା କରିବା ଦରକାର ନାହିଁ। ପ୍ରତିଟି ଲୋକ ଯେତେବେଳେ ମୋ ଆଖିକୁ ଆସେ, ସ୍ୱଚ୍ଛ କାଚପାତ୍ର ଭିତରେ ଜିନିଷ ଥିଲେ ବାହାରୁ ଯେପରି ତାର ସବୁକିଛି ଦେଖାଯାଏ ପରମ ପିତାଙ୍କ ଦୟାରେ ମୁଁ ସେହିପରି ଦେଖିପାରୁଛି ସମସ୍ତଙ୍କର ଭିତରଟା। ଆଉ ସେହି ଭିତରଟା ଦେଖିବା ସଙ୍ଗେ ସଙ୍ଗେ ମନଟା ଖରାପ ହୋଇଯାଏ। କି କଦର୍ଯ୍ୟ ଜିନିଷ ସବୁ ଧରି ବୁଲୁଛନ୍ତି ଲୋକମାନେ। ହିଂସା, ଦ୍ୱେଷ, ସ୍ୱାର୍ଥ, ଲୋଲୁପତା, ଆହୁରି ଦୁଃଖ ଦ୍ୱନ୍ଦମୟ ବହୁକିଛି। ସଙ୍ଗେ ସଙ୍ଗେ ମୁଁ ଆଖିବୁଜି ପକାଏ, ଭିତରଟା ଆଉ ଦେଖେ ନାହିଁ। ଉପରୁ ଚେଷ୍ଟା କରିବାକୁ ଲାଗିପଡ଼େ ସମସ୍ତଙ୍କୁ ସୁନ୍ଦର କରି ତୋଳିବା ପାଇଁ। ମୁଁ କେବେହେଲେ ହଟିଯିବାର ପାତ୍ର ନୁହେଁ। ଯିଏ ଯେଉଁଭାବ ନେଇ ଆସୁନା କାହିଁକି ମୁଁ ନଛୋଡ଼ବନ୍ଧା ହୋଇ ଲାଗିପଡ଼େ ତାଙ୍କର ସେହି ଅଶୁଭ ଭାବକୁ ବିତାଡ଼ିତ କରି ଶୁଭକୁ ପ୍ରତିଷ୍ଠିତ କରିବା ପାଇଁ। କିନ୍ତୁ ମୁଁ ଯେତେ ଚେଷ୍ଟା କରି ସେମାନଙ୍କୁ ଯାହା କିଛି କହୁଛି, ମୋ ପାଖରେ ସବୁ ହଁ ହଁ କହି ପଛରେ ତାହା କିଛି ପାଳନ ନ କରି ନିଜ ବୃତ୍ତି ପ୍ରବୃତ୍ତି ନେଇ ଚାଲନ୍ତି। କହିବାକୁ ଗଲେ ପ୍ରାୟ ସମସ୍ତେ।

ସେଇଥିପାଇଁ ରାମକୃଷ୍ଣ ଠାକୁର କହିଛନ୍ତି— ଈଶ୍ୱର-କୋଟୀ ଲୋକ କୋଟିଏରେ ଗୋଟିଏ ମିଳିବା କଠିନ। ତେଣୁ ତୋତେ କହୁଛି ତୁ ଯେତେବେଳେ ମୋ ପାଖକୁ ଆସିବୁ ସେତେବେଳେ ମୋ ଛଡ଼ା ଆଉ କାହା ଦିଗରେ ଲକ୍ଷ୍ୟ

ରଖିବୁ ନାହିଁ। ଯଦି କାହାକୁ ଦେଖିବାର ପ୍ରୟୋଜନ ଥାଏ ତା' ହେଲେ ମୁଁ ନିଜେ କହିଦେବି ସେକଥା। ମୁଁ କହିଲି– ଠାକୁର! ଆପଣ ହିଁ ତ କୁହନ୍ତି ଯେ ଏ ପୃଥିବୀର କାହାକୁ ବାଦ୍ ଦେଇ ହେବ ନାହିଁ, ଆଉ ଅବିକା ଯେଉଁ କଥା କହୁଛନ୍ତି ତାହାର ସମନ୍ୱୟତା କାହିଁ? ଶ୍ରୀଶ୍ରୀ ଠାକୁର ହସି କହିଲେ– କାହାକୁ ବାଦ୍ ଦେଇ ପାରିବ ନାହିଁ, ଏହା ଠିକ୍। କିନ୍ତୁ ଏଇ କାହାକୁ ଅର୍ଥ ଆଗେ ମାଲିକ୍। ଆଉ ସମସ୍ତେ ସେହି ମାଲିକଙ୍କର।

ମାଲିକଙ୍କ ସାଙ୍ଗରେ ସଂପର୍କ ସ୍ଥାପିତ ହେଲେ ଆପେ ଆପେ ସମସ୍ତଙ୍କୁ ନିଜର ବୋଲି ମନେ ହେବ। ଯେପରି ଯେ ବାପଙ୍କୁ ମାନେ, ବାପର ଅନ୍ୟାନ୍ୟ ସନ୍ତାନ ତଥା ନିଜ ଭାଇମାନଙ୍କୁ ମଧ୍ୟ ସ୍ୱଭାବତ ହିଁ ସେ ଭଲ ପାଏ। ଶ୍ରୀଶ୍ରୀ ଠାକୁର ଆହୁରି କହିଲେ– ଏହା କିପରି ଜାଣ? ଯେପରି ନବବଧୂଟି ବିବାହ ହୋଇ ଶ୍ୱଶୁର ଘରକୁ ଆସିଛି, ସର୍ବପ୍ରଥମ ଯାହାଙ୍କ ହାତ ଧରି ଆସିଲେ ଯାହା ସଙ୍ଗରେ ପରିଚୟ ହେଲା ସେ ହେଉଛନ୍ତି ସ୍ୱାମୀ। ଗଭୀର ସଂପର୍କ ସ୍ଥାପିତି ହେଲା ସ୍ୱାମୀ ଓ ସ୍ତ୍ରୀର। ଅନ୍ୟ ଘରୁ ଅନ୍ୟ ପରିବେଶରୁ ଆସିଥିବା ଝିଅଟି ସ୍ୱାମୀ ସହିତ ଘନିଷ୍ଠତା ହେବା ସଙ୍ଗେ ସଙ୍ଗେ ସ୍ୱାମୀର ଘରକୁ ଅନ୍ତରରୁ ମାନିନେଲେ ନିଜର ଘର ବୋଲି। ଆଉ ସେହି ସ୍ୱାମୀର ପିତା, ମାତା, ଭ୍ରାତା, ଭଗିନୀ ସବୁ ଆତ୍ମୀୟମାନେ ତାର ଏକାନ୍ତ ଆତ୍ମୀୟ ହୋଇ ଉଠିଲେ। ଚିରଜୀବନ ତାଙ୍କୁ "ଆମର ଆମର" ବୋଲି କହିବାକୁ ଲାଗିଲେ। କିନ୍ତୁ ଯେତେବେଳେ ସ୍ୱାମୀ ସଙ୍ଗରେ ଯୁକ୍ତ ହୁଅନ୍ତି ତାହା ନିଭୃତରେ, ଏକାନ୍ତରେ। ତାହା ମଝିରେ ଆଉ କେହି ନାହିଁ। ସେହିପରି ଇଷ୍ଟ ବା ଗୁରୁଙ୍କ ସାଙ୍ଗରେ ସଂପର୍କ ନିବିଡ଼ ହେବାପାଇଁ ତାଙ୍କ ସାଙ୍ଗରେ ଏକାନ୍ତରେ ମିଳିବାକୁ ହୁଏ। ଆଉ ଅନ୍ତରର ସବୁ କିଛି ଗୋପନ କଥା ତାଙ୍କ ପାଖରେ ଖୋଲି କହିବା ଦରକାର।

ବୁଝିଲି ଶ୍ରୀଶ୍ରୀ ଠାକୁରଙ୍କର ଇଙ୍ଗିତ, ବହୁ ସ୍ଥାନରେ ବହୁ ସତ୍‌ଗ୍ରନ୍ଥ ପାଠ କରିଛି, ଗୁରୁଶିଷ୍ୟ ସଂପର୍କ ଯେଉଁଠାରେ ଗଭୀର ହୋଇଛି ସର୍ବତ୍ର ଦେଖାଯାଇଛି ଏହି ଚିରନ୍ତନ ନୀତି। ଖୁବ୍ ଭଲ ଲାଗୁଛି। ଶ୍ରୀଶ୍ରୀ ଠାକୁର କହିଲେ– ଆଉ ତୋ ବଡ଼ମା' କଥା କହୁଥିଲୁ। ତୋର ବଡ଼ମା' ହିଁ ତ ମୋର ଶକ୍ତି। ସେ ପ୍ରୟୋଜନ ବୋଧ କଲେ ତାଙ୍କର ଏଠାରେ ଆସିବା କେହି ରୋଧ କରି ପାରିବେ ନାହିଁ। ସେ ଜାଣେ ତୋତେ ନେଇ ମୁଁ କାହିଁକି ବସିଛି ବା ବସୁଛି। ତେଣୁ ସେ ଆସି ଫେରି ଯାଇଛି ତାହା ନୁହେଁ, ସେ ଜାଣିଛି

ଯାହା ପାଇଁ ମୋ ପାଖକୁ ଆସିବାର ପ୍ରୟୋଜନ ତାହା ପଛରେ ହେଲେ ମଧ୍ୟ ହେବ। ତୋର ତାହାପାଇଁ ଚିନ୍ତା କରିବାର ଦରକାର ନାହିଁ। ଏହାପରେ ମୁଁ ଶ୍ରୀଶ୍ରୀ ଠାକୁରଙ୍କୁ କହିଲି– ଠାକୁର! ଲୋକ ମୁଖରେ ଶୁଣିଛି, ବହିରେ ମଧ୍ୟ ପଢ଼ିଛି, ସେମାନେ ଅନେକ କିଛି ଅଲୌକିକ ଜିନିଷ ଆପଣଙ୍କ ପାଖରେ ଦେଖିଛନ୍ତି, ଏହା କ'ଣ ସତ୍ୟ? ଶ୍ରୀଶ୍ରୀ ଠାକୁର କହିଲେ– ପୃଥିବୀରେ ଏପରି ଅନେକ ଘଟଣା ଘଟିଥାଏ, ତାହା ଲୋକମାନଙ୍କର ବୋଧର ଅଗମ୍ୟ ହେଲେ ହିଁ ସେମାନେ ଅଲୌକିକ ବୋଲି ଭାବନ୍ତି। ଏହା କହି ରାଧାରମଣ ଜୋଆରଦାର୍ ଦାଦାଙ୍କୁ ଡାକିଲେ। ରାଧାରମଣ ଦା' ଆସିଲେ। ଶ୍ରୀଶ୍ରୀ ଠାକୁର ତାଙ୍କୁ ଆଦେଶ କଲେ– ଏଇ ସୁଶୀଲ ବସିଛି। ତାଙ୍କୁ କୁହନ୍ତୁ ଆପଣଙ୍କ ଜୀବନରେ ଅଲୌକିକ କ'ଣ ଘଟିଛି। ରାଧାରମଣ ଦା' ହାତଯୋଡ଼ି କରି ଠିଆ ହୋଇ ଠାକୁରଙ୍କୁ କହିଲେ– ଠାକୁର, ଆପଣଙ୍କ ସମ୍ମୁଖରେ ମୋତେ କହିବାକୁ ଡର ମାଡୁଛି, କାହିଁକିନା ଆପଣଙ୍କ କଥା ଆପଣଙ୍କ ଆଗରେ କହିବି, କାଳେ କେଉଁଠି ଭୁଲ ହୋଇଯିବ।

ଶ୍ରୀଶ୍ରୀ ଠାକୁର କହିଲେ– ଭୁଲ ନ କରି, ମିଛ ନ କହି, ସତ୍ୟ ଯଦି କିଛି ଜୀବନ ଉପରେ ଘଟିଥାଏ, ତାହାହିଁ ସୁଶୀଲ ପାଖରେ କୁହନ୍ତୁ। ମୋହରି ସାମ୍ନାରେ ରାଧାରମଣ ଦା' ମୋତେ କହିବାକୁ ଲାଗିଲେ– ମୁଁ କ'ଣ କହିବି, କେତେ କେତେ ଘଟଣା। କେଉଁଟା କହିବି କିଛି ବୁଝି ପାରୁ ନାହିଁ। ଦିନକର ଘଟଣା ଯେଉଁଟା ମନେ ପଡୁଛି ସେଇଟା କହୁଛି। କୃଷ୍ଟିଯାରେ ଆମେ ସତ୍‌ସଙ୍ଗ କରୁଛୁ ଗୋସାଇଁ ଦା' (ସତୀଶଚନ୍ଦ୍ର ଗୋସ୍ୱାମୀ)ଙ୍କ ସାଙ୍ଗରେ। ଠାକୁରଙ୍କର ଭୋଗରାଗ ଦିଆ ହୋଇ ପ୍ରାର୍ଥନା ହେଲା। ସତୀଶଦା ଭୋଗ ନିବେଦନ କଲେ। ନିବେଦନ କରିବା ପୂର୍ବରୁ ସମସ୍ତଙ୍କୁ କହିଲେ– ଆପଣମାନେ ନିରବ ରହନ୍ତୁ। ଠାକୁର ଭୋଗ ଗ୍ରହଣ କରୁଛନ୍ତି, ଗଣ୍ଡଗୋଳ କରନ୍ତୁ ନାହିଁ। ଭୋଗ ନିବେଦନାନ୍ତେ କେତେକ ଦୁଷ୍ଟ ଲୋକ କହି ଉଠିଲେ– କାହିଁ ଠାକୁରତ ଭୋଗ ଖାଇଲେ ନାହିଁ? ଭୋଗ ତ ଯେପରି କି ସେପରି ପଡ଼ି ରହିଛି। ସତୀଶ ଦା' କହିଲେ ହଁ, ଠାକୁର ଭୋଗ ଗ୍ରହଣ କରିଛନ୍ତି। ଭକ୍ତ ଲୋକମାନେ ଗୋସାଇଁ ଦା'ଙ୍କର ଏହି କଥା ମାନିନେଲେ ମଧ୍ୟ ଅଦୀକ୍ଷିତ ଦୁଷ୍ଟ କେତେକ ଲୋକମାନେ ଯାହା ମୁହଁରେ ଆସିଲା ତାହା କହିବାକୁ ଲାଗିଲେ। ସେମାନେ କହିଲେ– ଗୋଟିଏ ମନୁଷ୍ୟକୁ ଭଗବାନ ସଜାଇ ଏହି ଭଣ୍ଡ ଲୋକଗୁଡ଼ାକ ଲୋକଙ୍କୁ ଠକାଇ ଚାଲିଛନ୍ତି। ଗୋସାଇଁଦା'ଙ୍କ କାନରେ ଏ କଥା ଆସିବା

ସଙ୍ଗେ ସଙ୍ଗେ ସେ ଆସନ ଛାଡ଼ି ଲମ୍ଫ ଦେଇ କହି ଉଠିଲେ— କ'ଣ କହିଲ' ଠାକୁର ଆସି ନାହାନ୍ତି? ଭୋଗ ପାଇ ନାହାନ୍ତି? ଦେଖ, ଠାକୁର ସଶରୀରରେ ଆସିବେ ଏବଂ ଭୋଗ ପାଇବେ। ଏହା କହି ଯାହା ଘରେ ସତ୍‌ସଙ୍ଗ ହେଉଥିଲା ତାଙ୍କୁ ଡାକି ଗୋସାଇଁଦା' କହିଲେ— ନୂଆ କରି ଭୋଗ ଆଣ। ଏଇଠି ରହିଥିବା ଭୋଗ ଠାକୁର ଗ୍ରହଣ କରିଛନ୍ତି। ପୁନର୍ବାର ଉଚ୍ଛିଷ୍ଟାନ୍ନ ଭୋଗ ଗ୍ରହଣ କରିବେ ନାହିଁ। ଗୃହସ୍ୱାମୀ ନୂଆକରି ଭୋଗ ଆଣିଲେ। ଗୋସାଇଁଦା' ଠାକୁରଙ୍କ ପାଖରେ ଭୋଗ ନିବେଦନ କରି କୀର୍ତ୍ତନ କରିବାକୁ ଲାଗିଲେ। ସେ କି ଅପୂର୍ବ କୀର୍ତ୍ତନ! ଉପସ୍ଥିତ ସମସ୍ତେ ସେ କୀର୍ତ୍ତନରେ ମାତି ଉଠିଲେ। ଗୋସାଇଁଦା' ବିରାଟ ଲମ୍ଫ ଦେଇ ନାଚିବାକୁ ଲାଗିଲେ। ସାଙ୍ଗରେ କୀର୍ତ୍ତନ କରି ଚାଲିଛନ୍ତି, ବହୁତ ମୃଦଙ୍ଗ ବାଜି ଚାଲିଛି। ଘଣ୍ଟା ପରେ ଘଣ୍ଟା ଚାଲିଛି, କୀର୍ତ୍ତନ ବନ୍ଦ ହେଉ ନାହିଁ। ଗ୍ରାମରୁ ବହୁତ ଲୋକ ଆସି ଜମାୟତ ହୋଇଛନ୍ତି ଏହି କୀର୍ତ୍ତନରେ ଆକୃଷ୍ଟ ହୋଇ। ଅବିରାମ ନୃତ୍ୟ ସହିତ କୀର୍ତ୍ତନ କରି ଚାଲିଛନ୍ତି ଗୋସାଇଁଦା' ଓ ଭକ୍ତମଣ୍ଡଳୀ। ଗଭୀର ରାତ୍ରି ପାର ହୋଇ ଶେଷ ଯାମିନୀ ଆଗତ। କାହିଁ ଠାକୁର ଆସି ତ ଭୋଗ ଖାଇଲେ ନାହିଁ? ଦୁଷ୍ଟ ପ୍ରକୃତିର ଲୋକମାନଙ୍କ ମୁହଁରେ ଅବିଶ୍ୱାସର ବକ୍ର ହାସ୍ୟରେଖା। ଭକ୍ତମଣ୍ଡଳୀ ଘର୍ମାକ୍ତ କଳେବର, କୌଣସି ଦିଗରେ ଭ୍ରୂକ୍ଷେପ ନାହିଁ, କୀର୍ତ୍ତନ କରି ଚାଲିଛନ୍ତି। ମଝିରେ ମଝିରେ ଗୋସାଇଁଦା ହୁଙ୍କାର ଦେଇ ଉଠୁଛନ୍ତି। ''ଠାକୁର, ଠାକୁର, ଠାକୁର'', ବୋଲି ପୁଣି ସେହି କୀର୍ତ୍ତନ କରି ଚାଲିଛନ୍ତି। ଅକସ୍ମାତ୍ ଶେଷ ରାତ୍ରିରେ ଶୁଣାଗଲା ଠାକୁରଙ୍କର କଣ୍ଠସ୍ୱର। ଠାକୁର କହୁଛନ୍ତି— ଗୋସାଇଁଦା' ଗୋସାଇଁଦା', ମୁଁ ଆସିଛି। ଏହି ଶବ୍ଦ ଶୁଣି ଗୋସାଇଁଦା ପଛକୁ ଅନାଇ ଦେଖିଲେ ଶ୍ରୀଶ୍ରୀ ଠାକୁର ଆସି ଠିଆ ହୋଇଛନ୍ତି। ଗୋସାଇଁ ଦା' ତାଙ୍କ ଚରଣ ତଳେ ଭୂଲୁଣ୍ଠିତ ହୋଇ ପଡ଼ିଲେ, ଉପସ୍ଥିତ ଜନମଣ୍ଡଳୀ କେହି ଶଙ୍ଖ ଓ ମା'ମାନେ ହୁଳହୁଳି ଧ୍ୱନି କରିବାକୁ ଆରମ୍ଭ କଲେ। ଆଉ ସମସ୍ତେ ଠାକୁରଙ୍କର ଚରଣତଳେ ଲୋଟି ପଡ଼ିଲେ। ଠାକୁର ଗୋସାଇ ଦା'ଙ୍କୁ ଭୂଲୁଣ୍ଠିତ ଅବସ୍ଥାରୁ ଧରି ଉଠାଇଲେ, କହିଲେ ଗୋସାଇଁ, ମୋତେ ବହୁତ ଭୋକ ଲାଗିଛି, ମୋତେ ଖାଇବାକୁ ଦିଅ। ଠାକୁରଙ୍କ ପାଇଁ ଯେଉଁ ଭୋଗ ରଖା ହୋଇଥିଲା ଠାକୁର ଯାଇ ସେହିଠାରେ ବସି ସେହି ଭୋଗ ପାଇବାକୁ ଆରମ୍ଭ କଲେ। ଗୋସାଇଁ ଦା' କାନ୍ଦି ଉଠିଲେ— ଠାକୁର! ଏହି ଭକ୍ତର ମାନ ରକ୍ଷା ପାଇଁ ତୁମେ କେତେ କଷ୍ଟ କରି ଏଠାରେ ଆସି ଉପସ୍ଥିତ ହେଲ। ମୋତେ କ୍ଷମା କର ପ୍ରଭୁ! ହିମାଇତ୍‌ପୁର ଠାକୁରଙ୍କ ଆଶ୍ରମରୁ ପଦ୍ମାନଦୀ ପାର ହୋଇ,

ଯାହାର ଓସାର କି ଦେଢ଼ ମାଇଲ ଉପରେ, ତା'ପରେ ଏହି ବାଲିଚଢ଼ା ଭାଙ୍ଗି ଦୀର୍ଘପଥ ଆସିବାକୁ କମ୍‌ରୁ କମ୍ ୭/୮ ଘଣ୍ଟା ସମୟ. ଲାଗେ। ପ୍ରଭୁ ଠାକୁରଙ୍କର କେତେ କଷ୍ଟ ହୋଇଥିବ! ଏହି କଥା ଭାବି ଉପସ୍ଥିତ ସମସ୍ତେ ଏପରିକି ସେହି ଅବିଶ୍ୱାସୀ ଲୋକମାନେ ମଧ୍ୟ ଆସି ଶ୍ରୀଶ୍ରୀ ଠାକୁରଙ୍କ ଚରଣ ତଳେ କାନ୍ଦି ପଡ଼ିଲେ, ଠାକୁର ସମସ୍ତଙ୍କୁ ବୁଝାଇବାକୁ ଲାଗିଲେ। କିଛି ସମୟ ବିତିଯିବା ପରେ ଶ୍ରୀଶ୍ରୀ ଠାକୁର କହିଲେ– ମୋତେ ଯିବାକୁ ହେବ, ଗୋସାଇଁ ଦା' ଓ ଆମ୍ଭେମାନେ ସମସ୍ତେ ଶ୍ରୀଶ୍ରୀ ଠାକୁରଙ୍କ ସାଥେ ସାଥେ କେତକ ବାଟ ଆସିବା ପରେ ଠାକୁର କହିଲେ–ଆପଣମାନେ ଫେରିଯା'ନ୍ତୁ, ମୁଁ ଆସୁଛି, ଏକଥା କହିବା ସଙ୍ଗେ ସଙ୍ଗେ ଠାକୁର ଅଦୃଶ୍ୟ ହୋଇଗଲେ, ଆଉ ତାଙ୍କୁ ଖୋଜି ଆମେ କେହି ପାଇଲୁ ନାହିଁ। ଗୋସାଇଁ ଦା' ମୋତେ କହିଲେ– ରାଧା ରମଣ, ତୁମେ ଆଶ୍ରମକୁ ଯାଅ, ଯାଇ ଦେଖ ଠାକୁର ସେଠି ଫେରିଛନ୍ତି କି? ଏତେ ରାତ୍ରିରେ ଠାକୁର ଆସିଲେ, ପୁଣି ଚାଲିଗଲେ, ମୁଁ ତାଙ୍କୁ କେତେ କଷ୍ଟ ଦେଲି! ତୁମ୍ଭେ ଆଜି ଭୋର ଟ୍ରେନ୍‌ରେ ବାହାରି ପଡ଼, ଆଶ୍ରମକୁ ଯାଇ ଦେଖ ଠାକୁର ଭଲରେ ପହଞ୍ଚିଲେ କି ନାହିଁ। ରାଧା ରମଣ ଦା' କହିଲେ– ମୁଁ ସକାଳେ କୁଷ୍ଟିୟାରୁ ଟ୍ରେନ୍‌ରେ ବାହାରି ଆଶ୍ରମକୁ ଆସି ଦେଖିଲି ଶ୍ରୀଶ୍ରୀ ଠାକୁର ବହୁତ ଭକ୍ତମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବସିଛନ୍ତି। ମୋତେ ଦେଖି ଠାକୁର ସ୍ୱାଭାବିକ କଣ୍ଠରେ ପଚାରିଲେ– କି ଖବର ରାଧାରମଣ ଦା'? ସବୁ ଭଲ ତ? ଗୋସାଇଁ କିପରି ଅଛନ୍ତି, ସେ ଆସି ନାହିଁ କି? ମୁଁ କହିଲି– ଠାକୁର! ଗୋସାଇଁ ଦା' ଆସି ନାହାନ୍ତି। ମୋତେ ପଠାଇଛନ୍ତି ଆପଣଙ୍କୁ ଦେଖିବା ପାଇଁ କେତେବେଳେ ଫେରି ଆସିଲେ ଏବଂ ଭଲ ଭାବରେ ଫେରିଛନ୍ତି କି ନାହିଁ ତାହା ଜାଣିବା ପାଇଁ। ଉପସ୍ଥିତ ସମସ୍ତେ ସଚକିତ ହୋଇ ଉଠିଲେ। ଶ୍ରୀଶ୍ରୀ ଠାକୁର କହିଲେ– ମୁଁ ଭଲ ଅଛି। କିନ୍ତୁ ଆପଣ କ'ଣ କହୁଛନ୍ତି? ମୁଁ କେଉଁଠୁ ଫେରିବି? ରାଧାରମଣ ଦା' କହିଲେ– କାଲି ଶେଷ ରାତ୍ରିରେ ଆପଣ କୁଷ୍ଟିଆ ଯାଇଥିଲେ। ଆମ୍ଭେ ସତ୍‌ସଙ୍ଗ କରୁଥିଲୁ। ଆପଣ ସଶରୀରରେ ସେହିଠାରେ ଉପସ୍ଥିତ ରହି ସେ ଭୋଗ ପାଇଥିଲେ, ମୋ ସହିତ ସେଠାକାର ଉପସ୍ଥିତ ଶତ ଶତ ଲୋକ ଆପଣଙ୍କୁ ଦେଖିଛନ୍ତି, ଆପଣଙ୍କ ସାଙ୍ଗରେ କଥା କହିଛନ୍ତି। ଶ୍ରୀଶ୍ରୀ ଠାକୁରଙ୍କ ସମ୍ମୁଖରେ ଉପସ୍ଥିତ ଜନମଣ୍ଡଳୀ ଭିତରୁ କେତେକ ଲୋକ କହି ଉଠିଲେ– ଆପଣ କ'ଣ କହୁଛନ୍ତି ରାଧାରମଣଦା'? କାଲି ରାତି ସାରା ତ ଠାକୁର ଆମ ସାଙ୍ଗରେ ରହିଥିଲେ। ରାତ୍ରି ଗୋଟାଏ ପର୍ଯ୍ୟନ୍ତ ଠାକୁର ଆମ ସଙ୍ଗରେ

କଥାବାର୍ତ୍ତା କଲେ। ଆମେ ସବୁ ବସି ଶୁଣିଲୁ। ତା'ପରେ ରାତ୍ରିରେ ଆମମାନଙ୍କ ସାଙ୍ଗରେ ଠାକୁର ଶୋଇଲେ ଏବଂ ରାତ୍ରି ୨ଟାରେ ପୁଣି ଆମମାନଙ୍କୁ ଡାକି ତୋଳି ନାମ ଧ୍ୟାନ କରାଇବାକୁ ବସାଇଲେ। ଭୋର ହେବା ପର୍ଯ୍ୟନ୍ତ ଠାକୁର ଆମମାନଙ୍କ ସଙ୍ଗରେ ରହିଥିଲେ ଏବଂ ତାପରେ ସମସ୍ତ ଦିନ ମଧ୍ୟରେ କେତେ ଲୋକ ଠାକୁରଙ୍କ ପାଖରେ ଯିବା ଆସିବା କରୁଛନ୍ତି। କିନ୍ତୁ କାହିଁ ଠାକୁର ତ ଆଶ୍ରମ ଛାଡ଼ି ବାହାରକୁ କେତେବେଳେ ହେଲେ ଯାଇ ନାହାନ୍ତି ? ଶ୍ରୀଶ୍ରୀ ଠାକୁର ଚୁପ୍ ହୋଇ ରହିଲେ। ସମସ୍ତଙ୍କ ଦୃଷ୍ଟି ଠାକୁରଙ୍କ ଆଡ଼କୁ।

ପୁଣି ରାଧାରମଣଦା' ମୋତେ କହିଲେ– ମୁଁ ବିସ୍ତାରିତ କୁଷ୍ଟିଆର ସବୁ ଘଟଣା ଯେତେବେଳେ ଠାକୁରଙ୍କ ସମ୍ମୁଖରେ ସମସ୍ତଙ୍କ ଆଗରେ କହିଲି ସମସ୍ତେ ଶୁଣି ଆନନ୍ଦିତ, ବିସ୍ମିତ ହୋଇ ଉଠିଲେ। ଆଉ ଠାକୁରଙ୍କୁ ମନେ ହେଲା ଦେହଟି ଯେପରି ଏଠାରେ ପଡ଼ି ରହିଛି। ଏ ସବୁ କଥା ଯେପରି ତାଙ୍କର କାନକୁ ଯାଉ ନାହିଁ। ସେ ଯେପରି ଅନ୍ୟତ୍ର ଅଛନ୍ତି। ରାଧାରମଣ ଦା' ଏହାପରେ ଆହୁରି ଘଟଣା କହିବାକୁ ଯାଉଥିଲେ। ଶ୍ରୀ ଶ୍ରୀ ଠାକୁର କହିଲେ– ରାଧାରମଣଦା' ଆପଣ ଯାଆନ୍ତୁ। ରାଧାରମଣଦା' ଚାଲିଯିବା ପରେ ମୋତେ ଠାକୁର କହିଲେ– ଏହିପରି ଏମାନଙ୍କ ପାଖରୁ ବହୁତ ଘଟଣା ମୁଁ ଶୁଣୁଛି, ମିଛ ନୁହେଁ ସତ୍ୟ ଘଟଣା। ମନୁଷ୍ୟ ଗୋଟିଏ ସ୍ଥାନରେ ଥିଲେ ମଧ୍ୟ ତାର ପ୍ରତିବିମ୍ବ ଇଚ୍ଛା କଲେ ସମସ୍ତ ପୃଥିବୀ ବୁଲିପାରେ ଏବଂ ସେ ବସି ଯାହାକିଛି କରୁଛି ସେ ସବୁ ଲୋକମାନଙ୍କ ଦର୍ଶନରେ ଆସି ପାରେ। ଏହା ସାଧନା କଲେ ଯେପରି ଜଣାଯାଏ ବା ବୁଝାଯାଏ ସେହିପରି ବିଜ୍ଞାନ ଉନ୍ନତ ହେଲେ ଲୋକ ସମ୍ମୁଖରେ ତାହାରି ମାଧ୍ୟମରେ ସବୁକିଛି ଉନ୍ମୁକ୍ତ ନ ହେଲେ ମଧ୍ୟ କିଛି ଧରାପଡ଼େ। ମୋଟ କଥା ଇଷ୍ଟେ ବିଶ୍ୱାସ ରଖି ନିଷ୍ଠା ସହକାରେ ସାଧନ ଭଜନ୍ କଲେ ଅଜଣା ରାଜ୍ୟର ଦରଜା ଫିଟିଯାଏ। ଧର୍ମ ବା ସାଧନା ମନୁଷ୍ୟକୁ ଜାଣିବାରେ ସାହାଯ୍ୟ କରେ। ମନୁଷ୍ୟ ଜୀବନରେ ଏହା ଅପରିହାର୍ଯ୍ୟ। ଏହାର ବହୁତ ଦିନ ପରେ ଯେତେବେଳେ ମୁଁ ଟେଲିଭିଜନ କଥା ଶୁଣିଲି, ସେତେବେଳେ ଠାକୁରଙ୍କର ସେହି କଥା ମନେ ପଡୁଥାଏ। ମନୁଷ୍ୟ ଯନ୍ତ୍ର ସାହାଯ୍ୟରେ ଗୋଟିଏ ସ୍ଥାନରେ ବସିଥିବା ବା ଠିଆ ହୋଇଥିବା ବ୍ୟକ୍ତିକୁ ପୃଥିବୀର ସର୍ବତ୍ର ଦେଖାଯାଏ, ତାଙ୍କର କଥା ଶୁଣାଯାଏ। କିନ୍ତୁ ଧରି ହୁଏ ନାହିଁ, ଛୁଇଁ ହୁଏ ନାହିଁ। ଶ୍ରୀଶ୍ରୀ ଠାକୁର ବସ୍ତୁ ବିଜ୍ଞାନର କୌଣସି ସାହାଯ୍ୟ ନ ନେଇ ଯାଇ ଉପସ୍ଥିତ ହେଲେ ସମସ୍ତଙ୍କ ସମ୍ମୁଖରେ, ସମସ୍ତଙ୍କୁ କୁଣ୍ଢାଇ

ଧରିଲେ, ଖାଇଲେ, ପୁଣି ଫେରି ଆସିଲେ ପୂର୍ବେ ଯେଉଁଠାରେ ରହୁଥିଲେ ସେଠାରେ ମଧ୍ୟ ସେହିପରି, ରହିଗଲେ ଏହା କଣ ଟେଲିଭିଜନ୍‌ର ଆହୁରି କୌଣସି ଉନ୍ନତତର–ଅବସ୍ଥା ନୁହେଁ କି? ଯାହା ଏପର୍ଯ୍ୟନ୍ତ ମନୁଷ୍ୟ ଅଗୋଚରରେ ରହିଛି, ତାହା ଆମେ ବର୍ତ୍ତମାନ ଭାବୁଛୁ ଆଲୌକିକ।

ଏହିପରି ଶ୍ରୀଶ୍ରୀ ଠାକୁରଙ୍କ ସଙ୍ଗରେ ବିତିଚାଲିଛି ଦିନପରେ ଦିନ। ଦିନେ ଠାକୁର କଥା ପ୍ରସଙ୍ଗରେ କହିଲେ– ଆଚାର୍ଯ୍ୟ, ଗୁରୁ ସାଙ୍ଗରେ ସଙ୍ଗ କରୁ କରୁ ତାଙ୍କ ଉପରେ ଆସେ ଟାଣ ବା ଆକର୍ଷଣ। ଏହି ଆକର୍ଷଣ ଯୋଗୁଁ ହିଁ ଲୋକେ ତାଙ୍କୁ ଭଲପାନ୍ତି। ଆଉ ତାଙ୍କୁ ଭଲ ପାଇଲେ ତାଙ୍କ ସଙ୍ଗ ଲାଭ ପାଇଁ ମନ ବ୍ୟାକୁଳ ହୋଇଉଠେ ଏବଂ ଏହି ବ୍ୟାକୁଳିତ ମନ ଚାହେଁ ପୃଥିବୀରେ ଯେଉଁଠି ଯାହା କିଛି ପାଇଲେ ତାଙ୍କୁ ଦେବାକୁ। ନିଜେ କିଛି ଗ୍ରହଣ କରିବା ଆଗରୁ ଏହି ଭଲ ପାଇବାର ପାତ୍ର ଇଷ୍ଟଙ୍କୁ ଖୁଆଇବା ପାଇଁ, ଭରଣ କରିବା ପାଇଁ, ପୋଷଣ କରିବା ପାଇଁ ମନ ବ୍ୟାକୁଳ ହୋଇ ଉଠେ ଏବଂ ପ୍ରତି ମୁହୂର୍ତ୍ତ ତାଙ୍କରି ଚିନ୍ତାରେ ମଗ୍ନ ଥାଏ। ଏଇ ଧ୍ୟାନମଗ୍ନ ଅବସ୍ଥାରେ ଯେତେବେଳେ ଯାହାକୁ ସମ୍ମୁଖରେ ପାଏ, କୁହେ ତାଙ୍କର ସେହି ଇଷ୍ଟଙ୍କର କଥା, କରେ ତାଙ୍କରି ରୂପ ବର୍ଣ୍ଣନା, ଗାଏ ତାଙ୍କରି ଗୁଣଗାନ, ଆଉ ଏହାହିଁ ଭଜନ। ଯେତେବେଳେ କୌଣସି ଲୋକ ନ ଥାଏ, ନିର୍ଜ୍ଜନତା ଆସିଲେ ମନ ନିମଗ୍ନ ଥାଏ, ତାଙ୍କରି ନାମଧ୍ୟାନରେ। ଅନ୍ତର ଭିତରେ ଶୁଣିପାନ୍ତି ତାଙ୍କରି ସେହି ଚିରନ୍ତନ ଓ ଶାଶ୍ୱତ ଶବ୍ଦ, ଅତି ସୁମଧୁର ସେହି ଶବ୍ଦର ରେଶ୍। ଏହି ନାମ କରିବାର ପଦ୍ଧତି ଶ୍ରୀଶ୍ରୀ ଠାକୁର ଦେଖାଇ ଦେଲେ ବିଭିନ୍ନ ଆସନ ମାଧ୍ୟମରେ। ଶ୍ରୀଶ୍ରୀ ଠାକୁର ଆହୁରି କହିଲେ– ଇଷ୍ଟ ଉପରେ ଥରେ ଟାଣ ହେଲେ ମନୁଷ୍ୟ ଉନ୍ନତ ଜୀବନ ଆଡ଼କୁ ଅତି ଦ୍ରୁତ ଆଗେଇ ଚାଲେ। ଅବଶ୍ୟ ମଝିରେ ବହୁତ ବାଧାବିଘ୍ନ ଆସି ତାଙ୍କୁ ଇଷ୍ଟଚ୍ୟୁତ କରିବାକୁ ଚେଷ୍ଟା କରେ। ସେଥିରୁ ଏକମାତ୍ର ରକ୍ଷା ଖୁଣ୍ଟି ଧରି ରହିଲେ ଅର୍ଥାତ୍ ଇଷ୍ଟଙ୍କୁ ଶକ୍ତ ହାତରେ ଧରିଲେ ଆଉ ଧରିବାକୁ ହେଲେ ନିଷ୍ଠା ଦରକାର। ସେତେବେଳେ କେହି କିଛି କରି ପାରିନ୍ତି ନାହିଁ। ଏଇ ଭାବରେ ଆଗେଇ ଚାଲିଲେ ଘୃଣା, ଲଜ୍ଜା, ଭୟ ଦୂର ହୋଇଯାଏ। ପୃଥିବୀର ଲୋକ କେହି ବା ଆସି ମାଳ ଚନ୍ଦନ ଦେଇ ଭକ୍ତି ସହକାରେ ଯଶ ସୁଖ୍ୟାତିରେ ମାତି ଉଠନ୍ତି, ଆଉ କେହି କେହି ପଦ ପ୍ରହାରରେ ବା ନିନ୍ଦାକୁତ୍ସାରେ ଜର୍ଜରିତ କରନ୍ତି। କିନ୍ତୁ ସେହି ସାଧକ ଆଗରେ କୌଣସିଟାର କିଛି ଦାମ ନାହିଁ। ତାହାର ସମ୍ମୁଖରେ

ଥାଏ ସେହି ମୋହନ ମୂରତି, ସର୍ବକଲ୍ୟାଣମୟ ସେହି ଇଷ୍ଟମୂର୍ତ୍ତି। ସବୁବେଳେ ତାର ଆଖି ସାମନାରେ ଭାସି ଚାଲେ ତାଙ୍କରି କର୍ମ। ତାଙ୍କରି ଆଚାର ଆଚରଣ ଏବଂ କର୍ଣ୍ଣରେ ମଧ୍ୟ ଭାସି ଆସେ ତାଙ୍କରି ସେହି ଅତି ମଧୁର କଣ୍ଠସ୍ୱର ବା ନିର୍ଦ୍ଦେଶ। ସମସ୍ତଙ୍କୁ ହିଁ ଭଲ ଲାଗେ, ଉତ୍କୃଷ୍ଟ ବା ନିକୃଷ୍ଟ ବୋଲି କିଛି ମନେ ହୁଏ ନାହିଁ।

ଶ୍ରୀଶ୍ରୀ ଠାକୁର କହିଲେ– ତ୍ରୈଲଙ୍ଗ ସ୍ୱାମୀଙ୍କ କଥା ଶୁଣିଛ? କେତେବେଳେ ଭୋକ ଉପଲବ୍ଧି କଲେ କିଛି ନ ପାଇଲେ ନିଜର ପୁରିଶ (ବିଷ୍ଠା) ମଧ୍ୟ ନିଜେ ଭକ୍ଷଣ କରୁଥିଲେ। ଏଇ ପ୍ରସଙ୍ଗରେ ଠାକୁର କହିଲେ ପାବନା ଆଶ୍ରମର ଗୋଟିଏ କ୍ଷୁଦ୍ର କାହାଣୀ। ଶ୍ରୀଶ୍ରୀ ଠାକୁର କହିଲେ– ହିମାଇତପୁର ଗ୍ରାମରେ ସେତେବେଳେ ଛୋଟ ଆଶ୍ରମ। କିନ୍ତୁ ବହୁତ ଲୋକ ଯିବା ଆସିବା କରୁଛନ୍ତି। ପଦ୍ମା ନଈକୂଳରେ କିମ୍ବା ବଣ ଜଙ୍ଗଲରେ ଯାଇ ଅନେକେ ଝାଡ଼ା ଫେରୁଛନ୍ତି। ଗୋଟିଏ ପାଇଖାନା ଅଛି ଟିଣ ଦେଇ ଘେରାଉ ହୋଇ। କିନ୍ତୁ ସେ ପାଇଖାନାରୁ ମଳ ନିଷ୍କାସନର କୌଣସି ବ୍ୟବସ୍ଥା ନାହିଁ। ସେତେବେଳେ ସେ ଗାଁରେ କୌଣସି ମେହେନ୍ତର ନଥାଏ। ଲୋକ ଏଆଡ଼େ ସେ– ଆଡ଼େ ଝାଡ଼ା ଫେରିଲେ ମଧ୍ୟ ଉକ୍ତ ପାଇଖାନାରେ ବହୁତ ଲୋକ ଝାଡ଼ା ଫେରୁଥିଲେ। ମୁଁ ଦିନେ ରାତି ଦୁଇଟାରେ ସେଠାରେ ଝାଡ଼ା ଫେରିବାକୁ ଯାଇ ଦେଖିଲି ବହୁତ ମଳ ସ୍ତୁପୀକୃତ ହୋଇଛି। ଆଉ ଚତୁଃପାର୍ଶ୍ୱକୁ ବିଷାକ୍ତ ଗନ୍ଧରେ ବିଷାୟିତ କରି ଦେଇଛି। ଏପରିକି ବହୁତ ଦୂରକୁ ମଧ୍ୟ ସେହି ଦୁର୍ଗନ୍ଧ ଭାସି ଆଶ୍ରମକୁ ଆସୁଛି। ମୁଁ ଆଶ୍ରମକୁ ଫେରି ଆସି ସେଠାରୁ ଗୋଟିଏ ବଡ଼ ମାଟିପାତ୍ର ଯୋଗାଡ଼ କରି ସେହି ପାତ୍ରରେ ମଳକୁ ଉଠାଇ ଆଶ୍ରମରୁ ବହୁ ଦୂରରେ ଗଭୀର ପଦ୍ମାନଦୀର ସ୍ରୋତରେ ପକାଇବାକୁ ଲାଗିଲି। ଏହି କାମ ସାରିବାକୁ ମୋତେ ପ୍ରାୟ ଦୁଇ ଘଣ୍ଟା ସମୟ ଲାଗିଲା। ତଥାପି ସବୁ ମଳ ଅପସାରଣ କରି ପାରିଲି ନାହିଁ। ଆଶ୍ରମରେ ଲୋକ ଉଠିବାକୁ ଆରମ୍ଭ କଲେଣି। ଝାଡ଼ା ଫେରିବା ପାଇଁ ସେହି ପାଇଖାନାକୁ ଆସିବେ। ତେଣୁ ମୁଁ ସେହି ମଳର ପାତ୍ରଟିକୁ ବଣ ଭିତରେ ଲୁଚାଇ ରଖି ନଈରେ ଗାଧୋଇ ଫେରି ଆସିଲି। କେହି କିଛି ଜାଣି ପାରିଲେ ନାହିଁ। ୨ୟ ଦିନ ରାତ୍ରିରେ ସେହି ପାଇଖାନାରେ ବାକୀ ପୁଞ୍ଜୀଭୂତ ମଳ ସବୁ ପରିଷ୍କାର କରିଦେଲି।

ଦୁଇ ତିନିଦିନ ପରେ ଦେଖିଲି ପୁନରାୟ ସେଠାରେ ମଳ ଜମି ଉଠୁଛି। ତେଣୁ ପ୍ରତ୍ୟହ ମୋର କାମ ହେଲା ରାତ୍ରି ଦୁଇ ଅଢ଼େଇଟାରେ ଉଠି ପାଇଖାନା

ସଫା କରିବା। ଏହିପରି ଭାବରେ ୩ ବର୍ଷ ପାଇଖାନା ସଫା କରୁଥିଲି, ଦିନେ ରାତ୍ରି ୩ଟା ସମୟରେ ପାଇଖାନା ଭିତରୁ ମଳ ପାତ୍ର ନେଇ ଉଠି ଆସୁଛି, ଠିକ୍ ସେହି ସମୟରେ ଜଣେ ଲୋକ ଝାଡ଼ା ଫେରିବା ପାଇଁ ସେହି ପାଇଖାନାକୁ ଆସିଲେ, ମୋତେ ପାଇଖାନାରୁ ମଳଥିବା ମାଟି ପାତ୍ରଧରି ଉଠି ଆସିବାର ଦେଖି ସେହି ଲୋକ ସ୍ତମ୍ଭିତ ହୋଇଗଲା। ଦୌଡ଼ି ଆଶ୍ରମରେ ଯାଇ ସମସ୍ତ ଲୋକଙ୍କୁ ଡାକି ଏକଥା କହିଲେ, ମୁଁ ସେହି ମଳ ନେଇ ପଦ୍ମା ନଦୀରେ ପ୍ରକାଇ ଦେଲି। କିନ୍ତୁ ସେହି ଦିନ ଠାରୁ ଆଉ କେହି ସେହି ପାଇଖାନାରେ ଝାଡ଼ା ଫେରିବାକୁ ଗଲେ ନାହିଁ। ଏହି କଥା ଶୁଣି ମୁଁ ଶ୍ରୀଶ୍ରୀ ଠାକୁରଙ୍କୁ ପଚାରିଲି– ଠାକୁର! କର୍ତ୍ତବ୍ୟ ବୋଧରେ ବା ଆଶ୍ରମର Sanity ବା ପବିତ୍ରତା ରକ୍ଷା କରିବା ପାଇଁ ଆପଣ ଏହି କର୍ମ କଲେ। କିନ୍ତୁ ନିଶ୍ଚୟ ମନେ ମନେ ଆପଣଙ୍କୁ ଘୃଣା ଲାଗିଥିବ। ଶ୍ରୀଶ୍ରୀ ଠାକୁର କହିଲେ– ନା, ବରଂ ଠିକ୍ ତାର ଓଲଟା। ମୋତେ ଏହା କରିବାକୁ ବହୁତ ତୃପ୍ତି ଲାଗୁଥିଲା। ମୁଁ ଭାବୁଥିଲି ଏହି ମଳ ଏଠାରେ ଜମିବାରୁ କେତେ ଲୋକର କେତେ ଅସୁବିଧା ହେଉଥିଲା। ଆଉ କିଛି ଦିନ ପରେ ହୁଏତ ସେହି ପାଇଖାନାକୁ ଯିବା ଅସମ୍ଭବ ହୋଇଥାନ୍ତା। ପବନରେ ବଦ୍‌ଗନ୍ଧ ଭାସି ଆସି ସମସ୍ତଙ୍କୁ ଅସୁବିଧା କରୁଥିଲା। ଏହି ସବୁ ଅସୁବିଧାର ନିରାକରଣ କରିବାର ଗୋଟିଏ ପନ୍ଥା ଆବିଷ୍କାର କରି ପାରି ମୋର ତୃପ୍ତି ଆସିଲା। ଭଲ ଲାଗିଲା। ମୁଁ କହିଲି–ଠାକୁର! ଏସବୁ କଥା ଠିକ୍। କିନ୍ତୁ ପଚା ମଳର ଦୁର୍ଗନ୍ଧ, ସେ କିପରି ଭଲ ଲାଗିପାରେ ? ଶ୍ରୀଶ୍ରୀ ଠାକୁର କହିଲେ– ଦୁର୍ଗନ୍ଧ ଦୁର୍ଗନ୍ଧ ହିଁ। ମା ଯେତେବେଳେ ସନ୍ତାନର ମଳମୂତ୍ର ସଫା କରେ ସେତେବେଳେ ତାଙ୍କ ଆଗରେ ବଦ୍‌ଗନ୍ଧ ଇତ୍ୟାଦି ବଡ଼ ହୋଇ ଉଠେ ନାହିଁ। ବଡ଼ ହୋଇ ଉଠେ ସ୍ନେହ। ମାୟା, ମମତା, ପ୍ରୀତି ଓ ପ୍ରେମ। ବରଂ ଦିନେ ଛୁଆ ଯଦି ଝାଡ଼ା ନ ଫେରିବ ମା' ଉତ୍କଣ୍ଠିତ ହୋଇ ଉଠେ– ଛୁଆର ଦେହ ଖରାପ ହେଲା କି? କାହିଁକି ସେ ଝାଡ଼ା ଗଲା ନାହିଁ? କଦାପି ସେ ଭାବେନା– ଛୁଆ ଝାଡ଼ା ନ ଫେରିଛି, ଭଲ ହୋଇଛି। ମୋର ଆଜି ମଳ ପକାଇବାକୁ ହେଲା ନାହିଁ। ତାହାରି ପାଇଁ ତ ମୁଁ ସବୁବେଳେ କହୁଛି–ପ୍ରଣୟ ପରମ ବେଦ। ପ୍ରଣୟ ହେଲେ, ଭଲ ପାଇଲେ ଜୀବନର ସବୁ କିଛି adjusted ହୋଇ ଉଠେ, ଯାହାକୁ ଭଲ ପାଏ ତାହାରି ପରି ହେବା ପାଇ ପ୍ରାଣ କାନ୍ଦେ। ବିସ୍ମିତ ହେବାର 'ପାଲା ମୋର ବହୁ ପୂର୍ବରୁ ସରିଛି। କ୍ରମାଗତ ଚିର ନବୀନ ହୋଇ ଉଠୁଛନ୍ତି ଠାକୁର ମୋ ଆଗରେ। ଏହାହିଁ କ'ଣ ଈଶ୍ୱରଙ୍କର ଅନନ୍ତରୂପ ଯାହାର କି

ଅନ୍ତ ନାହିଁ? ତହିଁ ଆରଦିନ ସକାଳେ ସର୍ବ ସମକ୍ଷେ ଶ୍ରୀ ଶ୍ରୀ ଠାକୁରଙ୍କୁ ମୁଁ କହିଲି– ଠାକୁର! ଏଠାରେ ଯେତେ ଲୋକ ବସିଛନ୍ତି। ଏହାରି ଭିତରେ କେହି କ'ଣ ଥିଲେ ଯେ, ସେ ପାଇଖାନାରେ ପାଇଖାନା କରୁଥିଲେ? ଶ୍ରୀଶ୍ରୀ ଠାକୁର ହସି କହିଲେ– ଅନେକ ଥିଲେ। ଉପସ୍ଥିତ ବସିଥିବା ମା'ମାନଙ୍କ ଭିତରେ କାଳୀଷଷ୍ଠୀମା' (ପୂର୍ଣ୍ଣ ସାହାଦାଙ୍କ ସ୍ତ୍ରୀ) ପଚାରିଲେ– କେଉଁ ପାଇଖାନା? ମୁଁ ଗତ ରାତ୍ରିର ଘଟଣା ଉପସ୍ଥିତ ସମସ୍ତଙ୍କୁ କହିଲି। କାଳୀଷଷ୍ଠୀମା' ଶୁଣି କହିଲେ– ମୁଁ ସେ ପାଇଖାନାରେ କେବେ ଝାଡ଼ା ଫେରି ନାହିଁ। ଶ୍ରୀଶ୍ରୀ ଠାକୁର ତାଙ୍କ ସ୍ୱରରେ' ସ୍ୱର ମିଳାଇ କହି ଉଠିଲେ– ସମସ୍ତେ କରିଛ ମନି, ସମସ୍ତେ କରିଛ। (ସମସ୍ତେ ଝାଡ଼ା ଫେରିଛ, ମନି, ସମସ୍ତେ ଝାଡ଼ା ଫେରିଛ)। ଶ୍ରୀଶ୍ରୀ ଠାକୁରଙ୍କର ଏହି ସୁଲଳିତ ଭଙ୍ଗୀରେ କଥା କହିବା ଶୁଣି ସମସ୍ତେ ହସି ଉଠିଲେ। ସମସ୍ତେ ହସୁଛନ୍ତି। ମୁଁ ଭାବି ଚାଲିଛି, ଠାକୁର, ସତ୍ୟ ତୁମେ ବିଶ୍ୱପିତା ନହେଲେ କଦାପି କ'ଣ ସମ୍ଭବ ହୋଇଥା'ନ୍ତା ଏପରି ଭାବେର ସନ୍ତାନର ସେବା କରିବା।

''ସେବାର ଜ୍ୟୋତି ଅନଳ ଜାଳ
ଇଷ୍ଟ ସ୍ୱାର୍ଥରେ ହୃଦୟ ଢାଳ।''

—ଶ୍ରୀଶ୍ରୀ ଠାକୁର।

## ।। ସାତ ।।

ଆହୁରି ଦିନକର କଥା ମନେ ପଡୁଛି। ଦିନ ୩ଟା। ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଆମ୍ଭେ ସମସ୍ତେ ବସିଛୁ। ଦଶ ପନ୍ଦର ଜଣ। ଠାକୁରଙ୍କର ସେବକ ସେବିକା ମଧ୍ୟ ସେଠାରେ ଉପସ୍ଥିତ। କିଏ କାହା ପୂର୍ବେ ଗୁଡ଼ାଖୁ ଆଣି ଠାକୁରଙ୍କୁ ଦେବେ, କିଏ କାହା ପୂର୍ବେ ପାଣି ଦେବେ, କେହି ବା ଗୁଆ ଦେବେ, କେହିବା ହାତ ପୋଛିବା ପାଇଁ ଗାମୁଛା ଦେବେ, ସମସ୍ତେ ଚାହୁଁଛନ୍ତି ସମସ୍ତଙ୍କର ଆଗରେ ନିଜେ ଯାଇ କରିବା ପାଇଁ। ନିଜ ଭିତରେ ଭିତରେ ଏକ ବିରାଟ ପ୍ରତିଯୋଗିତାର ପାଲା ଚାଲିଛି। ଉପସ୍ଥିତ କେହି କେହି ଭକ୍ତ ଠାକୁରଙ୍କୁ ଈଶ୍ୱରତ୍ୱ ସମ୍ବନ୍ଧରେ ପ୍ରଶ୍ନ କରୁଛନ୍ତି ଏବଂ ଠାକୁର ଯେ ଭଗବାନ, ତାଙ୍କ କଥାରେ ମଧ୍ୟ ସେ କଥା ବ୍ୟକ୍ତ ହୋଇ ପଡ଼ିଛି। ଏହି ସମୟରେ ଖବର ଆସିଲା— କ୍ଷାନ୍ତମଣି ଦେବୀ, ଭଲ ଭାଗବତ ରାମାୟଣ ଗାୟକ ଆସିଛନ୍ତି ଆଶ୍ରମରେ ଭାଗବତ ଗାନ କରି ଶୁଣାଇବେ ବୋଲି। ବରାଲ–ବାଂଲାର ସମ୍ମୁଖସ୍ଥ ପ୍ରାଙ୍ଗଣରେ (ସେତେବେଳେ କୌଣସି ଘର ନଥାଏ) ସାମିୟାନା ଟଙ୍ଗା ହୋଇଛି। କ୍ଷାନ୍ତମଣି ଦେବୀ ଓ ତାଙ୍କର ସ୍ୱାମୀ ସେଠାରେ ଆସି ବସିଛନ୍ତି। ବଡ଼ ମା' ତାଙ୍କ ଘରୁ ବାହାରି ଆସି ବରାଲ–ବାଂଲା ବାରନ୍ଦାରେ ଚେୟାର ବିଛାଇ ବସିଛନ୍ତି, ଭାଗବତ ପାଠ ଶୁଣିବେ ବିଶେଷ କରି କ୍ଷାନ୍ତମଣି ଦେବୀଙ୍କର ସୁଲଳିତ କଣ୍ଠରେ। ମାଇକ୍ ପ୍ରସ୍ତୁତ କରା ହୋଇଛି। ଭାଗବତ କୀର୍ତ୍ତନ ଆରମ୍ଭ ହେଲା। ଆଶ୍ରମର ସମସ୍ତ ଲୋକ ସେଠାରେ ଜମା ହୋଇ ପଡ଼ିଲେ। ଧୀରେ ଧୀରେ ଠାକୁର ଘର ଶୂନ୍ୟ ହୋଇ ପଡ଼ିଲା। କୀର୍ତ୍ତନ ଆରମ୍ଭ ହେବାର କିଛି ସମୟ ପରେ ଦେଖାଗଲା ଶ୍ରୀଶ୍ରୀ ଠାକୁରଙ୍କୁ ଗୁଡ଼ାଖୁ, ପାନ, ଗୁଆ, ପାଣି, ଗାମୁଛା ଇତ୍ୟାଦି ଦେବା ପାଇଁ ସେଠାରେ ଆଉ କେହି ନାହିଁ। ଖଟ ଉପରେ ଠାକୁର ବସିଛନ୍ତି, ତଳେ ମୁଁ ବସି ରହିଛି, ଠାକୁର ମୋ ଆଡ଼କୁ ବହୁ ସମୟ ଧରି ଏକ ଦୃଷ୍ଟିରେ ଅନାଇ ରହି ମୋତେ କହିଲେ— ତୁ ଗଲୁ ନାହିଁ ଭାଗବତ ପାଠ ଶୁଣିବାକୁ? ମୁଁ କହିଲି— ଠାକୁର ! ମୁଁ ଭାଗବତ ପାଠ ବହୁତ ଶୁଣିଛି, ହୁଏତ ଆହୁରି ବହୁତ ଶୁଣିବି। କିନ୍ତୁ ସ୍ୱୟଂ ଭାଗବତ–ଭଗବାନଙ୍କୁ ଦେଖିବାର, ତାଙ୍କର ଶ୍ରୀମୁଖରୁ କଥା ଶୁଣିବାର ଆଉ ତ ସୁଯୋଗ ପାଇବି ନାହିଁ। ତେଣୁ ଆପଣଙ୍କୁ ଛାଡ଼ି

ମୁଁ ଆପଣଙ୍କ ପୂର୍ବ ଜୀବନର କାହାଣୀ ଶୁଣିବାକୁ ଯିବି କାହିଁକି? ମୋ ଜୀବନରେ ଯଦି କିଛି ମଙ୍ଗଳ ଆସେ ତାହା ଆସିବ ଆପଣଙ୍କ ମାଧ୍ୟମରେ ଯେତେ ପର୍ଯ୍ୟନ୍ତ ଆପଣ ଏହି ପୃଥିବୀରେ ରକ୍ତମାଂସ ସଙ୍କୁଳ ନର ଦେହ ଧରି ଅଛନ୍ତି। ମୋର ମନ ଏ ସୁଯୋଗ ଛାଡ଼ି ଆଉ କେଉଁଠି ଯିବାକୁ ଚାହୁଁ ନାହିଁ। ଶ୍ରୀଶ୍ରୀ ଠାକୁର କହିଲେ— ତୋର କଥାଟି ଭାରି ଖାଣ୍ଟି। ଟିକିଏ ଆଗରୁ ଏଠାରେ ବସି ଶୁଣୁଥିଲୁ ତ ସେମାନେ ବସି କେତେ କ'ଣ ନ କହୁଥିଲେ। ଅଟିକା ମୋତେ ଟିକିଏ ପାଣି ଦେବାପାଇଁ ମଧ୍ୟ କେହି ନାହିଁ। ମନୁଷ୍ୟ ବେଶି ଭାଗହିଁ ଏଇ ଭାବର ଘୁଘୁ (କପୋତ ପକ୍ଷୀ)। ଭାବରେ ବହୁତ କିଛି କିନ୍ତୁ କର୍ମ ଭିତରେ ବା ଆଚାର ଆଚରଣରେ ନାହିଁ। ଏହାପରେ ଠାକୁର କହିଲେ— ଲଗାଓ ଏକ ଚିଲମ ତମାଖୁ। ଅର୍ଥାତ୍ ଯାଓ, ଗୁଡ଼ାଖୁରେ ନିଆଁ ଦେଇ ଆଣ, ମୁଁ କଳକିରେ ଗୁଡ଼ାଖୁ ଭରି ନିଆଁ ଦେଇ ଆଣି ଠାକୁରଙ୍କୁ ଦେଲି। ଠାକୁର ନଳ ଧରି ମୁହଁରେ ଦେଇ ଗୁଡ଼ାଖୁ ଟାଣିବାକୁ ଲାଗିଲେ। ମଝିରେ ମଝିରେ ହସି ହସି ଉଠୁଥିଲେ। ସାଙ୍ଗେ ସାଙ୍ଗେ ତାଙ୍କ ପେଟଟି ଫୁଲି ଫୁଲି ଉଠୁଥିଲା। ମୁହଁରୁ ନଳଟି ବାହାର କରି କହିଲେ— ଦେଖ ସବୁ, ବୁଝ ସବୁ, ଆଉ ଲାଗିପଡ଼ ସତ୍ୟ ଅନୁସନ୍ଧାନରେ। ଖୋଜ ସେହି ଲୋକ ଯେ ଜାଣେନା ଜୀବନରେ ରାମ ଛଡ଼ା ଆଉ କାହାକୁ। ଏହା ନହେଲେ କାମ ହେବ ନାହିଁ। ମୁଁ ଯାହା କିଛି ଦେଇଗଲେ ମଧ୍ୟ କିଛି ରହିବ ନାହିଁ। (ଆମି ମାନୁଷ ଚାୟି) ମୁଁ ମନୁଷ୍ୟ ଚାହେଁ, ଏବଂ ସେହି ମନୁଷ୍ୟ ଯେ କି ଏହି ପାର୍ଥିବ ଜଗତର ସବୁ କିଛିର ପ୍ରଲୋଭନର ଉର୍ଦ୍ଧ୍ୱରେ ରହି ଇଷ୍ଟ ପାଖରେ ଜୀବନକୁ ବଳି ଦେଇ ହୋଇଉଠିବ ମହାବଳେ ବଳୀୟାନ, ଯେପରି ହନୁମାନ। ମୁଁ ଦେଖିଲି— ହଜାର, ହଜାର କାହିଁକି ଲକ୍ଷ, ଲକ୍ଷ ଲୋକ ଆସୁଛନ୍ତି ଠାକୁରଙ୍କ ପାଖରେ, ଠାକୁର ଚାହିଁ ବସିଛନ୍ତି ସେହି ଶୁଦ୍ଧାତ୍ମା ସମ୍ବଳିତ ମନୁଷ୍ୟକୁ ଯାହା ଜୀବନରେ ଇଷ୍ଟ ବ୍ୟତୀତ ଆଉ କିଛି ନଥିବ। କିନ୍ତୁ ଠାକୁର ଇଚ୍ଛା କରିଲେ ସେପରି କେହି ଯଦି ପୃଥିବୀରେ ଥାଏ ମୁହୂର୍ତ୍ତକେ ଆଣି ଉପସ୍ଥିତ କରି ପାରନ୍ତି। ତଥାପି କାହିଁକି ତାଁ'ର ଏଇ ପ୍ରତୀକ୍ଷା? ଏପରି ଭାବୁଛି, ଏଇ ପ୍ରତୀକ୍ଷା ଆମ୍ଭମାନଙ୍କ ପାଇଁ, ବିଭିନ୍ନ ପ୍ରକାରରେ, ବିଭିନ୍ନ ଭାବରେ ଆମ୍ଭମାନଙ୍କୁ ହୋଇ ଉଠିବାକୁ କହୁଛନ୍ତି ସେହି ଇଷ୍ଟସ୍ୱାର୍ଥୀ—ନିଷ୍ଠାପରାୟଣ ବ୍ୟକ୍ତି ରୂପେ। କିନ୍ତୁ ଆମେ କ'ଣ ଶୁଣୁଛୁ ତା'ର କଥା? ବୁଝିବାର ଚେଷ୍ଟା କରୁଛୁ

ତାଙ୍କୁ? ଆମେ ଖୋଜି ଚାଲିଛୁ ନିଜକୁ ବାଦ ଦେଇ ଠାକୁରଙ୍କର ନିର୍ଦ୍ଦେଶିତ ସେହି ଲୋକକୁ। ନିଜେ ମୂର୍ଖ ହୋଇ ମହା ପଣ୍ଡିତକୁ ଖୋଜି ବୁଲୁଛୁ। ମୂର୍ଖ କିପରି ଚିହ୍ନିବ ମହା ପଣ୍ଡିତଙ୍କୁ? ତେଣୁ ନିଜେ ପଣ୍ଡିତ ହୁଅ। ମହା ପଣ୍ଡିତ ହୁଅ, ଏହାହିଁ ଥିଲା ଠାକୁରଙ୍କର ନିର୍ଦ୍ଦେଶ। ତାହାହେଲେ ଆଉ ଖୋଜିବାକୁ ହେବ ନାହିଁ ମହା ପଣ୍ଡିତଙ୍କୁ, ନିଜ ଭିତରେ ଆବିଷ୍କାର କରି ପାରିବ ସେହି ଈଶ୍ୱର କୋଟୀ ଲୋକକୁ। କିନ୍ତୁ ଆମ୍ଭେ କେହି ଅନାଇଲୁ ନାହିଁ, ଶୁଣିଲୁ ନାହିଁ, ତାଙ୍କ କଥା, କେହି ନିଜର ଚରିତ୍ର ଉପରେ ହାତ ଦେଲୁ ନାହିଁ, ନିଜେ ସାଧନାରେ ନିଷ୍ଠାବାନ୍ ହୋଇ ଉଠି ପାରିଲୁ ନାହିଁ। ଆଜି ଠାକୁରଙ୍କର ତିରୋଧାନ ପରେ ଉପଲବ୍ଧି କରୁଛି କ'ଣ ପାଇଥିଲି ଆଉ କ'ଣ ହରାଇଲି। ଯାହା ହରାଇଲି ତାହାର ପରିପୂରଣ ଆଉ କ'ଣ କେବେ କେହି ଜନ୍ମରେ ହେବ କି?

''ସତ୍ ଓ ଶ୍ରେଷ୍ଠ ଆଶ୍ରୟ ଯାର
ଉନ୍ନତି ହୁଏ ଅବାଧ ତା'ର।''

—ଶ୍ରୀଶ୍ରୀ ଠାକୁର

## ॥ ଆଠ ॥

ସାଧାରଣତଃ ଦେଖାଯାଏ ମଣିଷ ନିର୍ବିବାଦରେ କାହାରି କଥା ମାନି ଚାଲିବାକୁ ଚାହାଁନ୍ତି ନାହିଁ। ବିଶେଷ କରି ମୋ ଭିତରେ ଏଇ ଭାବର ପ୍ରାଧାନ୍ୟ ଅତ୍ୟଧିକ। କେହି କିଛି କହିଲେ ତାହା କେତେଦୂର ସତ୍ୟ, ବିଚାର ବିବେଚନା କରି ତାପରେ ପାଦ ବଢ଼ାଉଥିଲି। ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଆସିଲେ ମଧ୍ୟ ଏଇ ଚରିତ୍ର ନେଇ। ଅଜ୍ଞାନ ଅବିବେକୀ ସନ୍ଦେହାକୁଳ ମନ ନେଇ ବିଚାର କରିବାକୁ ବସିଲି ଶ୍ରୀଶ୍ରୀ ଠାକୁରଙ୍କ କଥା। ପ୍ରତିଟି ଲୋକ କହନ୍ତି ମୋତେ ଦାମ୍ଭିକ। କିନ୍ତୁ ଆଶ୍ଚର୍ଯ୍ୟ ହୋଇ ଦିନେ ଦେଖିଲି, ନିର୍ବିଚାରରେ ମନ ମାନି ନେଉଛି ଶ୍ରୀଶ୍ରୀ ଠାକୁର ଯେତେବେଳେ ଯାହା କହୁଛନ୍ତି ତାକୁ ପାଳନ କରିବାପାଇଁ ତା' ବୋଲି ମୁଁ ନିଜ ଉପରେ ନିଜେ ଯେ ସତର୍କ ଦୃଷ୍ଟି ନ ରଖୁଛି ତାହା ନୁହେଁ, ସବୁବେଳେ ମୁଁ ଭାବୁଛି ଠାକୁରଙ୍କ ପ୍ରଭାବରେ ପ୍ରଭାବିତ ହେବି ନାହିଁ। କିନ୍ତୁ ଶ୍ରୀଶ୍ରୀ ଠାକୁର ଯେତେବେଳେ ଯାହା କହୁଛନ୍ତି ଅନ୍ତର କିପରି ମାନି ନେଉଛି, ଏକାନ୍ତ ତାହା ମୋର ନିଜର କଥା ବୋଲି। ଯାହାକି ମୋର ଅନ୍ତର ଭିତରେ ଅନ୍ତର୍ନିହିତ ହୋଇ ରହିଥିଲା, ଏବେ ଠାକୁରଙ୍କ ପାଖରୁ ଶୁଣିଲା ପରେ ମୋର ମନେ ହେଲା— ମୁଁ ଏହାହିଁ ତ ଚାହୁଁଥିଲି। ଏହି ତ ମୋର ଅନ୍ତରର କଥା, କିପରି ସେ ଜାଣିଲେ? ଖାଲି ଜାଣିବା ନୁହେଁ, ମୋହରି କଥା, ମୋହରି ଭାଷା, କିପରି ତାଙ୍କ ମୁହଁରୁ ବାହାରି ଆସୁଛି। ଏହା ଦେଖି ଲାଗିଯାଏ ତାଙ୍କରି କଥା ଅନୁସରଣ କରିବାରେ। ଧୀରେ ଧୀରେ କିପରି କେଉଁ ଦିନ କେତେବେଳେ ମୋର ଚିରଦିନର ବଦ ଅଭ୍ୟାସ, ବ୍ୟବହାର, ଭାଷା ଓ ଭାବକୁ ପାଲଟି ଦେଲେ ବୁଝି ପାରିଲି ନାହିଁ। ନିଦ୍ରା ଯାହାକି ମୋର ଅତି ପ୍ରିୟ ବସ୍ତୁ, ଦିନ ରାତି ଭିତରେ ଦଶ ବାର ଘଣ୍ଟା କଟୁଥିଲା ମୋର ନିଦ୍ରାରେ, ସେଇ ନିଦ୍ରା ୨୪ ଘଣ୍ଟା ଭିତରେ ୩ ଘଣ୍ଟାରୁ ୪ ଘଣ୍ଟା ଭିତରେ ଆସି ନିୟନ୍ତ୍ରିତ ହୋଇ ପଡ଼ିଲା, କିନ୍ତୁ ଦିନେ ହେଲେ ମଧ୍ୟ ଠାକୁର କେବେ କହି ନାହାନ୍ତି ନିଦ୍ରା ନିୟନ୍ତ୍ରଣ କରିବା ପାଇଁ, ନ କହିଥିବା ନିର୍ଦ୍ଦେଶ ଯେ କେତେ ଶକ୍ତିଶାଳୀ ତାହା ଭାଷାରେ ପ୍ରକାଶ କରି ହୁଏ ନାହିଁ। ତମ ଗୁଣାଶ୍ରିତ ଆସୁରିକ ଆହାରରେ ଅଭ୍ୟସ୍ତ ବ୍ୟକ୍ତି ମୁଁ, ମାଛ, ମାଂସ, ପିଆଜ, ରସୁଣ, ଅଣ୍ଡା, ନହେଲେ ମୋର ଦିନ ଚାଲେ ନାହିଁ, ଖାଲି ଚାଲେ ନାହିଁ ନୁହେଁ, ଅପର୍ଯ୍ୟାପ୍ତ ପ୍ରୟୋଜନ ହୁଏ। ସେଇ

ବ୍ୟକ୍ତି ମୁଁ, କେତେବେଳେ କେଉଁଦିନେ କି ଭାବରେ ସାତ୍ତ୍ୱିକ ଆହାର ମୋର ପ୍ରିୟ କରି ଉଠାଇଲେ କୌଣସି ନିଷେଧ ବା ବାଧ୍ୟ ବାଧକତା ନକରି, ସେ ଏକ ଅତୀବ ଆନନ୍ଦଦାୟକ ଓ ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ। ମାନିବି ନାହିଁ ବୋଲି ଯାହା ପାଖକୁ ଆସିଥିଲି, ତାହା ମୁହଁରୁ ଗୋଟିଏ କଥା ଶୁଣିବା ପାଇଁ, ଟିକିଏ ହସ ଦେଖିବା ପାଇଁ ଏମିତି କି ତାଙ୍କର ଟିକେ ଚାହାଣି ପାଇଁ ଘଣ୍ଟା ପରେ ଘଣ୍ଟା, ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ଅପେକ୍ଷା କରି ରହିଲି। ଏଇ ଯେ ତିତିକ୍ଷା, ଏଇ ଯେ ମାନିବାର ଭାବ, ଏଇ ଯେଉଁ ସଂଯମ, କେଉଁଦିନ କେତେବେଳେ ଠାକୁର ମୋ ଭିତରେ ପୂରାଇ ଦେଇଛନ୍ତି ଜାଣି ପାରିନାହିଁ। ମୋର ସାମାଜିକ ଜୀବନର କର୍ମ ଠିକାଦାରୀ ଓ ବ୍ୟବସାୟ, ଯାହା ଛାଡ଼ି ମୁଁ କେବେ ଆତ୍ମୀୟ ସ୍ୱଜନ ଘରେ ଦିନେଠାରୁ ଦୁଇ ଦିନ ରହି ନାହିଁ। ମୋର ନିଜେ ସୃଷ୍ଟି କରିଥିବା ଯାହା କିଛି ଘର ସଂସାର, ବ୍ୟବସାୟ ବାଣିଜ୍ୟ, ସବୁ କିଛି ରଖି ଦିନକ ପାଇଁ ଯାଇଥିଲି ଶ୍ରୀଶ୍ରୀ ଠାକୁରଙ୍କ ଡାକରା ପାଇକି, ସେଠାରେ ବିତିଗଲା ମୋର ବର୍ଷ ପରେ ବର୍ଷ। ଦିନେ ହେଲେ ଠାକୁର ମୋତେ କିଛି ହେଲେ ଛାଡ଼ିବାକୁ କହି ନାହାନ୍ତି। କିନ୍ତୁ ସବୁ ମୁଁ ଛାଡ଼ିଦେଲି କିମ୍ବା ସମସ୍ତେ ମୋତେ ଛାଡ଼ିଗଲା, ତାଙ୍କର ସେଇ ଗୋଟିଏ କଥା, ''ତୁ ରହିଲେ ମୋତେ ଭଲ ଲାଗେ'', ନିଷେଧ ନାହିଁ, ଆଦେଶ ନାହିଁ, ମୁଁ ବୋଧ କରୁଥିଲି ତାଙ୍କ ଅନ୍ତରର ଦରଦଭରା ଟାଣ, ଯେଉଁ ଟାଣରେ ଭାସିଗଲା ଘର ସଂସାର ବ୍ୟବସାୟ ବାଣିଜ୍ୟ, ଅର୍ଥ ସଂପଦ, ଲଙ୍ଗା ହୋଇ ପଡ଼ିଲି, ଏଇ ସଂସାରର ଯାହା କିଛି କୃତ୍ରିମ ଆବରଣ ସବୁ ଖସାଇ ଦେଲେ, କିପରି କି ଭାବରେ ଏହା ସମ୍ଭବ ହେଲା, କେବେହେଲେ ଭାବି ମୁଁ ତାହାର କୂଳ କିନାରା କିଛି ପାଇ ନାହିଁ। କିନ୍ତୁ ଏସବୁ ବାସ୍ତବରେ ହୋଇଛି ମୋର ଜୀବନରେ। ତେଣୁ ଅସ୍ୱୀକାର କରିବାର କୌଣସି ବାଟ ନାହିଁ, ପ୍ରେମର ଟାଣ ଯେ କେତେ ଦୁର୍ବାର, କେତେ ଶକ୍ତିମାନ୍, ଯେତେବେଳେ ଟିକେ ଦେଖିବାର ସୌଭାଗ୍ୟ ଆସିଲା ସେତେବେଳେ ଦେଖିଲି, ମୋତେ ନବଜନ୍ମ ଦେଇ ରୂପାୟିତ କରିଛନ୍ତି ଯେଉଁ ଲୋକଟି ସେହି ମୋର ମନର ମଣିଷ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର। କେହି କହନ୍ତି ଭଗବାନ, କେହି କହନ୍ତି ଅବତାର ଏବଂ ତାଙ୍କ ନିନ୍ଦା ବି ବହୁତ ଲୋକ କରନ୍ତି। କିନ୍ତୁ ମୋ ପାଖରେ ସେ ଅପରିହାର୍ଯ୍ୟ ମନର ମଣିଷ, ଯାହାର କି ଅସାଧ୍ୟ ବୋଲି କିଛି ନାହିଁ। ମନେ ପଡ଼ିଲା ସେ ଦିନର କଥା, ଯେଉଁ ଦିନ ତାଙ୍କ ପାଖରେ ଉପସ୍ଥିତ ହୋଇ ମୁକ୍ତି ମାଗିଥିଲି। ଶ୍ରୀଶ୍ରୀ ଠାକୁର ହସି ହସି କହିଥିଲେ, ଯାହା ଚାହିଁବ– ତାହାହିଁ ପାଇବ।

"ଯା ଦୃଶି ଭାବନା ଯସ୍ୟ, ସିର୍ଦ୍ଧିର୍ ଭବତି ତାଦୃଶି"।

ତେଣୁ ଲକ୍ଷ୍ୟ ସ୍ଥିର ରଖି ଠିକ୍ କର କ'ଣ ଚାହୁଁଛ? ମୁକ୍ତି ଅର୍ଥ କ'ଣ ନ ବୁଝି ଲୋକ ମୁଖେ ଶୁଣିଥିବା ମୁକ୍ତି ଯେଉଁଦିନ ମାଗିଥିଲି, ତାହା ପରଠାରୁ ଠାକୁର ଧୀରେ ଧୀରେ ସବୁ କିଛିଠାରୁ ଦୂରରେ ରଖି, ବାସ୍ତବରେ ମୁଁ ମୁକ୍ତି ଚାହୁଁଛି କି ନାହିଁ ସେ ସମ୍ବନ୍ଧରେ ମୋର ବୋଧ ଜାଗ୍ରତ କରି ଉଠାଇଲେ। ମୋର ମନେ ପଡ଼େ ଯେଉଁଦିନ ମୋର ସବୁ ଚାଲିଗଲା, ଶ୍ରୀଶ୍ରୀ ଠାକୁରଙ୍କୁ କହିଲି, "ଠାକୁର! ମୁଁ ସହ୍ୟ କରିପାରୁ ନାହିଁ। ନିଜ ହାତରେ ଯାହା କିଛି ତିଳ ତିଳ କରି ଗଢ଼ିଥିଲି ସବୁ ଯେ ଚାଲିଗଲା। କିପରି ମୁଁ ଏ ଜଗତରେ ବଞ୍ଚି ରହିବି? କିପରି ବଞ୍ଚିବେ ସେହିମାନେ ଯେଉଁମାନେ ମୋ ଉପରେ ନିର୍ଭରଶୀଳ। ଠାକୁର ସ୍ଥିର ଦୃଷ୍ଟିରେ ଅନାଇ ରହିଥିଲେ ମୋର ଆଖିକୁ, ସେହି କରୁଣାଘନ ଦୃଷ୍ଟି ଭିତରେ ମୁଁ ଦେଖିଲି କେତେ ବେଦନା ମୋ ପାଇଁ, ତାଙ୍କର ନ କହିଥିବା ଭାଷାରୁ ମୁଁ ବୁଝିପାରିଲି ଜଗତର ସତ୍ୟକୁ ଜାଣିବାକୁ ହେଲେ କେତେ କଠିନ କ୍ଷୁର ଧାର ପଥ ଉପରେ ଚାଲିବାକୁ ପଡ଼େ। ତାଙ୍କର ଚାହାଣୀ ଆଉ ମୂକ ଭାଷା ମୋର ମନରେ ଆଣିଦେଲା ଶାନ୍ତି, ତୃପ୍ତି। ପୁଣି ଆଗେଇ ଚାଲିଲି।

ବର୍ଷ ପରେ ବର୍ଷ ବିତିଗଲା। ଆହାର, ବାକ୍ ଓ ଲୋଭ ଇତ୍ୟାଦି କେତେବେଳେ ସଂଯମିତ କରି ଉଠାଇଛନ୍ତି ତାଙ୍କର ନିପୁଣ ହସ୍ତରେ ତାହା ମୁଁ ନିଜେ ଜାଣି ପାରିଲି ନାହିଁ। ଅସ୍ଥିର ମନକୁ ସ୍ଥିର କରି ଆଣିଛନ୍ତି। ମୋ ପାଖରେ ଧରା ପଡ଼ିଲା ସେହିଦିନ, ଯେଉଁଦିନ ଠାକୁର ରାତି ୧୧ଟା ବେଳେ ମୋତେ ଡାକି ତାଙ୍କ ନିକଟରେ ଧ୍ୟାନ କରିବାକୁ ବସାଇଲେ। ନାମ ଧ୍ୟାନ କରୁଛି। ଅସ୍ଥିର ମନକୁ କେନ୍ଦ୍ରିଭୂତ କରିପାରୁ ନାହିଁ। ସେତିକିବେଳେ ଠାକୁର ଡାକି ବସାଇଲେ, କହିଲେ– "ଏଠାରେ ବସି ଧ୍ୟାନ କର"। ତାଙ୍କର ଅପ୍ରତ୍ୟାଶିତ ଆଦେଶ ପାଇ ମନ ମୋର ଆନନ୍ଦରେ ନାଚି ଉଠିଲା। ଧ୍ୟାନ କରିବାକୁ ବସି କେତେବେଳେ ଚଞ୍ଚଳ ମନ ସ୍ଥିର ଏକାଗ୍ର ହୋଇ ଯାଇଛି ମୁଁ ଜାଣିପାରି ନାହିଁ। ଯେତେବେଳେ ଚେତନା ଫେରି ଆସିଲା, ସେତେବେଳେ ରାତ୍ରି ଚାରିଟା ବାଜି ଯାଇଛି। ପୌଷମାସର ଶୀତ ରାତ୍ରି, ଥଣ୍ଡା ବା ଗରମ କିଛି ଜାଣି ପାରି ନାହିଁ। ଆଖି ଫିଟାଇବା ସଙ୍ଗେ ସଙ୍ଗେ ଅନାଇ ଦେଖିଲି ମୋର ଚିର ସୁନ୍ଦର ମନର ମଣିଷ ଶ୍ରୀଗୁରୁ ଶ୍ରୀଶ୍ରୀ ଠାକୁର ଅନାଇ ରହିଛନ୍ତି ମୋ ଆଡ଼କୁ–ସେ'କି ଅବ୍ୟକ୍ତ ଆନନ୍ଦ। ଠାକୁର କହିଲେ, "ଉଠି ପଡ଼,

ହାତମୁହଁ ଧୋଇ ନିତ୍ୟକର୍ମ ସାରି ଦୁଇଘଣ୍ଟା ଶୋଇ ସାତଟା ଭିତରେ ଫେରି ଆସିବ।'' ରୁଦ୍ଧ ଦ୍ୱାରର କବାଟ ଫିଟାଇ ଦେଲେ ଠାକୁର– ପୂରାଇ ଦେଲେ ଧ୍ୟାନର ରାଜ୍ୟରେ, ବାରମ୍ବାର ଚେଷ୍ଟା କରି କୃତକାର୍ଯ୍ୟ ହୋଇ ପାରି ନଥିଲି, ପାଉ ନଥିଲି କୌଣସି ରସ। ଶୁଷ୍କ ସେଇ ରାଜ୍ୟ ଭିତରେ ବହି ଚାଲିଲା ଆନନ୍ଦର ପ୍ରସ୍ରବଣ। କ୍ରମାଗତ ତାଙ୍କରି ନିର୍ଦ୍ଦେଶରେ ମୋର ଅଜଣା ରାଜ୍ୟର ଦରଜା ଫିଟିବାକୁ ଲାଗିଲା। ଦେଖିଲି ବିଶ୍ୱନିୟନ୍ତା ସେଇ ମାଲିକ କୁଞ୍ଚିକାଠି ହାତରେ ଧରି ବୁଲୁଛନ୍ତି, ସମସ୍ତଙ୍କ ରୁଦ୍ଧଦ୍ୱାର ଫିଟାଇବା ପାଇଁ, କିନ୍ତୁ କିଏ ଚାହୁଁଛି? ସେହି ଦ୍ୱାର ଫିଟାଇବାକୁ ଚାହିଁଲେ ତ? ଚାହିଁବା ପାଇଁ ମଧ୍ୟ ସାଧନା ଦରକାର। ଦେଖିଲି ତାଙ୍କ ନିର୍ଦ୍ଦେଶରେ ଚାଲିଲେ, ଅନ୍ତତଃ ଚାଲିବାର ଇଚ୍ଛା କଲେ, ବାକି ସବୁ ସେଇ କରାଇ ନିଅନ୍ତି। ଆମେ ସାଧାରଣ ମଣିଷ। ଜାଣୁନା ଚାହିଁବାକୁ, ଜାଣୁନା ମାଗିବାକୁ। ସେଇ ସମୟରେ ଏମିତି ପ୍ରେମିକ ଇଷ୍ଟ ଗୁରୁ ବା ଭଗବାନ ନ ପାଇଲେ କିପରି ସାଧନା ସମ୍ଭବ। ବୃତ୍ତି, ପ୍ରବୃତ୍ତି ଯେଉଁଠି ଆମର ଚାଳକ, ସେଇ ବୃତ୍ତିମୁକ୍ତ ମନ କିପରି ବୃତ୍ତି ଭେଦ କରି ଆମକୁ ଆଗେଇ ନେଇ ଯିବ– ମୋର ଜୀବନରେ ଏଇ ଦୟାଳ ପୁରୁଷଙ୍କ ପାଇଁ ସମ୍ଭବ ହୋଇ ଉଠିଲା ଧର୍ମରାଜ୍ୟର କିଛି ଆଭାସ ପାଇବାରେ। କେତେ ସାଧୁ ସନ୍ନ୍ୟାସୀଙ୍କର ଦ୍ୱାରସ୍ଥ ହୋଇଥିଲି, ସେଇ ଅବ୍ୟକ୍ତ ଆନନ୍ଦ ରାଜ୍ୟର ସନ୍ଧାନ ପାଇବା ନିମନ୍ତେ; କିନ୍ତୁ ସର୍ବତ୍ର ପାଇଥିଲି ସାଧନାର ସଂଯମ, ନିୟନ୍ତ୍ରଣର ଉପଦେଶ। କେହି ମୋର ସାଥୀ ହୋଇ ଦୁଃଖ କଷ୍ଟର ଭାଗୀ ହୋଇ ମୋ ସଙ୍ଗରେ ଚାଲିକି ପଥ ଦେଖାଇବା ପାଇଁ ପ୍ରସ୍ତୁତ ନଥିଲେ। କିନ୍ତୁ ଏହି ମୋର ମନର ମନୁଷ୍ୟକୁ ଦେଖିଲି ବିଷ୍ଠା ଭିତରୁ ମୋତେ ଉଠାଇ ଧୋଇ ପୋଛି କୋଳେ ତୋଳି ନେଲେ। ପ୍ରତି ପଦକ୍ଷେପରେ ମୋତେ କରିନେଲେ ତାଙ୍କର ସାଥି। ଉପଦେଶ ଦେଲେ ନାହିଁ କିଛି– କିନ୍ତୁ ସବୁ କିଛି କରାଇଲେ ମନେପଡ଼େ ତାଙ୍କରି କଥା, ତାଙ୍କରି ବାଣୀ–

'ବିପାକ ପଥେ ହାତଧରେ ଯେ ଚଲାର କାଏଦା ଶିଖିଏ ଦେୟ।
ତାଙ୍କୁଇ ଜାନିସ ଗୁରୁ ବୋଲେ ତାକେ ପେଲେ ନାଇକୋ ଭୟ।'

ଭଗବାନ ରାମକୃଷ୍ଣ ଦେବ କହିଛନ୍ତି, ''ମାଙ୍କଡ଼ ଛୁଆପରି ଗୁରୁଙ୍କୁ ଧରିଲେ ହାତ ଖସିରି ଯିବାର ସମ୍ଭାବନା ରହିଛି, କିନ୍ତୁ ବିରାଡ଼ି ଛୁଆଙ୍କୁ ତାର ମା' କାମୁଡ଼ି ଧରି ନେଇଯାଏ– ତେଣୁ ଖସିରି, ଯିବାର ସମ୍ଭାବନା କେତେବେଳେ ନଥାଏ। ତେଣୁ ସଦ୍‌ଗୁରୁ ଯେ ସେ ବିରାଡ଼ି ଛୁଆପରି ତାଙ୍କର

ଶିଷ୍ୟଙ୍କୁ ହାତଧରି ନେଇଯାନ୍ତି। ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ସଦ୍‌ଗୁରୁ, ତାଙ୍କୁ ମଧ୍ୟ ଦେଖିଲି ଯେ ସେ ତାଙ୍କୁ ଆଡୁ ହାତ ବଢ଼ାଇ ରହିଛନ୍ତି ପ୍ରତିଟି ମଣିଷକୁ ନେଇଯିବା ପାଇଁ ଅଶାନ୍ତିରୁ ଶାନ୍ତିରେ, ଅଜ୍ଞାନ ଲୋକଠାରୁ ଜ୍ଞାନାଲୋକେ, ନିରାନନ୍ଦ ଧାମଠାରୁ ଆନନ୍ଦ ଧାମେ ଯାହାର ମୂଳରେ ରହିଛି ମଣିଷର ଚାହିଦା-ବଞ୍ଚିବା ଓ ବଢ଼ିବା (Being & becoming)। ମନୁଷ୍ୟର ପ୍ରତ୍ୟେକଟି ପଦକ୍ଷେପ ଭିତରେ, ପ୍ରତି ଆଚାର ଆଚରଣ ଭିତରେ, ଏକ କଥାରେ ପ୍ରତି ମୁହୂର୍ତ୍ତରେ ରହିଛି ସାଧନା ଓ ଆଉ ଏହି ସାଧନାରେ ସମସ୍ତେ ଲାଗି ରହିଛନ୍ତି। ସଦ୍‌ଗୁରୁର ଦୟା ହେଲେ ହିଁ ପ୍ରକୃତ ଉନ୍ନତି ବା ସାଧନ ପଥର ସନ୍ଧାନ ମିଳେ। ଆଉ ସଦ୍‌ଗୁରୁର ଦୟା ଆସେ ତାଙ୍କ ନିର୍ଦ୍ଦେଶିତ ପଥରେ ଚାଲିଲେ। ମୋର ପୂର୍ବ ଜୀବନର ଜାଣିଥିବା ଭାବନାଗୁଡ଼ିକ ସବୁ ମିଛ ବୋଲି ପ୍ରମାଣିତ ହେଲା। ଭାବୁଥିଲି, ଯେମିତି ସେମିତି ଜୀବନ ପରିଚାଳିତ କରି ଟିକିଏ ଈଶ୍ୱରଙ୍କ ନାମ, ଦାନ, ଧ୍ୟାନ ଇତ୍ୟାଦି କଲେ ହିଁ ଭଗବତ୍ ଦର୍ଶନ ଓ ଉପଲବ୍ଧି ହୋଇଯିବ, ଆଉ କିଛି ନିୟନ୍ତ୍ରଣର ପ୍ରୟୋଜନ ନାହିଁ। ସ୍ତ୍ରୀ ଲୋକଠାରୁ ଦୂରରେ ରହିଲେ ହିଁ ବ୍ରହ୍ମଚର୍ଯ୍ୟ ପାଳନ ହେବ ଏବଂ ବ୍ରହ୍ମଚର୍ଯ୍ୟ ପାଳନ ହେଲେ ଈଶ୍ୱର ଲାଭ ଅବଶ୍ୟମ୍ଭାବୀ। କିନ୍ତୁ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଆସି ଦେଖିଲି ସବୁଗୁଡ଼ା ଏକ ସୂତ୍ରରେ ଗ୍ରଥିତ– କାହାରିକୁ ବାଦ ଦେଇ କେହି ନୁହେଁ। ଗୋଟିଏ କିଛି କରିବାକୁ ଗଲେ– ସବୁ କିଛି ଠିକ ଠିକ୍ ନ କରିଲେ– କିଛି ହେବାର ସମ୍ଭାବନା ନାହିଁ। ମନେପଡ଼େ ଗୋଟିଏ ଗପ– ଜଣେ ବୈଦ୍ୟ ରୋଗୀକୁ କହିଥିଲେ ରୋଗ ତୁମର ଭଲ ହୋଇଯିବ। ଗୋଟିଏ ଗଛର ଫଳ ଖାଇଲେ ଗୋଟିଏ ଦିନ ଭିତରେ। କିନ୍ତୁ ସେ ଗଛ ଏ ଦେଶରେ ନାହିଁ। ଏହି ବୀଜ (seed) ଟି ମୋ ପାଖରେ ଅଛି ନେଇଯାଅ– ମାଟିରେ ପୋତି ଦେବ, ଗଛ ହୋଇ ଫଳ ଧରିଲେ ଖାଇବ। ରୋଗୀ ଫଳର ବୀଜ ଆଣି ମାଟିରେ ପୋତି ପାଣି, ସାର ଇତ୍ୟାଦି ଦେଇ ବୀଜରୁ ଅଙ୍କୁରୋଦ୍‌ଗମ କରି ଗଛ ଉଠାଇଲା। ତାର ସରୁ କାଣ୍ଡରୁ ଶାଖା ବିସ୍ତାର କରି ପତ୍ର ଶୋଭିତ ହୋଇ ଫୁଲରୁ ଫଳରେ ପରିଣତ ହେବାକୁ ତିନିବର୍ଷ ନେଲା। ତତ୍‌ପରେ ସେ ଗଛର ଫଳ ଖାଇ ରୋଗୀ ମୁହୂର୍ତ୍ତେ ସୁସ୍ଥ ହୋଇ ଉଠିଲା। ଏଇ ତିନିଟା ବର୍ଷ ଯେଉଁ ବିତିଗଲା ଯେଉଁ କର୍ମ ଭିତରେ, ଯେଉଁ ଏକାଗ୍ରତା ଓ ତିତିକ୍ଷା ଭିତରେ ଏବଂ କର୍ମଧାରାରେ ଏହାହିଁ ସାଧନା। ଏଇ ସାଧନାକୁ ବାଦ ଦେଇ ଆମେ ଯେତେବେଳେ ଫଳ ଆକାଙ୍କ୍ଷା କରୁଛୁଁ ସେତେବେଳେ ତାହା ଫଳ ଆକାରରେ ଆମ ପାଖରେ ନ ଆସି ନିଷ୍ଫଳ ଆକାରରେ ଆସି ଉପସ୍ଥିତ ହୁଏ। ଏଠାରେ

ଲକ୍ଷ୍ୟ କରିବାର ବିଷୟ ବୈଦ୍ୟ ରୋଗୀକୁ କିଛି ଦ୍ୱିନିବର୍ଷ ଲାଗିବ ବୋଲି କହି ନଥିଲେ, କହିଥିଲେ ଫଳଟି ଖାଇବାମାତ୍ରେ ଭଲ ହୋଇଯିବ। ତତ୍ ସଙ୍ଗେ ସଙ୍ଗେ ବୁଝାଇ ଦେଇଥିଲେ କିପରି ବୀଜଟି ପୋତିବାକୁ ହେବ, ପାଣି ଦେବାକୁ ହେବ; ନିଷ୍ଠାର ସହିତ ଗଛକୁ ଯତ୍ନ କଲେ ଫଳ ଅତି ସତ୍ୱର ଫଳିବ। ଅବହେଳା ବା ଉପେକ୍ଷା କଲେ ଗଛରେ ଫଳ ଫଳିବାକୁ ଡେରି ଲାଗିବ, ଏମିତିକି ଗଛ ମରିଯାଇ ପାରେ ମଧ୍ୟ। ଠାକୁରଙ୍କୁ ଦେଖିଲି ବୈଦ୍ୟ ହୋଇ ଔଷଧ ଦେଲେ ମଧ୍ୟ ରୋଗୀ ସାଥିରେ ରହି କିପରି ସତ୍ୱର ଔଷଧ ଖାଇ ଭଲ ଆଡ଼କୁ ଯିବ ତାହାର ସବୁ ବ୍ୟବସ୍ଥା କଲେ। ରୋଗୀର ବ୍ୟଥାରେ ବ୍ୟଥୀ ହୋଇ ଦୁଃଖରେ ଦୁଃଖୀ ହୋଇ ସାଥେ ସାଥେ ରହିଲେ। ଏଇତ ସେଇ ଦୟାଳ ପୁରୁଷ, ଏଇ ସେଇ ଗୁରୁ,'' ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ''।

ଯେଉଁଠି ଯେତେବେଳେ ଯାହା କରିବାକୁ ଗଲି, ଦେଖିଲି ସେ ସବୁବେଳେ ସର୍ବତ୍ର ମୋ ସାଥିରେ ରହିଛନ୍ତି। ବୁଦ୍ଧି ବିଚାର ଦେଇ ଯାହା ଅସମ୍ଭବ ବୋଲି ଭାବିଥିଲି ଏବେ ତାହା ବାସ୍ତବ ବୋଲି ଉଦ୍ଭାସିତ ହୋଇ ଉଠିଲା ଜୀବନ ପଟ୍ଟରେ।

'ସବୁହିଁ ଯେପରି ମୁଁ—ଗଛ ମୁଁ, ପୋକ ମୁଁ ରାମ ମୁଁ, ଶ୍ୟାମ ମୁଁ, ଜଣେ ମୁଁ ବହୁ ହୋଇଅଛି। ମୁଁ ମୋହରି ସହିତ ଏତେକାଣ୍ଡ କରୁଅଛି। ଏ ବଡ଼ ବିଚିତ୍ର ବ୍ୟାପାର।

—ଶ୍ରୀଶ୍ରୀଠାକୁର

## ॥ ନଅ ॥

ମାର୍ଗଶୀର ମାସ, ଦିନ ତିନିଟା ବାଜି ଯାଇଛି। ଶ୍ରୀଶ୍ରୀ ଠାକୁର ବରାଲବାଙ୍ଗଲାରୁ ବାହାରି ଆସି ଯତି ଆଶ୍ରମ ପାଖରେ କାଠ କାରଖାନା ସାମ୍ନାରେ ବସିଛନ୍ତି। ଆମ୍ଭେ କେତେକ ତାଙ୍କ ସମ୍ମୁଖରେ ଉପସ୍ଥିତ ରହିଛୁଁ। ଠାକୁର ଜଣକୁ ଗୋଟିଏ ଷ୍ଟୁଲ ଆଣି ସେଥିରେ ବିଛାଇ ଆମ୍ଭେମାନଙ୍କୁ ବସିବାକୁ କହିଲେ। ଠାକୁରଙ୍କ ସମାନାରେ ଆମ୍ଭେ କେହି ଷ୍ଟୁଲରେ ନ ବସି ପିଢ଼ା ଉପରେ ବସିଲୁଁ। ଆଜକୁ ତିନିଚାରିଦିନ ହେଲା; ମୋର ଗଳା ଭିତରେ କଅଣ ହୋଇଛି, କିଛି ଖାଇପାରୁ ନାହିଁ। ପେଟରେ ଭୋକ ରହୁଛି, କିନ୍ତୁ ମୁହଁରେ କିଛି ଦେଲେ ତଣ୍ଟି ଜଳି ପୋଡ଼ି ହେଉଛି। ଆଜି ଦ୍ୱିପ୍ରହରରେ ଏ କଥା ଡାକ୍ତର ପ୍ୟାରୀ ଦା'ଙ୍କୁ ମୁଁ ଜଣାଇଥିଲି। ପ୍ୟାରୀ ଦା' ମୋର ତଣ୍ଟି ଦେଖି ବ୍ୟସ୍ତ ହୋଇ ଉଠିଲେ। କହିଲେ ଠାକୁରଙ୍କୁ କିଛି କହିଛନ୍ତି କି? ମୁଁ କହି ନାହିଁ ଶୁଣି ସେ ଆହୁରି ବ୍ୟସ୍ତ ହୋଇ ଉଠି କହିଲେ– ଆଜକୁ ଚାରିଦିନ ଏପରି ହୋଇଛି, ଠାକୁରଙ୍କୁ କହିବା ଆପଣଙ୍କର ଉଚିତ ଥିଲା। ଶ୍ରୀଶ୍ରୀ ଠାକୁର ଯେତେବେଳେ ଅଶ୍ୱତଥ୍ ଗଛ ମୂଳରେ ଆସି ବସିଛନ୍ତି ସେତେବେଳେ ଡାକ୍ତର ପ୍ୟାରୀ ଦା' ଆସି ଠାକୁରଙ୍କୁ କହିଲେ– ଠାକୁର! ସୁଶୀଲଦା' ଆଜି ଚାରି ଦିନ ହେଲା କିଛି ଖାଇପାରୁ ନାହାନ୍ତି। ତଣ୍ଟିରେ ଏକ ପ୍ରକାର ଘା' ହୋଇଛି। ଏହା କହି ଶ୍ରୀଶ୍ରୀ ଠାକୁରଙ୍କର ସନ୍ନିକଟେ ଯାଇ ମୁଁ ଯେପରି ଶୁଣି ନ ପାରିବି ସେପରି ଭାବେ ଗୋପନରେ କ'ଣ ସବୁ କହିଲେ। ଶ୍ରୀଶ୍ରୀ ଠାକୁର ଶୁଣି ବ୍ୟସ୍ତ ହୋଇ ଉଠିଲେ। ମୋତେ କହିଲେ– ଏଇ, ସୁଶୀଲ, ତୋର କ'ଣ ହୋଇଛି? ମୁଁ କହିଲି– ଠାକୁର, ଆଜକୁ ଚାରିଦିନ ହେଲା ମୁଁ କିଛି ଖାଇପାରୁ ନାହିଁ। ଟିକିଏ ପାଣି ପିଇଲେ ମଧ୍ୟ ତଣ୍ଟି ଜଳି ଯାଉଛି, ଆଜି ଆଉ ରହି ନ ପାରି ପ୍ୟାରୀଦାଙ୍କୁ ସେ କଥା କହିଲି। ଶ୍ରୀଶ୍ରୀ ଠାକୁର ସଙ୍ଗେ ସଙ୍ଗେ କହି ଉଠିଲେ– ତୁ ସବୁବେଳେ ମୋ ସାଙ୍ଗେ ସାଙ୍ଗେ ରହୁଛୁ। କାହିଁ ମୋତେ ତ ଏକଥା କହିନାହୁଁ? ଠାକୁର ପ୍ୟାରୀଦାଙ୍କୁ କହିଲେ– ସୁଶୀଲକୁ ଔଷଧ ଦେଇ ଭଲ କରି ଦେ। ପ୍ୟାରୀ ଦା' କହିଲେ– ଏହାଙ୍କର 'ଟେରାମାଇସିନ' ଔଷଧ ଦରକାର। ସେତେବେଳେ 'ଟେରାମାଇସିନ' ପୃଥିବୀରେ ନୂଆ ବାହାରିଛି। ଭାରତବର୍ଷରେ ନୂଆ ଆସିଛି। କିନ୍ତୁ ସବୁ ଜାଗାରେ ମିଳୁ ନାହିଁ। ଥଣ୍ଡାରେ ରେଫ୍ରିଜାରେଟରରେ ରଖିବାକୁ ହୁଏ ବୋଲି ସବୁ ଦୋକାନୀ ଏ ଔଷଧ ରଖି

ପାରୁନାହାନ୍ତି। 'ଟେରାମାଇସିନ' କଥା ଶୁଣି ଶ୍ରୀଶ୍ରୀ ଠାକୁର ମୁଣ୍ଡ ହଲାଇ ଚୁପ୍ ହୋଇ ବସି ରହିଲେ। କାହାକୁ କିଛି କହିଲେ ନାହିଁ। ଭାବରୁ ଜଣା ପଡିଲା ଏହା ଭିତରେ କିଛି ଗୋଟାଏ ରହସ୍ୟ ରହିଛି। ପ୍ୟାରୀ ଦା' କୁ କହିଲେ– ଯାହା ଯାହା ଔଷଧ ଦରକାର ଗୋଟିଏ କାଗଜରେ ଲେଖ। ପ୍ୟାରୀ ଦା' ପ୍ରେସକ୍ରିପସନ (prescription) ଲେଖୁଁ ଲେଖୁଁ ଦୁଇଜଣ ଲୋକ ଆସି ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ କଲେ। ଜଣେ ଅସୁସ୍ଥ ରୋଗୀ, ଚାଲିପାରୁ ନାହାନ୍ତି, ଆଉ ଜଣେ ଅତି କଷ୍ଟେ ତାଙ୍କୁ ଧରି ରିକସାରୁ ଓହ୍ଲାଇ ଧୀରେ ଧୀରେ ଆଣି ଠାକୁରଙ୍କ ପାଖେ ଉପସ୍ଥିତ କରାଇଛନ୍ତି। ଦୁହେଁ ଏକାଠି ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ ହେଲେ। ଶ୍ରୀଶ୍ରୀ ଠାକୁର କହି ଉଠିଲେ– ''ଆଇସିସ'', ରାସ୍ତାରେ କୌଣସି ଅସୁବିଧା ହୋଇନାହିଁ ତ? ବଡ଼ ଭାଇ ଅସୁସ୍ଥ, ସାନ ଭାଇ କହି ଉଠିଲେ– ଠାକୁର! ମୋର ଦାଦା ଅସୁସ୍ଥ, ତାଙ୍କର କ୍ୟାନସର (cancer) ହୋଇଛି। କଲିକତା, ବମ୍ବେ, ଦିଲ୍ଲୀ, ସବୁଆଡ଼େ ଡାକ୍ତର ଦେଖା ହୋଇଛି। ସମସ୍ତେ କହୁଛନ୍ତି ବଡ଼ଭାଇ ବଞ୍ଚିବେ ନାହିଁ, ଆପଣ ପରମପିତା, ମାଲିକ, ଆପଣ ବଞ୍ଚାଇଲେ ବଞ୍ଚିବ, ନ ହେଲେ ଭାଇଙ୍କୁ ମୁଁ ରଖି ପାରିବି ନାହିଁ। ଆପଣ ଦୟା କରି ଦାଦାଙ୍କୁ ବଞ୍ଚାନ୍ତୁ। ଶ୍ରୀଶ୍ରୀ ଠାକୁର ସବୁ ଶୁଣି ବ୍ୟସ୍ତ ସହକାରେ କହି ଉଠିଲେ ଯାଅ, ଜଲଦି ଯାଅ, ଏଇ ଡାକ୍ତର ପ୍ୟାରୀ ପାଖରୁ ପ୍ରେସକ୍ରିପସନ (prescription) ନେଇଯାଅ, 'ରାୟ' କୋମ୍ପାନୀରୁ ଚାରିଟା ଫାଇଲ 'ଟେରାମାଇସିନ' ନେଇ ଆସ। ପ୍ୟାରୀ ଦା' କହି ଉଠିଲେ– ଚାରି ଫାଇଲ ଟେରାମାଇସିନ 'ରାୟ' କୋମ୍ପାନୀରେ ଅଛି କି ନାହିଁ ସନ୍ଦେହ, ନ ଥିଲେ ଫୋନ କରି କଲିକତାରୁ କାଲି ଯେପରି ସବୁ ଆସି ପହଞ୍ଚିବ ତାର ବ୍ୟବସ୍ଥା କରିବେ। ଗୋଟିଏ ଗୋଟିଏ 'ଟେରାମାଇସିନ' ଫାଇଲର ଦାମ୍ ୩୪ ଟଙ୍କା। ଏକଥା ଶୁଣିବା ସାଙ୍ଗେ ସାଙ୍ଗେ ଆସାମରୁ ଆସିଥିବା ବହିରାଗତ ଭାଇଟି ଅସୁସ୍ଥ ବଡ଼ଭାଇକୁ ଠାକୁରଙ୍କ ସମ୍ମୁଖରେ ବସାଇ ଦେଇ ଛୁଟି ଚାଲିଗଲେ ବଜାରକୁ ରିକ୍ସା ଧରି। କିଛିକ୍ଷଣ ପରେ ତିନୋଟି ଟେରାମାଇସିନ ଫାଇଲ ନେଇ ଆସି ଠାକୁରଙ୍କ ଚରଣ ପ୍ରାନ୍ତେ ରଖି ପ୍ରଣାମ ହେଲେ ଓ କହିଲେ–'ରାୟ' କୋମ୍ପାନୀରେ ତିନୋଟି ଥିଲା, କହି ଆସିଛି ଆଉ ଗୋଟିଏ କାଲି କଲିକତାରୁ ଆଣି ଦେବେ। ଶ୍ରୀଶ୍ରୀ ଠାକୁର ପ୍ୟାରୀ ଦା'ଙ୍କୁ ଔଷଧ ଉଠାଇ ନେଇ ମୋତେ ଦେବାକୁ କହିଲେ। ସେଠାକାର ଉପସ୍ଥିତ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। କ୍ୟାନସର ରୋଗୀ, ସବୁ ଡାକ୍ତର ଯାହାର ଜୀବନ ଉପରେ ଗ୍ୟାରେଣ୍ଟି ଦେଇ ପାରିନାହାନ୍ତି ସେ ଠାକୁରଙ୍କ ପାଖରେ ଉପସ୍ଥିତ

ହୋଇଛନ୍ତି ରୋଗରୁ ଭଲ ହେବା ପାଇଁ। ତାଙ୍କରି ଟଙ୍କାରେ ଔଷଧ ଆଣି, ଆଉ ସେ ଟଙ୍କା କିଛି କମ ନୁହେଁ, ୧୩୬ ଟଙ୍କା, ଠାକୁର ଖାଇବାକୁ ଦେଲେ ମୋତେ। ପ୍ୟାରୀଦା'ଙ୍କୁ ପଚାରିଲେ–ଆଉ କି ଔଷଧ ଦରକାର? ପ୍ୟାରୀ ଦା' କହିଲେ– T.C.F. ଭିଟାମିନ B–Complexର ଗୋଟିଏ ଫାଇଲ ଏହା ସଙ୍ଗେ ପ୍ରୟୋଜନ। ଠାକୁର କହିଲେ– ସେହି ଔଷଧଟି ତୁ ଆଣି ଦେ। ଭଗୀରଥ ଦା' ଦୋକାନରୁ ଔଷଧ ଆଣି ପ୍ୟାରୀଦା' ମୋତେ କହିଦେଲେ କିପରି ବ୍ୟବହାର କରିବି। ଏହାପରେ ଆସାମ–ଆଗତ ସେହି କ୍ୟାନସର ରୋଗୀ ଓ ତାର ଭାଇ ଆଡ଼କୁ ଅନାଇ ଠାକୁର କହି ଉଠିଲେ– ପରମପିତାର ଦୟାରେ ତୁମ୍ଭମାନଙ୍କର ଭାଗ୍ୟ ଭଲ ଯେ ଆଜି ଏହି ସମୟରେ ଏଇଠି ସୁଶୀଲ ଉପସ୍ଥିତ ରହିଛି। ଆସାମଠାରୁ ଆଗତ ଭାଇଟି କହିଲେ– ମୋର ଭାଇ ପାଇଁ ଠାକୁର! ଦୟା କରି କିଛି ଔଷଧ ବ୍ୟବସ୍ଥା କରନ୍ତୁ।

ଶ୍ରୀଶ୍ରୀ ଠାକୁର କହିଲେ– ଏହାଙ୍କର ଔଷଧ ଦରକାର ନାହିଁ। ଦୁଇଓଳି ଆନନ୍ଦବଜାରରେ ପ୍ରସାଦ ଖାଇବୁ। ବଜାରର କିଛି ଜଳଖିଆ ବା ଅନ୍ୟ କିଛି ଖାଇବୁ ନାହିଁ। ଆଜି ଏହାଙ୍କର ଦେହର ଓଜନ ଦେଖି ରଖ କେତେ ଅଛି, ମାସେ ପରେ ପୁଣି ଦେଖିବୁ ଓଜନ କେତେ ହେଲା। ଏପରି ଦୁଇମାସ ଏଠାରେ ରହିଲେ ପରମ ପିତାର ଦୟାରେ ଭଲ ହୋଇଯିବ। ଦୁଇଦିନ ଭିତରେ ତଣ୍ଟି ଘା' ଭଲ ହୋଇଗଲା। ସ୍ୱାଭାବିକ ଭାବେ ସବୁ ଖିଆପିଆ କରି ପାରିଲି। ଶ୍ରୀଶ୍ରୀ ଠାକୁର କିନ୍ତୁ ମୋତେ ଚାରୋଟି ଟେରାମାଇସିନ୍ ଫାଇଲ ଖାଇବାକୁ ଆଦେଶ କଲେ। ମୁଁ ତାଙ୍କ ନିର୍ଦ୍ଦେଶ ପାଳନ କଲି, ଆଉ ଆସାମ–ଆଗତ ସେହି ଭାଇ ଧୀରେ ଧୀରେ ସୁସ୍ଥ ହୋଇ ଉଠିବାକୁ ଲାଗିଲେ। ପନ୍ଦର ଦିନ ଭିତରେ ତା'ର ଜ୍ୱାଳାଯନ୍ତ୍ରଣା କମିଗଲା। ମାସକ ଭିତରେ ତାଙ୍କର ସ୍ୱାସ୍ଥ୍ୟ ସ୍ୱାଭାବିକ ହୋଇ ଉଠିଲା। ଓଜନ ବଢ଼ିଲା। ଦୁଇ ମାସ ରହି ସୁସ୍ଥ ହୋଇ ସେମାନେ ଘରକୁ ଫେରିଗଲେ। ଠାକୁରଙ୍କୁ ପ୍ରଣାମ ହେବା ପରେ ଯିବା ସମୟର ମୋତେ ଆସି କୁଣ୍ଢାଇ ପକାଇ କହିଲେ– ଦାଦା, ଆପଣ ଥିଲେ ବୋଲି ମୋର ଭାଇ ବଞ୍ଚିଗଲା। ମୁଁ ଲଜ୍ଜିତ ହୋଇ ଉଠିଲି। ଏମାନେ କେତେ ଦୂରରୁ ଆସି ମୋର ଗଳାରେ ହୋଇଥିବା ଘା', ତାହା କ୍ୟାନ୍‌ସର କି ନା ମୁଁ ଜାଣେନାହିଁ କେତେ ଟଙ୍କା ଖର୍ଚ୍ଚ ଔଷଧ ଆଣି ଭଲ କରି ଦେଇଗଲେ, ପୁଣି ମୋ ପାଖରେ ଜଣାଉଛନ୍ତି କୃତଜ୍ଞତା! ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଆସିବା ପରଠାରୁ କ୍ରମାଗତ ଆଶ୍ଚର୍ଯ୍ୟ ହେବା ପାଲା ଚାଲିଛି। ଏ

କିପରି ସମ୍ଭବ? କ୍ୟାନ୍‌ସର ହେଲା ଜଣଙ୍କର, ଔଷଧ ଖାଇଲି ମୁଁ, ଟଙ୍କା ଦେଲେ ସେ ଏବଂ ତାଙ୍କର ନିରାରୋଗ୍ୟ ବ୍ୟାଧି କ୍ୟାନ୍‌ସର କୌଣସି ଔଷଧ ନଖାଇ କେବଳ ଆନନ୍ଦ ବଜାରର ଡାଲି ଭାତରେ କିପରି ଭଲ ହେଲା? ଏହାକୁ ଯଦି ଅଲୌକିକ ଘଟଣା କୁହାଯାଏ, ଏପରି ଅଲୌକିକ ବହୁତ କିଛି ଶ୍ରୀଶ୍ରୀ ଠାକୁରଙ୍କ ପାଖେ ଦେଖିଛି, ଠାକୁର କହନ୍ତି– ଅଲୌକିକ ବୋଲି କିଛି ନାହିଁ। ପ୍ରତିଟି ଭିତରେ କାର୍ଯ୍ୟ କାରଣର ସମନ୍ୱୟତା ଅଛି। ତାହା ଜାଣି ନାହଁ ବୋଲି ଅଲୌକିକ ବୋଲି ପ୍ରତିଭାତ ହେଉଛି ତୁମ୍ଭ ସମ୍ମୁଖରେ। ମୁଁ ଜାଣି ନାହିଁ କେଉଁ ଜନ୍ମରେ କି ଭାବରେ ଏହାଙ୍କ ସଙ୍ଗରେ ମୋର କି ଯୋଗସୂତ୍ର ଥିଲା। ଯାହା ଜାଣିଛନ୍ତି ସେହି ସର୍ବଜ୍ଞ, ମୋର ଗୁରୁ, ମୋର ମନର ମନୁଷ୍ୟ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର।

**THE MOTHER OF SUCCESS;**

**VERILY, I SAY**

**DOING IS THE MOTHER OF SUCCESS.**

**–SREE SREE THAKUR**

# ।। ଦଶ ।।

ଶ୍ରୀଶ୍ରୀ ଠାକୁର ଏହିପରି ପାଖେ ପାଖେ ରଖିଲେ ତିନିମାସ। ତିନି ମାସ ପରେ ତାଙ୍କରି ଆଦେଶରେ ଫେରି ଆସିଲି ମୋର କର୍ମସ୍ଥଳ ବାଲେଶ୍ୱରକୁ। ବିଗତ ତିନିମାସ ଭିତରେ ଦିନକ ପାଇଁ ହେଲେ ଆଶ୍ରମ ବାହାରେ କେବେ ରହିନାହିଁ। ଶ୍ରୀଶ୍ରୀ ଠାକୁର ତାଙ୍କ ପରିବେଶ ଭିତରେ ଏପରି ଭାବରେ ମୋତେ ରଖିଥିଲେ ଯେ ବାହାରର ସବୁ କଥା ମୁଁ ଭୁଲି ଯାଇଥିଲି। ବାଲେଶ୍ୱରକୁ ଫେରି ସବୁ କିଛି ମୋତେ ନୂଆ କରି ଲାଗୁଛି। ବ୍ୟବସାୟ–ବାଣିଜ୍ୟ, ଲୋକ–ଜନ ଯାହାକୁ ଯେଉଁଠି ଦେଖୁଛି ସବୁ ଦେଖି ମନେ ହେଉଛି ଏ କେଉଁ ଜଗତ? ଏଇ ଜଗତ ସାଙ୍ଗରେ କିପରି ମୁଁ ପାଦ ପକାଇ ଚାଲିବି। ସବୁଠାରୁ ଆଶ୍ଚର୍ଯ୍ୟ କଲା ମୋତେ ମୋର ଗୁରୁଭାଇମାନେ, ତାଙ୍କ ସାଙ୍ଗରେ ମିଶି ଦେଖିଲି ସେମାନେ ସତ୍‌ସଙ୍ଗ ଏବଂ ଶ୍ରୀଶ୍ରୀ ଠାକୁର କହିବାକୁ ଯାଇ ଯାହା ବୁଝିଛନ୍ତି ତାହା ସାଙ୍ଗରେ ଶ୍ରୀଶ୍ରୀ ଠାକୁର ବା ସତ୍‌ସଙ୍ଗର କୌଣସି ବିଶେଷ ସମନ୍ୱୟତା ଦେଖୁ ନାହିଁ। ସତ୍‌ସଙ୍ଗ କହିବାକୁ ଯାଇ ଶ୍ରୀଶ୍ରୀ ଠାକୁର ବାରମ୍ବାର ମୋତେ କହୁଥିଲେ– ସତ୍‌ସଙ୍ଗ ଅର୍ଥ ଗୋଟିଏ ଦଳ ନୁହେଁ। ଏହି ହେଉଛି ସେହି ଶାଶ୍ୱତ ପଥ ଯାହାର ଗତି ସବୁବେଳେ ସତ୍ ବା ଶାଶ୍ୱତ ଆଡ଼କୁ। ଶ୍ରୀଶ୍ରୀ ଠାକୁର ବାରମ୍ବାର କହୁଥିଲେ– ପୃଥିବୀର ଯେଉଁ ଲୋକ ତା'ର ସତ୍ତାକୁ ଭଲପା'ନ୍ତି, ବଞ୍ଚିବାକୁ ଚାହାନ୍ତି, ବଢ଼ିବାକୁ ଚାହାନ୍ତି, ସେ ହିଁ ସତ୍‌ସଙ୍ଗୀ ଏବଂ ସେମାନେ ସମସ୍ତ ଏଇ ସତ୍‌ସଙ୍ଗର ସଭ୍ୟ। ଅବଶ୍ୟ ଏହା ଭିତରେ ଦୀକ୍ଷିତ ଏବଂ ଅଦୀକ୍ଷିତ କଥା ରହିଛି। ଯେ ଶ୍ରୀଶ୍ରୀ ଠାକୁରଙ୍କ ଦୀକ୍ଷାରେ ଦୀକ୍ଷିତ, ସେ ହୁଏତ ବଞ୍ଚିବା ଓ ବଢ଼ିବାର ପଥକୁ ଯିବା ପାଇଁ ଆହୁରି ନିଷ୍ଠା ସହକାରେ ଠିକ୍ ଠିକ୍ ପଥରେ ଚାଲିବାର ଚେଷ୍ଟା କରେ। ତେଣୁ ଶ୍ରୀଶ୍ରୀ ଠାକୁର କହୁଥିଲେ ଏ ସତସଙ୍ଗୀ, ଏ ସତସଙ୍ଗୀ ନୁହେଁ, ଏହା ନକହି ଦୀକ୍ଷିତ–ଅଦୀକ୍ଷିତ କହିବା ଭଲ।

ଶ୍ରୀଶ୍ରୀଠାକୁର ଦିନେ ମୋତେ କହିଥିଲେ– କୁହତ, ଭଗବାନ କଣ କରିପାରନ୍ତି ନାହିଁ? କ'ଣ ତାଙ୍କ କ୍ଷମତା ବହିର୍ଭୂତ? ମୁଁ ଅନେକ ଭାବିଚିନ୍ତି କହିଲି– ଏପରି କୌଣସି କିଛି ମୁଁ ଭାବିପାରୁ ନାହିଁ ଯାହାକି ପରମପିତା ତଥା ଭଗବାନର କ୍ଷମତା ବହିର୍ଭୂତ ବା ସେ ପାରନ୍ତି ନାହିଁ। ଶ୍ରୀଶ୍ରୀ ଠାକୁର ମୋ ଆଡ଼କୁ କିଛି ସମୟ ଅନାଇ ରହି ଧୀରେ ଧୀରେ କହି ଉଠିଲେ–

ତୁମେ ଠିକ୍ କହିଛ, ସେ ସର୍ବଜ୍ଞ, ସର୍ବଶକ୍ତିମାନ। କିନ୍ତୁ ଗୋଟିଏ କାମ ସେ କରିପାରନ୍ତି ନାହିଁ। ତାହାହେଲା–ଭଗବାନ ତାଙ୍କ ରାଜ୍ୟରୁ କାହାକୁ ତଡ଼ି ପାରନ୍ତି ନାହିଁ। ଯେ ଯେଉଁ ଅବସ୍ଥାରେ ରହୁନା କାହିଁକି ଭଗବାନ ତାଙ୍କୁ ନିଶ୍ଚୟ ଆଶ୍ରୟ ଦେବେ। କେତେବେଳେ ହେଲେ ସେ ତାଙ୍କ ରାଜ୍ୟରୁ କାହାକୁ ତଡ଼ିଦେଇ ପାରନ୍ତି ନାହିଁ। ହଠାତ୍ ବାହାରିଥିବା ଠାକୁରଙ୍କର ମୁହଁରୁ ଏହି କଥା ମୋର ଅନ୍ତର ଭିତରେ ବିଜୁଳି ପରି ଖେଳିଗଲା। ଏହାହିଁ କି? ତାହାରି ପାଇଁ କଣ ଠାକୁର! ତୁମ ପାଖରୁ କେହି ବିତାଡ଼ିତ ହୁଅନ୍ତି ନାହିଁ? ଯେ ଯେଉଁଠାରୁ ଯେ ଅବସ୍ଥାରୁ ଆସୁନା କାହିଁକି ସମସ୍ତଙ୍କୁ ତୁମେ କୋଳ ଦେଉଛ। ମନେ ଏକଥା କହି ମୁହଁରେ ଠାକୁରଙ୍କୁ କହିଲି, ଠାକୁର! ଆପଣଙ୍କ ପାଖରୁ ତ କେହି କେବେ ବିତାଡ଼ିତ ହୋଇ ନାହାନ୍ତି, ସମସ୍ତଙ୍କୁ କୋଳ ଦେଉଛନ୍ତି, ଛୋଟ ବଡ଼, ଜାତି–ଧର୍ମ, ପାପୀ ପୁଣ୍ୟବାନ ନିର୍ବିଶେଷରେ। ଶ୍ରୀଶ୍ରୀ ଠାକୁର କହିଲେ– ପରମପିତା ଦୟାରେ ତୁମ୍ଭେମାନେ ମଧ୍ୟ ଏହିପରି ହୋଇଉଠ। ଏହାହିଁ ମୋର ପରମପିତା ନିକଟରେ ଆନ୍ତରିକ ଆବେଦନ। ଶ୍ରୀଶ୍ରୀ ଠାକୁରଙ୍କ ଏହି କଥା ସାଙ୍ଗରେ ବାଲେଶ୍ୱରକୁ ଫେରିଆସି ଯାହା ଦେଖିଲି ତାହା ସାଙ୍ଗରେ କିଛି ମେଳ ପାଉ ନାହିଁ। ଶ୍ରୀଶ୍ରୀ ଠାକୁରଙ୍କର ଏହି ସତ୍‌ନାମରେ ଦୀକ୍ଷିତ ହୋଇ ସେମାନେ ଦଳାଦଳି କରୁଛନ୍ତି, ଅନ୍ୟାନ୍ୟ ଧର୍ମୀୟ ପ୍ରତିଷ୍ଠାନ ସାଙ୍ଗରେ ଏପରିକି ନିଜ ନିଜ ଭିତରେ ମଧ୍ୟ ଚାଲିଛି ବିଭିନ୍ନ ପ୍ରକାର ଦ୍ୱନ୍ଦ୍ୱ। କିଛି ଭଲ ଲାଗୁ ନାହିଁ। ମନ ଫେରିଯିବାକୁ ଚାହୁଁଛି ସେହି ମୋର ମନର ମଣିଷ ପରମବାନ୍ଧବ ଶ୍ରୀଶ୍ରୀ ଠାକୁରଙ୍କ ଚରଣପ୍ରାନ୍ତେ। ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ଫେରିଲାବେଳେ ଠାକୁର ଡାକି ମୋତେ ଗୋଟିଏ ଆଦେଶ ଦେଇଥିଲେ। ମୋର ଗୁରୁଦେବଙ୍କର ସେହି ଆଦେଶ ପାଳନ ନ କରି ଫେରି ଯାଇ ପାରୁନାହିଁ। ଏତେ ଦିନେ ଉପଲବ୍ଧି କଲି– ଜୀବନର ପ୍ରାରମ୍ଭରୁ ଯାହାକିଛି ଦେଖିଥିଲି, ବୁଝିଥିଲି ସବୁକିଛି ଭୁଲ। ନୂଆକରି ଯେଉଁ ଆଖି ଠାକୁର ଫିଟାଇ ଦେଲେ ସେହି ଆଖିରେ ସତ୍ୟକୁ ଦେଖିବା ପରେ ମୋ ଭିତରେ ଆରମ୍ଭ ହେଲା ସଂଘର୍ଷ ବା ଯୁଦ୍ଧ। ପୂର୍ବର ଜୀବନ ଆସି ସେ ଆଡ଼କୁ ଟାଣିନେଇଯିବା ପାଇଁ ଆସୁରିକ ଶକ୍ତି ବିକ୍ରମରେ ଆକ୍ରମଣ କରୁଛି, ଆଉ ଗୋଟିଏ ଦିଗରେ ଶୁଦ୍ଧ ସତ୍ତାସଚ୍ଚିଦାନନ୍ଦମୟ ଶ୍ରୀ ଶ୍ରୀ ଠାକୁର ଦେଖାଇ ଦେଇଛନ୍ତି ଯେଉଁ ଜୀବନ, ଅଳ୍ପ ଟିକିଏ ଅସ୍ୱାଦନ କରିଛି ଯାହା ତାଙ୍କ ପାଖରୁ ସେ ଜୀବନକୁ ଛାଡ଼ିବା ପାଇଁ ମନ ପ୍ରସ୍ତୁତ ନୁହେଁ। ପୁଣି ମନେ ହେଲା–"ସମାଜ ସଂସାର ମିଛ ସବ୍, ମିଛ ଏ ଜୀବନର କଳରବ୍" ଆସିଲାବେଳେ ଠାକୁରଙ୍କର ଯେଉଁ

ଆଶୀର୍ବାଦ ପାଇଥିଲି, ସେ କହିଥିଲେ–ଶ୍ରୀଘ୍ର ଫେରି ଆସିବୁ। ଆସିଲାବେଳେ କିଛି ଭଲ ଶାଳକାଠ ନେଇ ଆସିବୁ, ଅନ୍ତତଃ ଗୋଟିଏ ୱାଗନ, ଶ୍ରୀ ଶ୍ରୀ ଠାକୁର ତାଙ୍କ ଇଚ୍ଛା ପ୍ରକାଶ କଲେ ଯେ, ଜାମତଲାରେ ଗୋଟିଏ କାଠଘର ପ୍ରସ୍ତୁତ କରି ସେଠାରେ ରହିବେ। ତାଙ୍କର ସେହି ଆଦେଶକୁ ମୁଁ ତାଙ୍କର ଆଶୀର୍ବାଦ ମନେ କରି ଫେରି ଆସି ଭାବି ଚାଲିଛି– କିପରି ଏହା ସଂଭବ ହେବ? ମୋ ହାତରେ ଟଙ୍କା ନାହିଁ। ବିଗତ ପ୍ରାୟ ଚାରିମାସ ମୁଁ ଆଶ୍ରମରେ ରହି ଆସିଛି। ତା' ପୂର୍ବ ଚାରିମାସରେ ବ୍ୟବସାୟ ବାଣିଜ୍ୟ ଇତ୍ୟାଦି ଦେଖିବାର କୌଣସି ସୁଯୋଗ ପାଇନାହିଁ। ଗୋଟିଏ ୱାଗନ କାଠ ନେବାକୁ ହେଲେ ଅନ୍ତତଃ ହଜାରେ–ବାରଶହ ଟଙ୍କା ପ୍ରୟୋଜନ। ଜଣେ ଦୁଇଜଣ ଗୁରୁଭାଇଙ୍କୁ ଏକଥା କହିଲି। ସେମାନେ କେହି ଏ ବିଷୟରେ ଆଗ୍ରହ ପ୍ରକାଶ କଲେ ନାହିଁ। କୌଣସି ବାଟ ନଦେଖି କଟକକୁ ଚାଲିଗଲି। ସେଠାରେ ମୋର ବିଶିଷ୍ଟ ବନ୍ଧୁ ତଥା ଗୁରୁଭ୍ରାତ ଶ୍ରୀଯୁକ୍ତ ଅକ୍ଷୟରାୟ ଚୌଧୁରୀଙ୍କ ବସାରେ ଯାଇ ଉଠିଲି। ଶ୍ରୀ ଶ୍ରୀ ଠାକୁରଙ୍କ କଥାରେ ରାତ୍ରି ବିତିଗଲା ଦୁଇ ବନ୍ଧୁର। ଅକ୍ଷୟ ମୋର ତିନିମାସ ପୂର୍ବରୁ ଦୀକ୍ଷା ନେଇଛି। ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରି ଆସିଲେ ମଧ୍ୟ ତାଙ୍କର ସଂଗ ଲାଭକରି ନାହାନ୍ତି। ତେଣୁ ମୋ ସାଙ୍ଗରେ ଠାକୁଙ୍କର କଥୋପକଥନ ଶୁଣି ଖୁବ୍ ଆନନ୍ଦିତ ଏବଂ ଉତ୍ସାହିତ ହୋଇ ଉଠିଲେ। ମୁଁ ଯେତେବେଳେ ତାଙ୍କୁ କହିଲି ଶ୍ରୀଶ୍ରୀ ଠାକୁରଙ୍କର ମୋ ଉପରେ ଆଶୀର୍ବାଦର କଥା, ଅର୍ଥାତ୍ ଗୋଟିଏ ୱାଗନ କାଠର କଥା ଏବଂ ମୋ ପାଖରେ ଟଙ୍କା ନାହିଁ, ଏ ସବୁ କଥା ଶୁଣି ଅକ୍ଷୟଦା' କହିଲେ–ଚାଲ, ଆମ୍ଭେ ଭିକ୍ଷା କରି ଅର୍ଥ ସଂଗ୍ରହ କରିବା। ଗୁରୁ ଆଦେଶରେ ଶିବାଜୀ ଭିକ୍ଷା କରିଥିଲେ। ଆମ୍ଭର ଏ ଭିକ୍ଷରେ କୌଣସି ଲାଜ ନାହିଁ। ତହିଁ ଆରଦିନ ଅତି ପ୍ରତ୍ୟୁଷରେ ଆମ୍ଭେ ଦୁଇ ବନ୍ଧୁ ବାହାରି ପଡ଼ିଲୁ। ପ୍ରଥମେ ଯାଇ ଉପସ୍ଥିତ ହେଲୁ କଟକରେ ରହିଥିବା ସେତେବେଳର ଏକମାତ୍ର ରଦ୍ଧିକଙ୍କ ନିକଟରେ। ବିସ୍ତାରିତ ଭାବେ ସବୁ କଥା ଆମ୍ଭେ ଦୁଇଜଣ ତାଙ୍କୁ କହିଲୁ। ସେ ଚୁପ୍ ହୋଇ ରହିଲେ। ମୁଁ ତାଙ୍କର ସହଯୋଗୀତା ମାଗିଲି। ସେ କହିଲେ–ମୋ ପକ୍ଷରେ କିଛି କରିବା ସମ୍ଭବ ହେବ ନାହିଁ। ମୁଁ ଅଫିସର–ବିଭିନ୍ନ କର୍ମରେ ବ୍ୟସ୍ତ ରହିଛି। ସେଠାରୁ ବାହାରି ଆମେ କଟକରେ ବିଶିଷ୍ଟ ଏଡ଼ଭୋକେଟ ଓ ଗୁରୁ ଭ୍ରାତା ଶ୍ରୀଯୁକ୍ତ ଦୟାନିଧି ସାହୁଙ୍କର କାଳି ଗଳିରେ କାଳି ମନ୍ଦିର ସାଙ୍ଗରେ ଲାଗିଥିବା ଘରେ ଯାଇ ଉଠିଲୁ। ଦୟାନିଧି ଦା' ମୋତେ ଦେଖି ତାଙ୍କର ଚେୟାର ଛାଡ଼ି ଉଠିଆସି " ଜୟଗୁରୁ, ଜୟଗୁରୁ" କହି କୁଣ୍ଢାଇ ପକାଇଲେ। କହିଲେ–ମୋର

ଆଜି କି ସୌଭାଗ୍ୟ! ସୁଶୀଳଦା' ମୋ ଘରକୁ ଆସିଛନ୍ତି। ଦୟାନିଧିଦାର ଏହି ଆନ୍ତରିକ ଅଭ୍ୟର୍ଥନାରେ ମୁଁ ମୁଗଧ ହୋଇଗଲି। ଅକ୍ଷୟଦା' ପ୍ରଥମେ ଦୟାନିଧିଦା'ଙ୍କୁ କହିଲେ– ସୁଶୀଳଦା' ଠାକୁରଙ୍କ ପାଖରୁ ଆସିଛନ୍ତି ଠାକୁରଙ୍କ ଆଶୀର୍ବାଦ ମୁଣ୍ଡରେ ଧରି। ଠାକୁର ସୁଶୀଳଦା'ଙ୍କୁ ଗୋଟିଏ ୱାଗନ ଲଗ କାଠ ମାଗିଛନ୍ତି। ସୁଶୀଳଦା' ପାଖରେ ଏତେ ଟଙ୍କା ନାହିଁ ଯେ ସେ କାଠ କିଣିବେ। ତେଣୁ ଆମେ ମନେ କରିଛୁ– ଆମ୍ଭେମାନେ ସମସ୍ତେ ମିଶି ଏ କାଠ ସଂଗ୍ରହରେ ସୁଶୀଳଦା'ଙ୍କୁ ସାହାଯ୍ୟ କରିବା। ତେଣୁ ଆପଣ ଯାହା ପାରିବେ ସୁଶୀଳଦା'ଙ୍କୁ ଠାକୁରଙ୍କର ଏହି ଆଶୀର୍ବାଦ ପରିପୂରଣରେ ସାହାଯ୍ୟ କରନ୍ତୁ। ଦୟାନିଧିଦା' ଶୁଣି ଉତ୍‌ଫୁଲ୍ଲ ହୋଇ କହି ଉଠିଲେ– ହଁ, ହଁ, ଆମେ ନିଶ୍ଚୟ କରିବା। କହନ୍ତୁ କ'ଣ କରିବାକୁ ହେବ? ମୁଁ କହିଲି– ଆପଣ ନିଜେ ଯାହା ପାରିବେ ଦିଅନ୍ତୁ, ଆଉ କଟକ ମାଲଗୋଦାମ ଆଡ଼କୁ ଆମ୍ଭର କେତେକ ଗୁରୁଭାଇ ଅଛନ୍ତି ଯେଉଁମାନେ କି ଆପଣଙ୍କର ମୋକେଲ (client), ସେମାନଙ୍କ ପାଖରୁ କିଛି ସଂଗ୍ରହ କରି ଦିଅନ୍ତୁ। ଦୟାନିଧିଦା' ସାଙ୍ଗେ ସାଙ୍ଗେ ତାଙ୍କ ଅଫିସ ଘରେ ଉପସ୍ଥିତ ରହିଥିବା ସବୁ ମୋକେଲମାନଙ୍କୁ କହିଲେ– ଆଜି ଯାଓ, ପଛରେ ସବୁ କଥା ଶୁଣିବା। ତାଙ୍କର ପୁଅକୁ ଡାକି କହିଲେ ତାଙ୍କର ନିଜସ୍ୱ ଘୋଡ଼ାଗାଡ଼ି ଆଣି ବାହାର କରିବା ପାଇଁ। ସେ ଗାଡ଼ିରେ ଆମ୍ଭେ ତିନିଜଣ ବାହାରି ପଡ଼ିଲୁ ମାଲଗୋଦାମ ଉଦ୍ଦେଶ୍ୟରେ। ଦୟାନିଧିଦା' କୋର୍ଟକୁ ନଯାଇ ଦିନ ୨ଟା ପର୍ଯ୍ୟନ୍ତ ଆମ ସାଙ୍ଗରେ ବୁଲିଲେ ଏବଂ ଫେରିବା ବାଟରେ ଆମକୁ ଅକ୍ଷୟଦା' ଘରେ ଛାଡ଼ିଦେଇ ତାଙ୍କ ନିଜ ଘରକୁ ଗଲେ। ୧୫୦ ଟଙ୍କା ସଂଗ୍ରହ ହେଲା। ଦୟାନିଧିଦା' ନିଜେ ୫୦ ଟଙ୍କା ଦେଲେ। ଉପରଓଲି ଯେତେବେଳେ ମୁଁ ଏବଂ ଅକ୍ଷୟଦା' କଟକର ବିଭିନ୍ନ ଗୁରୁଭାଇମାନଙ୍କ ପାଖକୁ ଯାଇ ଶ୍ରୀ ଶ୍ରୀ ଠାକୁରଙ୍କର ଏହି ଆଦେଶର କଥା କହିଲି ସେତେବେଳେ ଅନେକେ କହିଲେ– ଆମ୍ଭେ ଏ କଥା ଉପରୋକ୍ତ ଋତ୍ୱିକଦା'ଙ୍କ ପାଖରୁ ଶୁଣିଛୁ। କିନ୍ତୁ ସେ କହୁଥିଲେ– ଶ୍ରୀ ଶ୍ରୀ ଠାକୁର ସୁଶୀଳଦା'ଙ୍କୁ ଯାହା କିଛି ମାଗିଛନ୍ତି ସେଥିରେ ଆମ୍ଭର କିଛି କରିବାର ନାହିଁ। ଠାକୁର ଯେତେବେଳେ ଯାହାକୁ କିଛି ମାଗନ୍ତି ସେ ତାହାର ପାପ ଖଣ୍ଡନ କରିବା ପାଇଁ ମାଗନ୍ତି। ସୁଶୀଳଦା' ଯେଉଁ ବାଟେ ହେଉ ନିଜେ ସଂଗ୍ରହ କରି ଠାକୁରଙ୍କୁ ଦେଲେ ତାଙ୍କର ପାପ ଖଣ୍ଡନ ହେବ ଏଥିରେ ଆମ୍ଭର କିଛି କରିବାର ନାହିଁ। ଅକ୍ଷୟଦା' ଏକଥା ଶୁଣି କ୍ଷିପ୍ତ ହୋଇ ଉଠିଲେ। ମୁଁ ମଧ୍ୟ ଅନ୍ତରରେ ଖୁବ୍ ଆଘାତ ପାଇଲି। ଉପରୋକ୍ତ ଋତ୍ୱିକଦା'ଙ୍କୁ ଯାଇ ଏକଥା ପଚାରିବାରୁ ସେ ମଧ୍ୟ ଏକଥା ସମର୍ଥନ କଲେ।

ଆମ୍ଭେ ଆଉ କାହା ପାଖକୁ ଗଲୁ ନାହିଁ। ସେଇ ଦିନ ରାତ୍ରିରେ ମୁଁ ଫେରି ଆସିଲି ବାଲେଶ୍ୱରକୁ। ବାଲେଶ୍ୱରରୁ ବାରିପଦା ଯାଇ ଜଣେ ଫରେଷ୍ଟ କଣ୍ଟ୍ରାକ୍ଟର ସାଙ୍ଗରେ ଦେଖା କରି କାଠର ଅର୍ଡ଼ର ଦେଇ ଦେଲି। ମୁଁ ଅଗ୍ରୀମ ବାବଦ ୨୫୦ ଟଙ୍କା ମଧ୍ୟ ଦେଲି। କଥା ହେଲା ବାକି ଟଙ୍କା ୱାଗନ୍‌ରେ ମାଲ ଉଠାଇ ବୁକ୍ କରିଦେବା ପରେ ଦେବି। ପନ୍ଦର ଦିନ ପରେ ମୋ ପାଖରେ ଖବର ଆସିଲା ଯେ କାଠ ଗୋଟିଏ ୱାଗନ୍ ଚାଲି ଯାଇଛି। ସବୁ ମିଶି ଦାମ୍ ପ୍ରାୟ ୧୨୦୦ ଟଙ୍କା ପାଖାପାଖି ହେବ। ମୁଁ ଇତି ମଧ୍ୟରେ ନିଜେ କିଛି ଟଙ୍କା ସଂଗ୍ରହ କରିଛି ଏବଂ ବ୍ୟାଙ୍କରୁ ଯାହା କିଛି ଟଙ୍କା ଥିଲା ସବୁ ଉଠାଇ ନେଇ ବାରିପଦାକୁ ଗଲି। ରେଲୱେ R. R. (ରେଲୱେ ରସିଦ) ଆଣିବା ପାଇଁ ସେଠାରେ ଉପସ୍ଥିତ ହେବା ପରେ ଉକ୍ତ ବଣର ଠିକାଦାର ମୋତେ ଦେଖି ଖୁବ୍ ଉତ୍‌ଫୁଲ ହୋଇ ଉଠିଲେ ଏବଂ ଭକ୍ତି ସହକାରେ ପ୍ରଣାମ କରି ରେଳର ରସିଦ୍‌ଟି ମୋ ହାତରେ ଟେକିଦେଲେ। ମୁଁ ରସିଦଟି ପାଇବା ପରେ ତାଙ୍କୁ ଯେତେବେଳେ ପକେଟ୍‌ରୁ ଟଙ୍କା ବାହାର କରି ଦେବାକୁ ଯାଉଛି, ସେ ମୋର ହାତ ଦୁଇଟି ଧରି କାତର କଣ୍ଠରେ କହି ଉଠିଲେ– ଆପଣଙ୍କୁ ଏ କାଠର ଟଙ୍କା ଦେବାକୁ ହେବ ନାହିଁ। ଆପଣଙ୍କ ମୁହଁରୁ ଠାକୁରଙ୍କର ଯେତେ କଥା ଶୁଣିଛି ସେଥିରେ ମୋର ମନେ ହେଉଛି ଠାକୁର ସ୍ୱୟଂ ଭଗବାନ ଏବଂ ତାହା ପରଠାରୁ ମୋ ପାଖରେ ମଧ୍ୟ ଏପରି କେତେଗୁଡ଼ିଏ ଘଟଣା ଘଟିଛି ଯଦ୍ୱାରା କି ମୋ ମନରେ ପୂର୍ବ ଧାରଣା ଆହୁରି ଦୃଢ଼ ହୋଇ ଉଠିଛି। ଆପଣମାନେ ମୋ ପାଖରେ ଆସିବା ପୂର୍ବରୁ ମୁଁ ଗୋଟିଏ ବଣ ୨୦ ହଜାର ଟଙ୍କାରେ ନେବି ବୋଲି ନିଲାମରେ ଡାକିଥିଲି। କିନ୍ତୁ କର୍ତ୍ତୃପକ୍ଷ ମୋତେ ସେ ବଣ ନ ଦେଇ ଅନ୍ୟ ଜଣକୁ ୨୨ ହଜାର ଟଙ୍କାରେ ଦେଇଥିଲେ। ମୁଁ ଅଳ୍ପ ଟଙ୍କାରେ ଗୋଟିଏ ଛୋଟ ବଣ ଧରିଥିଲି। କିନ୍ତୁ ପୂର୍ବୋକ୍ତ ବଣଟିକୁ ଯେଉଁ ଲୋକଟି ୨୨ ହଜାର ଟଙ୍କାରେ ଡାକିଥିଲେ ସେ ପରେ ବଣର କର୍ତ୍ତୃପକ୍ଷର ବାରମ୍ବାର ତାଗିଦ ସତ୍ତ୍ୱେ ପୁରା ଟଙ୍କା ଜମା ଦେଇ ସେ ବଣ ନେଲେ ନାହିଁ। ଡାକ ସମୟରେ ଯେତେ ଟଙ୍କା ଅଗ୍ରୀମ ଦିଆ ହୋଇଥିଲା ତାଙ୍କର ସେ ଟଙ୍କା କର୍ତ୍ତୃପକ୍ଷ ବାଜ୍ୟାପ୍ତ କରି ଦେଇଛନ୍ତି ଏବଂ ମୋତେ ଡାକି ସେ ବଣଟିକୁ ୨୦ ହଜାର ଟଙ୍କାରେ ନେବାକୁ କହିଲେ। କିନ୍ତୁ ମୁଁ ଇତିମଧ୍ୟେ ଆଉ ଗୋଟିଏ ବଣ ନେଇ ସାରିଛି। ତେଣୁ ଏତେ ଟଙ୍କା ମୋ ପାଖରେ ନାହିଁ ଶୁଣି ବଣର କର୍ତ୍ତୃପକ୍ଷ ଶେଷ ପର୍ଯ୍ୟନ୍ତ ମୋତେ ୧୨ ହଜାର ଟଙ୍କାରେ ସେହି ବଣ ଦେଇ

ଦେଲେ। ଏହିପରି ଅପ୍ରତ୍ୟାଶିତ ଭାବରେ ଠାକୁର ମୋତେ ବହୁତ ଟଙ୍କା ଲାଭ କରାଇ ଦେଲେ। ତେଣୁ ମୁଁ ତାଙ୍କ ପାଇଁ ଏଇ ସାମାନ୍ୟ କିଛି କାଠ ଦେଉଛି। ଆପଣ ଦୟାକରି ଗ୍ରହଣ କରନ୍ତୁ। ଏହି ଗୋଟିଏ ୱାଗନ ଭିତରେ ଭଲ ଭଲ ଶାଳ ଏବଂ ପିଆଶାଳ କାଠ ମୁଁ ଦେଇଛି ମୋର ମନ ମୁତାବକ ଏବଂ ଆପଣ ଯେଉଁ ୨୫୦ ଟଙ୍କା ଦେଇଥିଲେ ମୁଁ ସେହି ଟଙ୍କା ରେଳୱାଗନଭଡ଼ା ବାବଦ ଦେଇଛି। ତେଣୁ ଆପଣଙ୍କୁ ଆଉ ରେଳଭଡ଼ା ଦେବାକୁ ହେବ ନାହିଁ। ମୁଁ ଆଶ୍ଚର୍ଯ୍ୟ ହୋଇଗଲି, ଅଦୀକ୍ଷିତ ଜଣେ ଲୋକ, ତାଙ୍କର ଏହି ନିଃସ୍ୱାର୍ଥ ଦାନ ଦେଖି। କିନ୍ତୁ ତାଙ୍କ ପଛରେ ଆଉ ଯାହାକୁ ଦେଖିଲି ସେ ହେଲେ ମୋର ଜୀବନ ସାରଥୀ, ଶ୍ରୀ ଶ୍ରୀ ଠାକୁର। ସେ ଜାଣିଛନ୍ତି ମୋର ସବୁ ଇତିହାସ. କେଉଁଠି କଣ ମୋର ଅଛି। କଟକରେ ଗୁରୁଭାଇ ଋତ୍ୱିକ ନିକଟରୁ ଅନ୍ତରରେ ଆଘାତ ପାଇ ଯେତେବେଳେ ଅଭିମାନଭରେ ଆଉ କାହା ପାଖକୁ ଗଲି ନାହିଁ, ନିଜର ବ୍ୟବସାୟରୁ ଟଙ୍କା ତୋଳି, ବ୍ୟାଙ୍କରେ ଯାହା କିଛି ଥିଲା ସବୁ ଉଠାଇ ନେଇ ସେହି କାଠ ଆଣିବାକୁ ଚଳିଲି, ଶ୍ରୀ ଶ୍ରୀ ଠାକୁର ସେତେ ବେଳେ ମୋର ସବୁ ଅର୍ଥ ଯାହା ସବୁ କିଛି ଯଥା ସ୍ଥାନରେ ରଖିଦେଇ ବ୍ୟବସାୟରେ ଯେପରି କୌଣସି ଆଞ୍ଚ ନ ଆସିବ ତାହା ବ୍ୟବସ୍ଥା କରି ନିଜେ ହିଁ ସଂଗ୍ରହ କରି ଆଣିଲେ ତାଙ୍କରି ମାଗିଥିବା କାଠ, ବାଛି ବାଛି ସବୁଠାରୁ ଭଲ ଜିନିଷ। ପୁଣି ଆଉ ଥରେ ମନେ ପଡ଼ିଲା ସେହି କଥା— "କରି କରାଉଥାଏ ମୁହିଁ, ମୋ ବିନେ ଅନ୍ୟ କେହି ନାହିଁ"। ମୁଁ ଗଙ୍ଗା ଜଳରେ ଗଙ୍ଗା ପୂଜା କଲି, ଗଙ୍ଗାରେ ଠିଆ ହୋଇ ତାଙ୍କରି ପାଣିକୁ ହାତରେ ତୋଳି ମନ୍ତ୍ରପାଠ କରି ପୁଣି ସେଥିରେ ପକାଇଦେଲି। ଶ୍ରୀ ଶ୍ରୀ ଠାକୁର ନିଜେ ସଂଗ୍ରହ କଲେ ତାଙ୍କର କାଠ, ତାଙ୍କର ଭକ୍ତ ପାଖରୁ, ଯେ କି ଦୀକ୍ଷିତ ନ ହେଲେ ମଧ୍ୟ ଈଶ୍ୱରଙ୍କର ପରମଭକ୍ତ କିମ୍ବା ତାଙ୍କର ମନ ଭିତରେ ସେତେବେଳେ ସାମୟିକ ଭକ୍ତି ଭାବ ଜାଗ୍ରତ କରି ଉଠାଇଲେ, କି—ସେ କଥା, ତାହା ଠାକୁର ଜାଣନ୍ତି। କିନ୍ତୁ ମୋ ଆଗରେ ଠାକୁର ଯେଉଁ ଘଟଣା ଉଦାହରଣ ସ୍ୱରୂପ ରଖିଲେ, ତାହା ମୋର ମନକୁ ସାଧନା ଜଗତରେ ବଳୀୟାନ କରି ତୋଳିଲା ସହସ୍ରଗୁଣ। ଆଜି କେତୋଟି ଦିନ ହୋଇଛି ଠାକୁର! ମୁଁ ତୁମ୍ଭ ପାଖରୁ ବାହାରି ଆସିଛି, ଏହା ଭିତରେ କେତେ ପ୍ରକାର ପରିସ୍ଥିତି ଭିତରେ ପକାଇ ମୋ ସାମ୍ନାରେ ଉପସ୍ଥିତ କଲ କେତେ କେତେ ଘଟଣା, ଏକ ଦିଗରେ ନିନ୍ଦା ଚର୍ଚ୍ଚା—ଅଖ୍ୟାତି, ଆଉ ଏକ ଦିଗରେ ଖ୍ୟାତି, ମାନ ଓ ସିଦ୍ଧି। ଦିନ ଏବଂ ରାତି ପାଖା ପାଖି ଚାଲିଛି, ଦୁହେଁ ହିଁ ସତ୍ୟ।

ଏହି ତ ସେହି ଗୁରୁ ଯେ କି ପ୍ରତ୍ୟେକଙ୍କର ଜୀବନକୁ balance ବା ସମତାଳରେ ନେଇ ଆସନ୍ତି ତାଙ୍କର ଅଭିନବ ଆକର୍ଷଣୀୟ ପଦ୍ଧତିରେ। ପୁଣି ମନେ ପଡ଼ିଲା ଠାକୁରଙ୍କର ଆଉ ଗୋଟିଏ ବାଣୀ—

''ବିପାକ୍ ପଥେ ହାତ ଧରେ ଯେ ଚାଲାର 'କାଏଦା ଶିଖିୟେ ଦେୟ, ତାଁ କେଇ ଜାନିସ ଗୁରୁ ବୋଲେ ତାଁକେ ପେଲେ ନାଇକୋ ଭୟ''। ଅର୍ଥାତ୍ ବିପାକ ପଥରେ ଯେ ହାତ ଧରି ଧରି, ନେଇଯାଇ କିପରି ଚାଲିବାକୁ ହେବ ତାହା ଶିଖାଇ ଦିଅନ୍ତି, ତାଙ୍କୁ ହିଁ ଜାଣିବ ଗୁରୁବୋଲି ଏବଂ ଜୀବନରେ ତାଙ୍କୁ ପାଇଲେ ଆଉ କୌଣସି ଭୟ ନାହିଁ। ମନ ନାଚି ଉଠିଲା, ପାଇଛି ପାଇଛି, ମୋର ଜୀବନ—ଦେବତାକୁ ପାଇଛି। ଏତେ ଦିନ ଖୋଜି ଖୋଜି ଆସିଛ ହେ ଠାକୁର! ଗୁରୁ ରୂପେ ମୋର ଜୀବନରେ, ଦୟାଲ ତୁମେ ନେଇ ଚାଲ ମୋର ହାତ ଧରି, ମୁଁ ଯେ ଅତି ଦୁର୍ବଳ। ହରଷିତ ଅନ୍ତରରେ ରେଳ ରସିଦ ଧରି ବାଲେଶ୍ୱରକୁ ଫେରି ଆସି ବୈଦ୍ୟନାଥ ଦେଓଘରରେ ଶ୍ରୀଶ୍ରୀ ଠାକୁରଙ୍କ ଉଦ୍ଦେଶ୍ୟରେ ବାହାରି ପଡ଼ିଲି। ମୁଁ ସେଠାରେ ଯାଇ ଉପସ୍ଥିତ ହୋଇ ଶୁଣିଲି ଆଶ୍ରମରେ କାଠ ପହଞ୍ଚି ଯାଇଛି। ରେଳରସିଦ ମୋ ପାଖେ ରହିବା ସତ୍ତ୍ୱେ ଆଶ୍ରମ କର୍ତ୍ତୃପକ୍ଷ ''ଇନ୍‌ଡ଼େମିନିଟି'' ବଣ୍ଡ ଦେଇ ୱାଗନ ଖଲାସ କରି ନେଇଛନ୍ତି, ନ ହେଲେ ''ଡେମାରେଜ'' ପଡ଼ିଥାନ୍ତା। ଶ୍ରୀ ଶ୍ରୀ ଠାକୁରଙ୍କ ପାଖରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଶ୍ରୀ ଶ୍ରୀ ଠାକୁର ଉତ୍‌ଫୁଲ୍ଲ ଭାବେ କହି ଉଠିଲେ— ଆଇସିସ ମନି, (ଆସିଛ ମନି) ମୁଁ ଯେ ତୁମ୍ଭର ପଥ ଚାହିଁ ବସିଛି। ମୁଁ କହିଲି— ଠାକୁର! ମୋର କାଠ ସଂଗ୍ରହ କରିବାକୁ ଡେରି ହେଲା। ତାହା ପାଇଁ ଆସିବାକୁ ମଧ୍ୟ ବିଳମ୍ବ ହେଲା। ମୋର ମନ ସବୁବେଳେ ପଡ଼ି ରହିଛି ଆପଣଙ୍କ ଚରଣ ପ୍ରାନ୍ତେ। ଗାଡ଼ିରେ ଆସିଲାବେଳେ ମନେ ହେଉଥିଲା ଗାଡ଼ିଟା ଯେପରି ଚାଲୁନାହିଁ। ମୋର ଯଦି ପକ୍ଷୀପରି ଦୁଇଟି ପରଥାନ୍ତା, ଉଡ଼ି ଚାଲି ଆସିଥାନ୍ତି। ଠାକୁର ହସି ଉଠିଲେ, କହିଲେ— ମୁଁ ମଧ୍ୟ ଏଠାରେ ତୋ ଅପେକ୍ଷାରେ ପଥ ଚାହିଁ ବସିଛି କେତେବେଳେ ଆସିବୁ। ଏହା ପରେ ଠାକୁର କହିଲେ— ତୁ ଯେଉଁ କାଠ ପଠାଇଛୁ, ତାହା ଆସିଛି। ଯତି ଆଶ୍ରମ ସାମ୍ନାରେ ରଖା ହୋଇଛି। ଚାଲଯିବା, ଦେଖିବା, ଏ କଥା କହି ଶ୍ରୀ ଶ୍ରୀ ଠାକୁର ଉଠି ପଡ଼ିଲେ। ମୁଁ ତାଙ୍କ ପଛ ଧରି ଆସି ଯେଉଁଠାରେ କାଠଗୁଡ଼ିକ ରଖା ହୋଇଥିଲା ସେହିଠାରେ ଉପସ୍ଥିତ ହେଲି। ଠାକୁର କାଠଗୁଡ଼ିକୁ ଦେଖି କହିଲେ— ଏଗୁଡ଼ିକ ଖୁବ୍ ଭଲ କାଠ, ବିଶେଷ

କରି ଏ ମୁର୍ଗା (ପିଆଶାଳ) କାଠ ଗୁଡ଼ିକ କୁଆଡ଼େ ପାଇଲୁ। ମୁର୍ଗା କାଠ କ'ଣ ମୁଁ ତାହା ଜାଣେ ନାହିଁ। ମୋ ଦୃଷ୍ଟି ଭିତରେ ସେ ଭାବ ଫୁଟି ଉଠିଲା। ଶ୍ରୀ ଶ୍ରୀ ଠାକୁର ଖଣ୍ଡେ ପିଆଶାଳ କାଠକୁ ଦେଖାଇ କହିଲେ– ଏହାରି ନାମ ମୁର୍ଗା କାଠ। ମୁଁ କହିଲି– ଠାକୁର। ଆମ୍ଭର ଓଡ଼ିଶାରେ ଏହାକୁ କୁହନ୍ତି ପିଆଶାଳ। ଠାକୁର ପିଆଶାଳ ନାମ ଶୁଣି କହିଲେ– କାଠର ଏ ନାମଟି ଭାରି ସୁନ୍ଦର। ସାଥେ ସାଥେ ଠାକୁର କହିଲେ– ଏ କାଠରେ Furniture (ଆସିବାବପତ୍ର) ଭଲ ହୁଏ। ମୁଁ ତ ତୋତେ କେବଳ ଶାଳକାଠ କଥା କହିଥିଲି। ବୁଦ୍ଧି କରି ଏହି ମୁର୍ଗା କାଠ ଆଣିଲୁ କିପରି? ମୁଁ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ କାଠ ଆସିବାର ବିସ୍ତାରିତ କାହାଣୀ କହିଲି ଏବଂ ଯେଉଁ ଲୋକ କାଠ ଦେଇଛନ୍ତି ସେ ସ୍ୱତଃପ୍ରବୃତ୍ତ ହୋଇ ଶାଳ କାଠଠାରୁ ଅନେକ ବେଶୀ ଦାମ୍‌ର ଏହି ପିଆଶାଳ କାଠ କେତେକ ଦେଇଛନ୍ତି। ଠାକୁର ଶୁଣି ଆନନ୍ଦିତ ହେଲେ। କହିଲେ– ଅନ୍ତରରେ ଭକ୍ତି ଶ୍ରଦ୍ଧା ଥିଲେ ଏବଂ ମନ ଭିତରେ ବିନ୍ଦୁମାତ୍ର Negative ବା ନେତିବାଚକ ଚିନ୍ତା ନ ଥିଲେ ପରମପିତାଙ୍କ ଦୟାରେ ସବୁ କିଛି ସମ୍ଭବ ହୋଇ ଉଠେ। ଏହା ପରେ ପରେ ଯତି ଆଶ୍ରମ ସାମ୍ନାରେ ଗୋଟିଏ କାଠ ଚେୟାର ଉପରେ ଠାକୁର ବସିଲେ। ମୁଁ ଠାକୁରଙ୍କ ପାଖରେ କଟକରେ ଯାହା ଯାହା ଘଟିଥିଲା ସବୁ କିଛି ବିସ୍ତାରିତ ଭାବେ କହିଲି। ଅକ୍ଷୟଦା' ଓ ଦୟାନିଧି ଦା'ର ସାହାଯ୍ୟ କଥା ଏବଂ ସେଠାକାର ଋତ୍ୱିକଦାଦାଙ୍କର ଏହି ଟଙ୍କା ସଂଗ୍ରହରେ ବିରୋଧତା କଥା ଯେଉଁଥିରେ ସେ କହିଥିଲେ–''ମୁଁ ପାପୀ, ମୋର ପାପ ଖଣ୍ଡନ କରିବା ପାଇଁ ମୋ ପାଖରେ ଆପଣ ଏହି କାଠ ମାଗିଛନ୍ତି। ମୋ ନିଜଠାରୁ ଟଙ୍କା ଦେଇ ଏହା କିଣିବା ଦରକାର। ଅନ୍ୟ କାହାରି ସାହାଯ୍ୟ କରିବା ଭଲ ନୁହେଁ, ସେଥିରେ ମୋର କର୍ମଫଳ କଟିବ ନାହିଁ।'' ଶ୍ରୀଶ୍ରୀ ଠାକୁର ଏହି କଥା ଶୁଣି ସାଙ୍ଗେ ସାଙ୍ଗେ ପଚାରିଲେ– ସେ ଋତ୍ୱିକ୍ କିଏ? ମୁଁ ତାଙ୍କର ନାମ କହିବାରୁ, ଠାକୁର କହିଲେ ତାଙ୍କୁ କହିଦେବୁ ଯେ, ମୁଁ ଯେପରି ଜନ୍ମଜନ୍ମାନ୍ତର ଧରି ଏପରି ପାପ କରେ ଯେଉଁପାପ ଦ୍ୱାରା କି ଗୁରୁଙ୍କର ଆଶୀର୍ବାଦ ଆସେ ମୋ ଉପରେ। ସଦ୍‌ଗୁରୁ ଯେତେବେଳେ ଯାହା ପାଖରେ କିଛି ମାଗନ୍ତି ତାହା ତାଙ୍କ ପକ୍ଷରେ ମହା ଆଶୀର୍ବାଦର କଥା ଏବଂ ସେହି ଆଶୀର୍ବାଦ ମୁଣ୍ଡରେ ଧରି ସେ ଯେଉଁଠି ଯେତେବେଳେ ଯାହା ପାଖରେ ଯାଏ, ସେହି ଅବସ୍ଥାରେ କେହି ଯଦି ତାଙ୍କୁ ସେହି ଆଶୀର୍ବାଦ ପରିପୂରଣରେ ସାହାଯ୍ୟ କରେ, ଜାଣିଥିବୁ ତାହାଠାରୁ ପୁଣ୍ୟ ଆଉ କିଛି ନାହିଁ। ପୃଥିବୀରେ ଖୁବ୍ କମ ଲୋକ ଅଛନ୍ତି ଯେଉଁମାନେ କି

ଇଷ୍ଟଙ୍କୁ ମୁଣ୍ଡରେ ନେଇ ବହନ କରି ଇଷ୍ଟ ସ୍ୱାର୍ଥରେ ସ୍ୱାର୍ଥବାନ ହୋଇ ଜୀବନର ସବୁକିଛିକୁ ସେଥିରେ ବିନିଯୋଗ କରନ୍ତି। ଆଉ ସେହିମାନେ ହିଁ ହେଉଛନ୍ତି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମାଜର ପ୍ରତି ପ୍ରତ୍ୟେକଙ୍କର ମୁକ୍ତିଦାତା, ତ୍ରାତା ଏବଂ ତାଙ୍କ ସାଙ୍ଗରେ ସହଯୋଗିତା କରିଲେ ହିଁ ସାଧାରଣ ମନୁଷ୍ୟ ତାଙ୍କର କର୍ମଫଳ କଟାଇ ଧର୍ମଜୀବନ ଆଡ଼କୁ ଆଗେଇ ଯାଏ। ଠାକୁର ଟିକେ ଚୁପ୍ ହୋଇ ପୁନରାୟ କହିଲେ– ତୋର କଥା ଶୁଣି ମନରେ କଷ୍ଟ ହେଉଛି। ମୋର ନାମ କରି ମୋର ପାଞ୍ଜା ଧରି ତୋର ଏହି କର୍ମର ବିରୁଦ୍ଧାଚରଣ କରିବା ଅର୍ଥ ମୋର ବିରୁଦ୍ଧାଚରଣ କରିବା। ଏହା ଭଲ ନୁହେଁ। ସେହି ଋତ୍ୱିକ, କେତେବେଳେ ଏଠାରେ ଆସିଲେ ମୋତେ ଦେଖାଇ ଦେବୁ। ଏହିପରି ଠାକୁର ମୋର ମନର ସବୁକିଛି ଦୁଃଖକୁ ତାଙ୍କର କଲ୍ୟାଣ କର ହସ୍ତ ବୁଲାଇ ଘୁଞ୍ଚାଇ ଦେଇ ଯତି ଆଶ୍ରମ ସାମ୍ନାରୁ ଉଠି ଚାଲିଗଲେ ପରିସ୍ରା କରିବା ପାଇଁ। ପାଣି ଧରି ଲୋକ ଗଲେ ତାଙ୍କ ସାଙ୍ଗରେ। ମୁଁ ସେହି କାଠଗୁଡ଼ିକ ଭଲ କରି ଦେଖୁଛି। ଏହିପରି ସମୟରେ ଯତି ଆଶ୍ରମରୁ ବାହାରି ଜନୈକ ଯତି। ଶ୍ରୀ ଶ୍ରୀ ଠାକୁରଙ୍କର ଯତି ଆଶ୍ରମରେ ରହିଥିବା ୬ ଜଣ ଯତିଙ୍କ ମଧ୍ୟରେ ସେ ଜଣେ। ସୁଧୁ ତାହାହିଁ ନୁହେଁ, ଶ୍ରୀ ଶ୍ରୀ ଠାକୁର ସବୁବେଳେ ତାଙ୍କୁ, ଡାକନ୍ତି। ଶ୍ରୀ ଶ୍ରୀ ଠାକୁରଙ୍କୁ ପ୍ରଣାମ କରି ଯେଉଁ ଲୋକମାନେ ପ୍ରଣାମୀ ଟଙ୍କା ଦିଅନ୍ତି ସେ ସବୁ ଟଙ୍କା ଠାକୁର ତାଙ୍କରି ପାଖରେ ରଖନ୍ତି ଏବଂ ଶ୍ରୀ ଶ୍ରୀ ଠାକୁର କାହାରିକୁ କିଛି ଦେବାକୁ ଚହିଁଲେ ଉକ୍ତ ଯତିଙ୍କୁ କୁହନ୍ତି ଦେବାପାଇଁ। ଶ୍ରୀଶ୍ରୀ ଠାକୁରଙ୍କୁ ଗୁଡ଼ାଖୁ ଦେବା, ଗୋଡ଼ ଘଷିଦେବା ଏବଂ ମଝିରେ ମଝିରେ ଠାକୁରଙ୍କୁ ରନ୍ଧନ କରି ଖୁଆଇବା ଇତ୍ୟାଦି ଇତ୍ୟାଦି ବହୁ ଦିଗରେ ଶ୍ରୀ ଶ୍ରୀ ଠାକୁରଙ୍କ ସାଙ୍ଗରେ ସେ ଓତପ୍ରୋତ ଭାବରେ ଜଡ଼ିତ। ଠାକୁର ସବୁବେଳେ ତାଙ୍କୁ ଖୋଜନ୍ତି। ମୁଁ କାଠ ପାଖରେ ଠିଆ ହୋଇ ସେଗୁଡ଼ିକ ଭଲ ଭାବରେ ଦେଖୁଛି। ଏହି ସମୟରେ ସେ ଯତି, ଆସି କହିଲେ–ସୁଶୀଲଦା', ଏହି କାଠ ତ ଆପଣ ଆଣିଛନ୍ତି ଓଡ଼ିଶାରୁ? ମୁଁ କହିଲି– ହଁ, ଶ୍ରୀ ଶ୍ରୀ ଠାକୁରଙ୍କ ଆଶୀର୍ବାଦରେ ମୋ ପକ୍ଷରେ ସମ୍ଭବ ହୋଇଛି ଏହାକୁ ସଂଗ୍ରହ କରିବା। ସେ କହିଲେ–ଏଥିରୁ ଗୋଟିଏ ମୁର୍ଗା କାଠଗଣ୍ଡି ଆପଣ ମୋତେ ଦିଅନ୍ତୁ। ମୁଁ ବିସ୍ମିତ ହୋଇ ତାଙ୍କର ମୁହଁକୁ ଅନାଇଲି, ମୋର କାନ କିଛି ଭୁଲ ଶୁଣିଲା କି? ମୁଁ ପୁଣି କହିଲି– କ'ଣ କହୁଛନ୍ତି ଦାଦା ମୁଁ ବୁଝିପାରୁ ନାହିଁ? ଭାଇଟି ପୁନରାୟ ମୋତେ କହିଲେ– ଆପଣ ଏହି ଯେ କାଠ ଆଣିଛନ୍ତି, ଏହା ଭିତରୁ ଗୋଟିଏ ମୁର୍ଗା (ପିଆଶାଳ) କାଠ

ଭଲ ଦେଖି ମୋତେ ଦିଅନ୍ତୁ। ମୁଁ ସେଥିରେ ଆଲମାରୀ ଓ ଖଟ କରିବି- ମୁଁ କହିଲି ଦାଦା, ମୋତେ କାହିଁକି କାଠ କଥା କହୁଛନ୍ତି? ଏ କାଠ ତ ଶ୍ରୀ ଶ୍ରୀ ଠାକୁରଙ୍କ ପାଇଁ ଆସିଛି। ତାଙ୍କର ଜିନିଷ, ମୁଁ କିପରି ଆପଣଙ୍କୁ ଦେବି? ସେ କହିଲେ-- କାଠ ଆପଣ ଆଣିଛନ୍ତି। ଲୋକଙ୍କ ପାଖରେ ଆପଣ କହିବେ 'ମୋ ପାଇଁ ଆପଣ ଗୋଟିଏ କାଠ ଓଡ଼ିଶାରୁ ଆଣିଛନ୍ତି'। ତାହାହେଲେ ଆଉ କାହାରି କିଛି କହିବାର ନଥିବ। ତାଙ୍କର ଏହି ମିଥ୍ୟା ପ୍ରରୋଚନାମୂଳକ ତଥା ମୋର ଅନ୍ତରକୁ ବ୍ୟଥିତ କରି ଉଠାଇଲା। ଠାକୁର ଯାହାଙ୍କୁ ଏତେ ବିଶ୍ୱାସ କରନ୍ତି, ଡାକି ଡାକି ସବୁବେଳେ ପାଖେ ପାଖେ ରଖନ୍ତି, ଶ୍ରୀ ଶ୍ରୀ ଠାକୁରଙ୍କର ଟଙ୍କା ପଇସା ସବୁ ଯାହା ହାତରେ ରହେ, ସେହି ଲୋକ ମୁହଁରୁ ମୁଁ ଏ କ'ଣ ଶୁଣୁଛି? ମୁଁ ତାଙ୍କୁ କହିଲି- ମୁଁ ଆପଣଙ୍କୁ କୌଣସି ପ୍ରକାରରେ ସାହାଯ୍ୟ କରିପାରିବି ନାହିଁ। ଏ କାଠ ମୋର ନୁହେଁ, ଶ୍ରୀ ଶ୍ରୀ ଠାକୁରଙ୍କର। ଆପଣଙ୍କର ପ୍ରୟୋଜନ ଥିଲେ ତାଙ୍କ ପାଖରୁ ମାଗି ନିଅନ୍ତୁ। ମୋର ଏହି ଗମ୍ଭୀର କଥା ଶୁଣି ସେ ଆଉ କିଛି ନ କହି ସେଠାରୁ ଚାଲିଗଲେ। ତାଙ୍କର ଅନ୍ତରରେ ଦୁଃଖ ବା ଆଘାତ ହୁଏତ ମୁଁ ଦେଲି, କିନ୍ତୁ ମୁଁ କ'ଣ କରିବି? ଏହାପାଇଁ ମୁଁ କଅଣ ଦାୟୀ? ମୋର ମନ ଭିତରେ ଏକଥା ସବୁ ଥାଏ। ଶ୍ରୀ ଶ୍ରୀ ଠାକୁରଙ୍କୁ ଯାଇ ପଚାରିଲି- ଠାକୁର! ଆପଣ ଯେ ୬ ଜଣ ଯତି କରିଛନ୍ତି ସେମାନେ ତ ସାଧନାରେ ଖୁବ୍ ଉଚ୍ଚସ୍ତରରେ ଅଛନ୍ତି? ଶ୍ରୀ ଶ୍ରୀ ଠାକୁର ମୋତେ ସାଙ୍ଗେ ସାଙ୍ଗେ ବାଧା ଦେଇ କହିଲେ- ମୋର କୌଣସି ଯତି ନାହିଁ। ମୁଁ କହିଲି--ଠାକୁର! ଯେଉଁ ୬ ଜଣ ଯତି ଆପଣ ରଖିଛନ୍ତି ସେମାନେ କଅଣ ଯତି (ସନ୍ନ୍ୟାସୀ) ନୁହଁନ୍ତି କି? ଶ୍ରୀ ଶ୍ରୀ ଠାକୁର କହିଲେ- ମୁଁ ଯତି ଆଶ୍ରମ କରିଥିଲି, କେତେକ ଲୋକଙ୍କୁ ଯତି ବା ସନ୍ନ୍ୟାସୀ କରିବାର ଇଚ୍ଛା ଥିଲା। କିନ୍ତୁ ନିଷ୍ଠା ସହକାରେ ମୋର କଥା ପାଳନ କଲେ ନାହିଁ। ସମସ୍ତେ ଫେଲ କରିଗଲେ। ତେଣୁ ମୋର ଯତି କରିବାର ଇଚ୍ଛାଥିଲେ ମଧ୍ୟ କାହାରିକୁ ଯତି କରିପାରିଲି ନାହିଁ। କେହି ଯତି ନାହିଁ, ଏହା ଜାଣି ରଖିଥା। ମୁଁ କହିଲି--ଠାକୁର! ଏମାନେ ତ ନିଜକୁ ବାହାରେ ଯତି ବୋଲି ପ୍ରଚାର କରନ୍ତି ଓ ଅନ୍ୟାନ୍ୟ ସତ୍ସଙ୍ଗୀ ମାନେ ସେମାନଙ୍କୁ 'ଯତି' ବୋଲି ବହୁତ ଶ୍ରଦ୍ଧା ଭକ୍ତି କରନ୍ତି। ଶ୍ରୀ ଶ୍ରୀ ଠାକୁର କହିଲେ-- ମନୁଷ୍ୟ ହିଁ କ୍ଷୁଦ୍ର ସ୍ୱାର୍ଥ, ନାମ--ଯଶ, ଅର୍ଥ--ସଂପଦ ପାଇଁ ବହୁତ କିଛି ନିଜେ କରନ୍ତି ଓ ପ୍ରଚାର କରନ୍ତି। ଇଷ୍ଟଙ୍କ ଆଡ଼କୁ ଦେଖିବାର ତାଙ୍କର ବେଳ କାହିଁ? ଆଉ ସାଧାରଣ ଲୋକେ ଏ ସବୁ କାଥାରେ ବିଭ୍ରାନ୍ତ

ହୁଅନ୍ତି। ତାହାରି ପାଇଁ ତ ତୁମ୍ଭଙ୍କୁ କହିଛି— ଯାହା କିଛି ଜାଣିବାର ଥିବ, ବୁଝିବାର ଥିବ, ମୋ ପାଖରୁ ଜାଣିନେବ, ବୁଝିନେବ। ଶ୍ରୀ ଶ୍ରୀ ଠାକୁରଙ୍କ ନିକଟରେ ପୂର୍ବୋକ୍ତ ଯତିଙ୍କ ସମ୍ବନ୍ଧରେ ମୋର ଆଉ କିଛି କହିବାର ପ୍ରୟୋଜନ ହେଲା ନାହିଁ। ଭ୍ରାନ୍ତି ଓ ମିଥ୍ୟା ଉପରେ ନିଜର ଅଜ୍ଞତା ଯୋଗୁଁ ଯେଉଁସବୁ ଲୋକମାନଙ୍କୁ ମହାପୁରୁଷ, ସାଧୁ ଓ ସନ୍ନ୍ୟାସୀ ବୋଲି ଭାବୁଥିଲି ବିଭିନ୍ନ ଘଟଣା ସାଙ୍ଗରେ ତାଙ୍କର କୌଣସି ସମନ୍ୱୟ ନକରି ପାରି ମଝିରେ ମଝିରେ ପ୍ରଶ୍ନ ଜାଗି ଉଠୁଥିଲା— ଏତେ ବଡ଼ ବଡ଼ ଭକ୍ତ, ସେମାନଙ୍କ ପାଖରୁ ଶୁଣିଛି ତାଙ୍କର କେତେ ତ୍ୟାଗର କଥା, କିନ୍ତୁ ମିଶି ଦେଖୁଛି କ୍ଷୁଦ୍ର ସ୍ୱାର୍ଥ ବାହାରେ ପ୍ରାୟ କେହି ନାହାନ୍ତି। ଖୋଜି ପାଉ ନଥିଲି ଏହାର ମୂଳସୂତ୍ର। ଶ୍ରୀ ଶ୍ରୀ ଠାକୁର ଧରାଇ ଦେଲେ ମୋର ସେହି ଖୋଜୁଥିବା ସୂତ୍ରଟିକୁ।

ଆମ୍ଭମାନଙ୍କ ସମସ୍ତଙ୍କ ଭିତରେ ରହିଛି ଏହାର ଅଫୁରନ୍ତ ବୀଜ। ଠାକୁର ଯାହା କିଛି କହନ୍ତି ଆମ୍ଭେ ଚାଲୁଁ ତାର ବିପରୀତ। ଶ୍ରୀଶ୍ରୀ ଠାକୁର କରନ୍ତି ଆମ୍ଭମାନଙ୍କୁ ବିଶ୍ୱାସ, ଆମ୍ଭେ ଦେଉ ସେହି ବିଶ୍ୱାସରେ ବିଷ। ଠାକୁର ସେହି ବିଷ ଖାଇ ତାକୁ ହଜମ କରନ୍ତି, ତାଙ୍କ ପାଖରେ ରହିଥିବା ଅମୃତକୁ ଟୋକି ଧରନ୍ତି ଆମ୍ଭର ମୁହଁ ପାଖରେ। କ୍ରମାଗତ କହନ୍ତି—ଖାଅ, ଖାଅ। ତୁମ୍ଭେମାନେ ଅମୃତର ପୁତ୍ର, ଭୁଲି ଯାଅନାହିଁ ସେ କଥା। ଥରେ ଖାଇ ସ୍ୱାଦ ଦେଖ ଆଉ ଛାଡ଼ି ପାରିବ ନାହିଁ ତାକୁ। କିନ୍ତୁ ବିଶ୍ୱାସ ଆମେ ତାଙ୍କୁ କରୁଛୁ କି? ଠାକୁର ଅମୃତର ପାତ୍ର ଧରି ବୁଲୁଛନ୍ତି ଘରେ ଘରେ, ଦ୍ୱାରେ ଦ୍ୱାରେ। ଦୁର୍ଯ୍ୟୋଧନଙ୍କ ପାଖରେ ଶ୍ରୀକୃଷ୍ଣ ଏହିପରି କହିଥିଲେ—ବଞ୍ଚିରହ, ବଢ଼ି, ଉଠ। ପଞ୍ଚୁପାଣ୍ଡବଙ୍କୁ ଦେଇ ଦିଅ ପାଞ୍ଚଖଣ୍ଡ ଗାଁ, ଆଉ ନିଜେ ତୁମ୍ଭେ ଭୋଗକର ଏ ବିରାଟ ସାମ୍ରାଜ୍ୟ। କିନ୍ତୁ ଭଗବାନଙ୍କର ସେ କଥା ଉପେକ୍ଷା କରି, ଗୋଡ଼ ତଳେ ମାଡ଼ି ଦେଇ, ଦାମ୍ଭିକ ପଦକ୍ଷେପରେ ଆଗେଇ ଗଲେ ଦୁର୍ଯ୍ୟୋଧନ ତଥା ତାର ପଦାଙ୍କ ଅନୁସାରୀ ବିରାଟ ବାହିନୀ। କିନ୍ତୁ ଯେତେ ଶକ୍ତିରେ ଶକ୍ତିମାନ ହେଉ ନା କାହିଁକି, ଏହି ଆସୁରିକ ଶକ୍ତିକୁ ଦିନେ ଭୂପୃଷ୍ଠରେ ଶାୟିତ ହେବାକୁ ହେଲା କୁରୁକ୍ଷେତ୍ର ପ୍ରାଙ୍ଗଣରେ ସପରିବେଶରେ। ପ୍ରତି ମୁହୂର୍ତ୍ତରେ ଅନ୍ତରରେ ଜାଗ୍ରତ ହୋଇ ଉଠୁଛି ମୋର ଓ ଆମ୍ଭମାନଙ୍କର ପରିଣତି କଣ? ଇଷ୍ଟ ନିର୍ଦ୍ଦେଶ ପାଳନ ନ କରି ତାଙ୍କରି ନାମ ଧରି ତାଙ୍କରି ଗୁହାରି କରି ଅସଂଶୟଶଙ୍କାହୀନ ଚିତ୍ତେ କରି ଚାଲିଛୁ ତାଙ୍କରି ବିରୋଧିତା। ଏହି କଥା ଭାବି ଭାବି ସମ୍ମୁଖରେ ଉପସ୍ଥିତ ଶ୍ରୀ ଶ୍ରୀ ଠାକୁରଙ୍କ ଆଡ଼କୁ ଅନାଇ, ଶଙ୍କିତ

ମନ ଶଙ୍କାହାରୀର ଦର୍ଶନରେ ଅନ୍ତର ଶାନ୍ତ ହୋଇ ଉଠିଲା । ଏ ସବୁ ଚିନ୍ତା ଦୁଃସ୍ୱପ୍ନ ପରି ମନେହେଲା । ମନ ଭାବିବାକୁ ଲାଗିଲା ନା, ନା, କିଛି ଭୟ ନାହିଁ । ସମ୍ମୁଖରେ ରହିଛନ୍ତି ମୋର ଚିର ସୁନ୍ଦର, ଚିର ଅତନ୍ଦ୍ର ମୋର ଇଷ୍ଟ, ମୋର ଗୁରୁ ମୋର ସାରଥି । ଆଉ ଭୟ ନାହିଁ; ଯେତେ ଦୁର୍ବଳ ମୁଁ ହେଲେ ମଧ୍ୟ ତାଙ୍କରି ବଳରେ ବଳୀୟାନ୍ ହୋଇ ଉଠିବି ମୁଁ । ଆଉ କୌଣସି ବଳ ମୋର ନାହିଁ । ଏକମାତ୍ର ସେ ହିଁ ମୋର ଗତିର୍ଭର୍ତ୍ତା ପ୍ରଭୁ ।

## ବାଣୀ

ପ୍ରିୟରପ୍ରତି ନିଷ୍ଠା ନିଟୋଳ
ଅଦମ୍ୟଯା'ର ଭର୍ଜନା

ଶ୍ରେୟ ଚର୍ଯ୍ୟାହିଁ ଇପ୍‌ସା ଯାହାର
ନିଶ୍ଚିତତାର ବର୍ଦ୍ଧନା ।

ଶ୍ରୀଶ୍ରୀ ଠାକୁର

## ।। ଏଗାର ।।

ଏହାରି ସାଥେ ସାଥେ ଆଉ ଦିନକର ଘଟଣା ମନେ ପଡ଼ୁଛି। ଶ୍ରୀ ଶ୍ରୀ ଠାକୁର ଜାମତଲା କାଠଘରେ ଅଛନ୍ତି। ବୈଶାଖ ନବବର୍ଷ ଉତ୍ସବ ସରିଯାଇଛି। ଉତ୍ସବରେ ଆଗତ ହଜାର ହଜାର ଠାକୁରଙ୍କର ସନ୍ତାନମାନେ, ଯେ ଯାହାର ଗନ୍ତବ୍ୟ ସ୍ଥାନରେ ଫେରି ଯାଇଛନ୍ତି। ମୋର ଯିବାର ବେଳ ହୋଇ ନାହିଁ। ଶ୍ରୀ ଶ୍ରୀ ଠାକୁର ରଖିଛନ୍ତି ପାଖେ ପାଖେ, ମାସ ବିତିଯାଇଛି। ଦିନେ ଦ୍ୱୀପ୍ରହର। ବେଳପ୍ରାୟ ସାଢ଼େଏଗାରଟା ହେବ। ଏହିମାତ୍ର ଠାକୁରଙ୍କର ଭୋଗ ସରିଲା। ଯଜ୍ଞେଶ୍ୱର, ଯେ କି ସେତେବେଳେ ଠାକୁରଙ୍କର ରୋଷେଇ କରୁଥିଲା, ଠାକୁରଙ୍କର ଆହାର ପରେ ତାଙ୍କର ବାସନ ପତ୍ର ନେଇ ଚାଲିଗଲେ। ଜାମତାଲା ଘର ଭିତରେ ପ୍ରତିଦିନ ଆହାର ପରେ ମୁଁ ଯାଇ ଯେପରି ବସେ, ଏହା ଠାକୁରଙ୍କର ନିର୍ଦ୍ଦେଶ। ସେଦିନ ଯାଇ ସେଇଭଳି ଠାକୁରଘର ଭିତରେ ପ୍ରବେଶ କରି ଦେଖିଲି ଡାକ୍ତର ପ୍ୟାରୀଦା' ଠାକୁରଙ୍କୁ ଔଷଧ ଦେଉଛନ୍ତି। ନନୀମା' କଲକିରେ ଗୁଡ଼ାଖୁରେ ନିଆଁ ଦେଇ ଗଡ଼ଗଡ଼ା ଉପରେ ବସାଇ ଦେଲେ। କିନ୍ତୁ ମୁହଁରେ ଅନବରତ କ'ଣ ସବୁ କହିଚାଲିଛି, ମୁଁ ତାଙ୍କର କୌଣସି କଥା ବୁଝିପାରୁ ନାହିଁ। ଶ୍ରୀ ଶ୍ରୀ ଠାକୁର ତାଙ୍କୁ କହୁଛନ୍ତି– ତୁ ଏକଥା କହନା, କହନା। ଏହା କହିବା ଭଲ ନୁହେଁ। ନନୀମା' ଆହୁରି ଜୋରକରି କହୁଛନ୍ତି– ମୁଁ ନିଶ୍ଚୟ କହିବି, ନିଶ୍ଚୟ କହିବି। ମୋର ଏ କହିବା କେହି ବନ୍ଦ କରି ପାରିବେ ନାହିଁ। ଶ୍ରୀ ଶ୍ରୀ ଠାକୁର କହିଲେ– କହି କ'ଣ ପାଇବୁ ? ବରଂ ଏପଣି କାମ କର ଯାହାଦ୍ୱାରା କି ଏହାର ପ୍ରତିକାର ହୋଇପାରିବ। ଏପରି କହିବା ଦ୍ୱାରା ତୋର ନିଜର ହିଁ କ୍ଷତି ହେବ। ମୁଁ ଆନ୍ଦାଜରେ ବୁଝିଲି ନନୀମା (ଯେ କି ଶ୍ରୀ ଶ୍ରୀ ଠକୁରଙ୍କ ପାଖେ ପାଖେ ରହି ସବୁବେଳେ ସେବା ଇତ୍ୟାଦି କରୁଥିଲେ, ଏପରି ବହୁତ ସ୍ତ୍ରୀ, ପୁରୁଷ ଲୋକ ଭିତରେ ସେ ବି ଜଣେ) କାହାରି ବିରୁଦ୍ଧରେ ଠାକୁରଙ୍କ ପାଖରେ ଅଭିଯୋଗ କରିଛନ୍ତି ଏବଂ ସେହି ଅଭିଯୁକ୍ତ ବ୍ୟକ୍ତିଙ୍କୁ ଯାହା ଇଚ୍ଛା ତାହା ଗାଳି ଦେଉଛନ୍ତି। ଶ୍ରୀ ଶ୍ରୀ ଠାକୁର ଯେତେ ମନା କରୁଛନ୍ତି ସେ କିନ୍ତୁ ଶୁଣୁ ନାହିଁ। କ୍ରମାଗତ ଆହୁରି ବଢ଼ି ବଢ଼ି ଯାହା ମୁହଁକୁ ଆସୁଛି ତାହା ସେ କହି ଚାଲିଛନ୍ତି। ଠାକୁର ଗୁଡ଼ାଖୁ ନଳଟି ଧରି ମୁହଁରେ ନେଇ ଗୋଟିଏ ଦୁଇଟା 'ଟାଣ' ଦେବା ପରେ ପୁନର୍ବାର ନନୀମା'ଙ୍କୁ କହିଲେ– ଏ ସବୁ କଥା ଭଲ ନୁହେଁ। ଆଉ

ଯାହା ଭଲ ନୁହେଁ ତାହା କରିଲେ ଲାଭ ତ କିଛି ନାହିଁ; ବରଂ କ୍ଷତି ଆହୁରି ଅନେକ। ତୁ ଆଉ ଏ ସବୁ କଥା କହନା। ନନୀମା କହି ଉଠିଲେ– ମୁଁ ତ ନିଶ୍ଚୟ କହିବି। ଏହି କଥା ସାଙ୍ଗେ ସାଙ୍ଗେ ଠାକୁର ଗଡ଼ଗଡ଼ା ନଳଟିକୁ ଛାଡ଼ିଦେଇ ବାମ ହାତରେ ନନୀମାର ହାତଟିକୁ ଧରି ପକାଇଲେ, କହିଲେ– ଏହି କଥା କହିଲେ ତୋର ଖରାପ ହେବ, ମୁଁ ବାରମ୍ବାର କହୁଛି, ତଥାପି ତୁ ଜିଦ୍‌ଧରି କହୁଛୁ କାହିଁକି? ଇତର ପ୍ରାଣୀ ମଧ୍ୟ ନିଜର ଭଲ ବୁଝନ୍ତି। କହ, ଆଉ ଏଭଳି କଥା କହିବୁ ନାହିଁ। କିନ୍ତୁ ନନୀମା ଠାକୁରଙ୍କର ସେହି ଆଦେଶକୁ ପ୍ରତ୍ୟାଖାନ କରି ପୁଣି କହି ଉଠିଲେ– ମୁଁ ତ କହିବି, ନିଶ୍ଚୟ କହିବି। ଠାକୁର ଗୋଟିଏ ହାତରେ ନନୀମା'ର ହାତଟି ଧରିଥିଲେ। ଆଉ ଅନ୍ୟ ଡାହାଣ ହାତରେ ନିଜର ଗାଲରେ ଯଥାଶକ୍ତି ଥାପଡ଼ ମାରିବାକୁ 'ଆରମ୍ଭ କରେ। କ୍ରମାଗତ ଦୁଇ ଗାଲରେ ଠାକୁର ନିଜ ହାତରେ ଥାପଡ଼ ଦେଇ ଚାଲିଛନ୍ତି। ମୁହଁରେ କହୁଛନ୍ତି– କହ, ତୁ ଆଉ ଏ କଥା କହିବୁ ନାହିଁ। ନନୀମା' କିନ୍ତୁ ଚୁପ୍ ହୋଇ ରହିଛନ୍ତି। ମୁହଁରେ କିଛି କହୁ ନାହିଁ। ଠାକୁର ନିଜକୁ ନିଜେ ମାଡ଼ ଖାଇ ଚାଲିଛନ୍ତି। ନନୀମା' ତାର ଭୁଲ ସ୍ୱୀକାର କରୁନାହିଁ। ଏହି ଠାକୁର ମଧ୍ୟ ନିଜେ ମାଡ଼ ଖାଇବାଠାରୁ ବିରତ ହେଉ ନାହାନ୍ତି। ଏହି ଦୁର୍ବିସହ ଚିତ୍ର ଦେଖି ହେଉ ନାହିଁ। ଉପସ୍ଥିତ ଦୁଇ ଚାରିଜଣ ଯେଉଁମାନେ ଥିଲେ କଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଛନ୍ତି। ମୁଁ କୌଣସି ପଥ ନପାଇ ଛୁଟି ଚାଲିଗଲି ବଡ଼ମା' ପାଖକୁ। ବଡ଼ମା' ବରାଳବାଙ୍ଗଲାର ତାଙ୍କ ଘରେ ବସି ଠାକୁରଙ୍କ ଭୋଗ ପାଇବାର ଉଦ୍ୟୋଗ କରୁଛନ୍ତି। ମୁଁ ଯାଇ ତାଙ୍କୁ କହିଲି– ମା! ଠାକୁର ନିଜ ହାତରେ ମାଡ଼ ଖାଉଛନ୍ତି। ନନୀମା'କୁ କ'ଣ କହିବାକୁ ମନା କରୁଛନ୍ତି। କିନ୍ତୁ ନନୀମା' ଠାକୁରଙ୍କର ସେହି ଆଦେଶ ପ୍ରତ୍ୟାଖାନ କରି ''କହିବି, କହିବି'' ବୋଲି କହି ଏବେ ଚୁପ୍ ହୋଇ ରହିଛନ୍ତି। ଠାକୁ କିନ୍ତୁ ନିଜକୁ ନିଜେ ମାଡ଼ ଖାଇ ଚାଲିଛନ୍ତି। ଆପଣ ଆସନ୍ତୁ, ଠାକୁରଙ୍କୁ ଏଥିରୁ ବିରତ କରନ୍ତୁ। ବଡ଼ମା' କହି ଉଠିଲେ– ମୁଁ ତ ଚାଲିପାରୁ ନାହିଁ। ମୋର ଗୋଡ଼ରେ ଅପରେସନ୍ ହୋଇଛି। ତୁ ଦଉଡ଼ି ଯା, ଯେପରି ହେଲେ ବନ୍ଦ କର। ପୁଅ ହୋଇ ବାପକୁ କିପରି ରକ୍ଷା କରିବାକୁ ହେବ ତାହା ପଚାରିବାକୁ ମୋ ପାଖକୁ ଆସିଛୁ ନା? ବଡ଼ମା'ର ଏହି ଆଦେଶ ପାଇ ମୁହୂର୍ତ୍ତ ବିଳମ୍ବ ନକରି ମୁଁ ଦୌଡ଼ି ଆସିଲି ଜାମତଲା ଘରେ। ଆସି ଦେଖିଲି ଅବସ୍ଥାର କିଛିମାତ୍ର ପରିବର୍ତ୍ତନ ହୋଇନାହିଁ।

ଏକମାତ୍ର ନନୀମା'ର ହାତ ଛାଡ଼ି ଦେଇ ଦୁଇ ହାତରେ ଠାକୁର ପିଟି ହେଉଛନ୍ତି ତାଙ୍କର ନିଜର ଦୁଇ ଗାଲରେ। ଠାକୁରଙ୍କ ସମସ୍ତ ମୁହଁ ଲାଲ ପଡ଼ି ଯାଇଛି। ଯାହାପାଇଁ ଠାକୁର ଏହି ଶାସ୍ତି ନିଜେ ନେଉଛନ୍ତି, ସେ କିନ୍ତୁ ପ୍ରସ୍ତରବତ୍ ନିଜେ ଠିଆ ହୋଇଛି। ଥରେ ହେଲେ କହୁନି ଯେ ଠାକୁର, ଆପଣ ଯାହା କହୁଛନ୍ତି ମୁଁ ସେହି ପଥ ମାନି ନେଇ ଆଗେଇ ଯିବି। ଯାହା ହେଉ, ମୋର ଆଉ ଚିନ୍ତା କରିବାର ବେଳ ନାହିଁ। ଘର ଭିତରେ ପଶି ଠାକୁରଙ୍କ ଦୁଇ ହାତ ସହିତ ଠାକୁରଙ୍କୁ କୁଣ୍ଢାଇ ଧରିଲି। କାନ୍ଦିପଡ଼ି କହିଲି– ଠାକୁର! ଏହା ଆଉ ସହ୍ୟ ହେଉନାହିଁ। ଆମ୍ଭମାନଙ୍କର ମଙ୍ଗଳ ପାଇଁ ଆପଣ କାହିଁକି ନିଜେ ନିଜେ ଶାସ୍ତି ପାଉଛନ୍ତି? କେହି ଆପଣଙ୍କର କଥା ନ ଶୁଣି ଯଦି ନରକକୁ ଯିବେ, ତାକୁ ଯିବାକୁ ଦିଅନ୍ତୁ। ଆପଣଙ୍କର ଏ ଦୃଶ୍ୟ ଆଉ ଦେଖି ହେଉନାହିଁ। ଠାକୁରଙ୍କୁ ଶକ୍ତ ହାତରେ ମୁଁ କୁଣ୍ଢାଇ ଚାପି ଧରିଥିଲି। ଠାକୁର ଧୀର ଓ ସ୍ୱାଭାବିକ ସ୍ୱରରେ ମୋତେ କହିଲେ– ଛାଡ଼ିଦେ। ଏଇ ସେହି ସୁମଧୁର ସ୍ୱର ଯାହା ଶୁଣିବା ପାଇଁ ପ୍ରାଣ ସବୁବେଳେ ଆକୁଳ ଆଗ୍ରହରେ ଅପେକ୍ଷା କରେ। ମୁଁ ଛାଡ଼ି ଦେଲି। ସାଙ୍ଗେ ସାଙ୍ଗେ ଠାକୁରଙ୍କୁ କହିଲି– ଠାକୁର! ଆପଣଙ୍କ ଗୋଡ଼ତଳେ ପଡୁଛି ଆପଣ ଆଉ ଏପରି ମାଡ଼ ଖାଆନ୍ତୁ ନାହିଁ। ଶ୍ରୀ ଶ୍ରୀ ଠାକୁର କହିଲେ– ତୁ ମୋତେ ଧର ଭଲ କଲୁ ନାହିଁ। ନନୀର ମନ ଭିତରେ ମନୁଷ୍ୟ ବିରୋଧରେ ଯେଉଁ ଅଭିଯୋଗ ରହିଛି ତାହା ସେହିପରି ରହିଗଲା। ତାହାର ମୂଳୋତ୍ପାଟନ କରିବା ଦରକାର ଥିଲା।

ନନୀମା' କିନ୍ତୁ ଟିକେ ଦୂରରେ ଛିଡ଼ା ହୋଇ ଏସବୁ କଥା ଶୁଣି କହିଲେ– ଠାକୁର, ମୋର କିଛି ଦୋଷ ନାହିଁ। ମୋର ଅନ୍ତର ଶଙ୍କିତ ହୋଇ ଉଠିଲା ପୁଣି ଠାକୁର ପୂର୍ବାବସ୍ଥାରେ ଫେରିଯିବେ କି? ନନୀମା' ଉପରେ ମୁଁ ରାଗି ଉଠିଲି। କହିଲି– ଆପଣ ଏଠାରୁ ବାହାରିଯାନ୍ତୁ। ମୁଁ ଜାଣେନା ମୋର ସେହି କଠିନ ସ୍ୱରରେ କ'ଣ ଥିଲା। ନନୀମା' ଧୀରେ ଘରୁ ବାହାରି ଚାଲିଗଲେ। ଶ୍ରୀଶ୍ରୀ ଠାକୁରଙ୍କ ଦେହରୁ ଦର ବିଗଳିତ ଧାରେ ଝାଳ ବୋହି ଚାଲିଛି। ମୁଁ ଏକ ହାତପଙ୍ଖା ଆଣି ବିଞ୍ଚିବାକୁ ଆରମ୍ଭ କଲି। ଶ୍ରୀ ଶ୍ରୀ ଠାକୁର ଧୀର ଉପରେ କହିଲେ ପଙ୍ଖା ବିଞ୍ଚି ନାହିଁ, ଥଣ୍ଡା ଲାଗିଯିବ। ଗାମୁଛା ଦେଇ ମୋର ଦେହଟାକୁ ପୋଛି ଦିଅ। ମୁଁ ତାଙ୍କ ଆଦେଶରେ ଗାମୁଛା ଦେଇ ତାଙ୍କର ଦେହ ମୁହଁ ଇତ୍ୟାଦି ଭଲ କରି ପୋଛି ଦେଲି।

ଇତି ମଧ୍ୟେ ପ୍ୟାରୀଦା' ପୁନର୍ବାର ଗୁଡ଼ାଖୁ ଆଣି ଗଡ଼ ଗଡ଼ା ନଳ ଠାକୁରଙ୍କ ହାତରେ ଦେଲେ। ଶ୍ରୀ ଶ୍ରୀ ଠାକୁର ଧୀରେ ଧୀରେ ଗୁଡ଼ାଖୁ ଟାଣିବାକୁ ଲାଗିଲେ। ଅଳ୍ପ ଟିକକ ପରେ ମୁଁ ପଙ୍ଖା ବିଞ୍ଚିବାକୁ ଆରମ୍ଭ କଲି। ଠାକୁର ପୁଣି କହିଲେ– ମନୁଷ୍ୟ ଭିତରେ ବହୁତ ଗ୍ରନ୍ଥି ରହିଛି। ସେହି ସବୁ ଗ୍ରନ୍ଥିକୁ ଫିଟାଇବାକୁ ହେଲେ ତାପାଇଁ ବହୁତ କିଛି କରିବାକୁ ହୁଏ, ତୁ ମୋ ପାଖରେ ରହୁଛୁ ମନେ ରଖିଥିବୁ, ମୁଁ ଯେତେବେଳେ ଯାହା କହୁଛି କରୁଛି ବିନା କାରଣରେ କିଛି କରୁନାହିଁ, ଏପରିକି ଗୋଟିଏ ଆଙ୍ଗୁଳି ହଲାଇବା ମଧ୍ୟରେ ମଧ୍ୟ ପରମପିତାର ବହୁତ କିଛି ଇଙ୍ଗିତ ରହିଛି। ବିନା କାରଣରେ କେବେହେଲେ ଗୋଟିଏ ଆଙ୍ଗୁଳି ମଧ୍ୟ ମୁଁ ହଲାଏ ନାହିଁ। ଆଜି ନନୀ ଯେଉଁ ଅବସ୍ଥାରେ ରହିଲା ଏ ଜୀବନରେ ଆଉ ତାହା କେବେ ସଂଶୋଧନ ହେବ ନାହିଁ। ଠାକୁରଙ୍କର ଏକଥା ଶୁଣି ଭାବିବାକୁ ଲାଗିଲି– ସାଧାରଣ ଜଣେ ସ୍ତ୍ରୀ ଲୋକର ଗୋଟିଏ ଗ୍ରନ୍ଥି ଫିଟାଇବାପାଇଁ କି ଏହି ଅଦ୍ଭୁତ ଜୀବନ ପଣ ଚେଷ୍ଟା! (ହୁଏତ ନିଜେ ମାଡ଼ ଖାଇ ଖାଇ ମରି ମଧ୍ୟ ଯାଇ ପାରିଥାନ୍ତେ) ଏହି ବିନ୍ଦୁ ବିନିମୟରେ ସିନ୍ଧୁ କିଏ ଦେଇପାରେ? ସ୍ୱୟଂ ପରମପିତା ଛଡ଼ା। ତାର ପୁତ୍ର କନ୍ୟା ପାଇଁ ଆଉ କାହା ଦ୍ୱାରା ସଂଭବ ଏହା? ଠାକୁରଙ୍କୁ ମାଡ଼ ଖାଇବାରୁ ବିରତ କରିବା ପାଇଁ ଠାକୁର ମୋତେ ଦୋଷୀ କଲେ ମଧ୍ୟ ମୁଁ ମନେ ମନେ କହିଲି– ଠାକୁର! ମୋର ଏହି ଭୁଲ କରିବା ଦ୍ୱାରା ମୋର ଯଦି କିଛି ପାପ ହୋଇଥାଏ ତାହା ହେଉ। ଏପରିକି ଏହା ପାଇଁ ଯଦି ମୋତେ ନରକକୁ ଯିବାକୁ ପଡ଼େ ସେଥିରେ କିଛି ଯାଏ ଆସେ ନାହିଁ। ମୋର ଅନ୍ତରରେ ବଳ ଦିଅ ଠାକୁର, ମୁଁ ଯେପରି ଧର୍ମ ଅଧର୍ମ, ପାପ–ପୁଣ୍ୟ, କୌଣସି କିଛିର ପଛରେ ନ ରହି ଆପଣଙ୍କ ପ୍ରତି ଅଚ୍ଛେଦ୍ୟ ଟାଣ ରଖିପାରେ। ଭଲ ପାଇ ପାରେ ଆପଣଙ୍କୁ ଯେ କୌଣସି ଅବସ୍ଥା ଭିତରେ ମଧ୍ୟ। ଆପଣଙ୍କ ଠାରୁ ଆକର୍ଷଣୀୟ ଯେପରି ମୋ ପାଖରେ ଆଉ କିଛି ନ ରହେ। ଧୀରେ ଧୀରେ କିଛି ଲୋକ ଆସି ଜମା ହେଲେ। ମୁଁ ପଙ୍ଖା ବିଞ୍ଚିବାକୁ ଲାଗିଲି। ଠାକୁର ଶୋଇପଡ଼ି ଧୀରେ ଧୀରେ ଆଖି ବୁଜିଲେ। ଭଗବାନଙ୍କର ବହୁତ କଥା ଜନ୍ମଠାରୁ ଟିକେ ବୋଧହେବା ପରେ କେତେ ଶୁଣି ଆସୁଛି। କିନ୍ତୁ ମୋର ଆଖି ସାମ୍ନାରେ ନିଦ୍ରିତ ନା ଆଉ କିଛି ଏହି ଲୋକଟି, ଯାହାଙ୍କୁ ଦେଖୁଛି ପୃଥିବୀର କାହାରି ସଙ୍ଗରେ ତାଙ୍କର ମେଳନାହିଁ କିନ୍ତୁ ସେ ମିଳାଇ ଚାଲିଛନ୍ତି ସମସ୍ତଙ୍କ ସହିତ। ଇଷ୍ଟରୂପେ ଆବିର୍ଭୂତ ହୋଇଛନ୍ତି, ଚାହୁଁଛନ୍ତି ସମସ୍ତଙ୍କର ମଙ୍ଗଳ ଏବଂ ନିଜ ହାତରେ କରି ଚାଲିଛନ୍ତି ସମସ୍ତଙ୍କର ମଙ୍ଗଳ ବା ଶୁଭ। ଏହି ତ ସେହି ଆଚରଣଶୀଳ

ଆଚାର୍ଯ୍ୟ। ଏହି ପ୍ରସଙ୍ଗରେ ଠାକୁର କିଛି ସମୟ ପରେ ନିଦ୍ରାଭଙ୍ଗେ ମୋତେ କହିଲେ– ମନୁଷ୍ୟ ନିଜକୁ ନିଜେ ଭଲପାଏ ବୋଲି ମନେ କରେ। କିନ୍ତୁ ଅଜଣା ଭିତରେ ଏପରି କର୍ମ କରେ ଯାହାଦ୍ୱାରା କି ନିଜର ଭଲ କିଛି ନ ହୋଇ ବରଂ ଉତ୍ତରୋତ୍ତର ଖରାପ ଆଡ଼କୁ ଚାଲିଯାଏ। ଗୁରୁ ଯେ, ସେ ଦୟାକରି ମନୁଷ୍ୟ ନ ଚାହିଁଲେ ମଧ୍ୟ ଚେଷ୍ଟା କରନ୍ତି ଶୁଭ ପଥକୁ ଆଣିବା ପାଇଁ ଏବଂ ତାଙ୍କର ଏ ଚେଷ୍ଟା କେବେ ବ୍ୟର୍ଥ ହୁଏ ନାହିଁ, ଯଦିବା ଡେରି ହୋଇପାରେ। କିନ୍ତୁ ତାଙ୍କ ନର୍ଦ୍ଦେଶିତ କଥା ଶୁଣିଲେ ଏବଂ ସେହି ଭାବରେ ଚାଲିଲେ ଅତି ସତ୍ୱର ଲୋକ କର୍ମଫଳ କଟାଇ ଆଗେ ଚାଲନ୍ତି। ଆଉ ନ ଶୁଣିଲେ ବିଳମ୍ବ ହୁଏ। କାହିଁକି ନା ସେହି ସର୍ବଜ୍ଞ ପୁରୁଷ, ସଦ୍‌ଗୁରୁ ସିଧା ପଥରେ ଯାଉନାହିଁ ଦେଖି ତାଙ୍କର ସନ୍ତାନକୁ ଯେଉଁ ପଥରେ ଯେ ଭାବରେ ଗଲେ ତାଙ୍କର ମଙ୍ଗଳ ହେବ ତାହା ପାଇଁ ବର୍ଷ ପରେ ବର୍ଷ, ଯୁଗ ପରେ ଯୁଗ ଧରି ବୁଲି ବୁଲି ଶେଷ ପର୍ଯ୍ୟନ୍ତ ତାଙ୍କର ମଙ୍ଗଳ କରନ୍ତି। ଏହାହିଁ ସଦ୍‌ଗୁରୁର ବୈଶିଷ୍ଟ୍ୟ। କଥା ପ୍ରସଙ୍ଗରେ ଠାକୁର କହିଲେ– ଥରେ ଜଣେ ଲୋକ ଆସି ମୋ ପାଖରେ କହିଲେ ବଡ଼ଖୋକା (ବଡ଼ଦା) କୁଆଡ଼େ ତାଙ୍କର ଗୋଟିଏ ସାଇକେଲ ଚୋରୀ କରି ନେଇଯାଇଛନ୍ତି। ମୁଁ ବଡ଼ଖୋକାକୁ ଡାକି ଆଣି ପଚାରିଲି ଏହା କ'ଣ ସତ୍ୟ? ତୁ ଏହାର ସାଇକେଲ ଚୋରୀ କରି ଆଣିଛୁ? ବଡ଼ଖୋକା ମନା କଲା। ସେ କାମ କରି ନାହିଁ। ଯେଉଁ ଲୋକଟି ମୋ ପାଖରେ ନାଲିଶ ଜଣାଇ ଥିଲା ସେ ମଧ୍ୟ ସେଠାରେ ଠିଆ ହୋଇଛନ୍ତି। ମୁଁ କହିଲି– ମିଛ, ମିଛ, ମୋ ପାଖରେ ମିଛ କହୁଛ? ଏ କଥା କହି ବଡ଼ଖୋକାକୁ ପିଟିବାକୁ ଆରମ୍ଭ କଲି। ବଡ଼ଖୋକା ମାଡ଼ ଖାଇ ଚାଲିଛି। ମୁଁ ବାରମ୍ବାର କହୁଛି–ସତ୍ୟ କୁହ, ସତ୍ୟ କୁହ। ଛୋଟଖୋକା (ମନି ବା ଛୋଟଦା) ମଝିରେ ପଡ଼ି ବଡ଼ଖୋକାକୁ କୁଣ୍ଢାଇ ଧରିଲା। ମୋର ମାଡ଼ ମନି ଦେହ ଉପରେ ପଡ଼ିବାକୁ ଲାଗିଲା। ମାରୁ ମାରୁ ମୁଁ ଶ୍ରାନ୍ତ କ୍ଳାନ୍ତ ହୋଇ ପଡ଼ିଛି। ଆଜି ଯେପରି ଦେହରୁ ଝାଳ ବହୁଥିଲା, ସେପରି ଝାଳ ବହୁଛି। ଏପରି ଅବସ୍ଥା ଦେଖି ଯେ ଆସି ସାଇକେଲ ଚୋରୀ କଥା ମୋ ପାଖରେ କହିଥିଲା ସେ ଆସି କାନ୍ଦି ପଡ଼ି ମୋ ଗୋଡ଼କୁ କୁଣ୍ଢାଇ ଧରିଲେ ଏବଂ କହିଲେ– ଠାକୁର! ମୋତେ କ୍ଷମା କରନ୍ତୁ। ମୁଁ ବଡ଼ଖୋକା ନାମରେ ମିଛ କଥା କହିଛି। ବଡ଼ଖୋକା ସାଙ୍ଗରେ ମୋର ଝଗଡ଼ା ହୋଇଥିଲା। ତାଙ୍କୁ ଶାସ୍ତି ଦେବା ପାଇଁ ମୁଁ ଆସି ଆପଣଙ୍କ ଆଗରେ ମିଛ କହିଛି। ମୋର ସାଇକେଲ ଚୋରୀ ହୋଇନାହିଁ। ମୁଁ ତାଙ୍କୁ ଲୁଚାଇ ରଖିଛି। ଏହି

ଭାବରେ ସେ ତାର ଦୋଷ ସ୍ୱୀକାର କରି ସତ୍ୟ କଥା କହିଲେ। ବଡ଼ଖୋକା ଓ ମନି ମାଡ଼ ଖାଇଲା।

କିନ୍ତୁ ଏକଥା ବଡ଼ ନୁହେଁ, ବଡ଼ ହେଲା ତାହାହିଁ ମିଥ୍ୟାଶ୍ରିତ ଲୋକ ଅନ୍ତରରୁ ଉପଲବ୍ଧି କଲା ସତ୍ୟକୁ। ଏହା ମୋ ପାଖରେ ଖୁବ୍ ଆନନ୍ଦଦାୟକ ହୋଇ ଉଠିଲା। ମୋର ଆହୁରି ଭଲ ଲାଗିଲା ଯେତେବେଳେ ବଡ଼ଖୋକାକୁ ମୁଁ ପିଟୁଥିଲି, ଆଉ ମନି (ଛୋଟଦା, ବିବେକରଞ୍ଜନ ଚକ୍ରବର୍ତ୍ତୀ) ନିଜ ପିଠିରେ ସେ ମାଡ଼ ନେଇ ତାର ଭାଇକୁ ମାଡ଼ ଖାଇବା ହାତରୁ ବଞ୍ଚାଇବାର ଆପ୍ରାଣ ଚେଷ୍ଟା ଦେଖି। ଠାକୁରଙ୍କ ଏ କଥାରୁ ମୁଁ ବୁଝିଲି– ଠାକୁର ଯେତେବେଳେ ଯାହା କରନ୍ତି, ବା ଯେଉଁ କର୍ମରେ ହାତ ଦିଅନ୍ତି ତାହାର ଚୂଡ଼ାନ୍ତ ମଙ୍ଗଳ କରି ଛାଡ଼ନ୍ତି। ଟିକିଏ ଚେର ରହିବା ପର୍ଯ୍ୟନ୍ତ ସେଥିରୁ ବିରତ ରହନ୍ତି ନାହିଁ। ତାଙ୍କୁ ଯେତେ ଦେଖୁଛି, ଯେତେ ତାଙ୍କ କଥା ଶୁଣୁଛି ଓ ଜାଣିବାର ସୌଭାଗ୍ୟ ହେଉଛି ସେତିକି ନିଜ ଜୀବନକୁ ଧନ୍ୟ ମଣୁଛି। ଏହି ଜୀବନରେ ତାଙ୍କୁ ଗୁରୁ ବୋଲି ପାଇଛି ବୋଲି। ମୁଁ ଠାକୁରଙ୍କୁ ପଚାରିଲି–ଠାକୁର! ଆପଣ ଯେତେବେଳେ ବଡ଼ଦାଙ୍କୁ ମାରୁଥିଲେ ସେତେବେଳେ ମୁହଁରେ କହୁଥିଲେ ''ସତ୍ୟ କହ, ସତ୍ୟକହ''। କିନ୍ତୁ ବଡ଼ଦା'ତ ସତ୍ୟ କହୁଥିଲେ ଯେ ସେ ଚୋରୀ କରି ନାହାନ୍ତି। ତଥାପି ଆପଣ ତାଙ୍କୁ ମାରିବାରୁ ବିରତ ହେଉ ନଥିଲେ କାହିଁକି? ଶ୍ରୀଶ୍ରୀ ଠାକୁର କହିଲେ–

ବଡ଼ଖୋକା ଚୋରୀ କରି ନ ଥିଲା, ଏକଥା ମୁଁ ଜାଣିଥିଲି ଏବଂ ଯେଉଁ ଲୋକ ଆସି ମୋ ପାଖରେ ନାଲିଶ କରୁଥିଲା ତାଙ୍କ ସାଇକେଲ ଚୋରୀ ହୋଇ ନାହିଁ; ଏକଥା ମଧ୍ୟ ଜାଣିଥିଲି। ଆଉ ଯେଉଁ ମିଥ୍ୟାର ଆଶ୍ରୟ ନେଇ ସେ ଆସି ମୋ ପାଖରେ ନାଲିଶ କଲା ସେହି ମିଥ୍ୟାର ବୀଜକୁ ଉତ୍ପାଟନ କରିବା ଦରକାର। ଆଉ ଗୋଟିଏ କଥା ହେଉଛି– ଏତେ ଲୋକ ଥାଉଁ ଥାଉଁ ସେ ଆସି ବଡ଼ଖୋକା ନାମରେ କାହିଁକି ଅଭିଯୋଗ କଲା? ବଡ଼ ଖୋକାକୁ ସେ ଶତ୍ରୁ ବୋଲି ଭାବୁଛି। ଯାହାପାଇଁ କି ତା'ଉପରେ ତାର ଦରଦ ନାହିଁ। ବଡ଼ଖୋକା ଶାସ୍ତି ପାଇଲେ ସେ ଖୁସି ହେବ। ବଡ଼ଖୋକା (ବଡ଼ଦା) ତାଙ୍କ ସାଙ୍ଗରେ ଏଭଳି ସଂପର୍କ ସ୍ଥାପନ କଲା କାହିଁକି? ଏହାଦ୍ୱାରା ବଡ଼ଖୋକାର ଯେ କିଛି ଦୋଷ ନାହିଁ ତାହା ନୁହେଁ, ତାହାର ବ୍ୟବହାରରେ ସମସ୍ତେ ତାଙ୍କୁ ନିଜର ବୋଲି ଭାବିବା ଉଚିତ। ଏହା ଖାଲି ବଡ଼ଖୋକା ପାଇଁ କହୁନାହିଁ, ତୁମ୍ଭଙ୍କୁ ମଧ୍ୟ କହୁଛି, ସମସ୍ତଙ୍କ ପାଇଁ ସେହି ଏକ ହିଁ

କଥା। ଯାହାହେଉ ପରମ ପିତାଙ୍କର ଦୟାରେ ଶେଷପର୍ଯ୍ୟନ୍ତ ସତ୍ୟହିଁ ପ୍ରତିଷ୍ଠିତ ହେଲା। ମୁଁ "ସତ୍ୟ କହ, ସତ୍ୟକହ" ବୋଲି କହୁଥିଲି ତାହା ଏକମାତ୍ର ବଡ଼ଖୋକା ପାଇଁ ନୁହେଁ, ଯେ ଆସି ମିଥ୍ୟା ଅଭିଯୋଗ କରିଥିଲା ତାଙ୍କ ସହ ଉପସ୍ଥିତ ସମସ୍ତଙ୍କୁହିଁ। ସତ୍ୟ କହିବା ପାଇଁ ଅନୁରୋଧ କରୁଥିଲି, ଉପସ୍ଥିତି ଘଟଣାଟି ଉପଲକ୍ଷ ମାତ୍ର। ପୁଣି ଶ୍ରୀଶ୍ରୀ ଠାକୁର କହିଲେ– ଏହି ଦିଗରୁ ମୁଁ ମହା ସ୍ୱାର୍ଥପର ଲୋକ। କୌଣସି ସୁଯୋଗ ଆସିଲେ ମୁଁ ତାହାର ପୂର୍ଣ୍ଣ ସୁଯୋଗ ନେଇ ଛାଡ଼େ, ଯଦ୍ୱାରା କି ସପରିବେଶ ସମସ୍ତଙ୍କର ଶୁଭ ହୋଇ ପାରିବ। କ୍ରମାଗତ ମୋର ବିସ୍ମୟର ପାଲା ଚାଲିଛି। କି ବିଚାର କରିବି ଠାକୁରଙ୍କର, କେଉଁ କଥା, କେଉଁ ବ୍ୟବହାର? ଯେତିକି ଦୟାକରି ମୋତେ କହିଲେ, ନ କହି ଆହୁରି କେତେ କୋଟି କୋଟି କଲ୍ୟାଣ କରି ଚାଲିଛନ୍ତି ଜଗତର, ପ୍ରତିଟି ଜୀବର। ମୋପରି କ୍ଷୁଦ୍ର ଦୃଷ୍ଟି ସମ୍ପନ୍ନ ବ୍ୟକ୍ତି କି ବୁଝିବ ତାହା! ଘଟଣାଗୁଡ଼ିକ ତୋଳି ଧରୁଛି। ସାଧକ, ଭକ୍ତ, ସମାଲୋଚକ, ପୃଥିବୀର ଲୋକ ବିଚାରକରି ଦେଖିବେ ଯେ ଯାହାର ଦୃଷ୍ଟି ଦେଇ। ତଥାପି ସତ୍ୟ ସତ୍ୟ ତାଙ୍କର ବିଚାର କେହି କରି ପାରିବେ କି? ମୁଁ ବା କେତେ ପ୍ରକାଶ କରି ପାରୁଛି, ଯାହା ମୁଁ ଦେଖିଛି, ଯାହା ମୁଁ ଉପଲବ୍ଧି କରିଛି।

ଭାଷାହୀନ ଭାବ ସେ ତ କହିବାକୁ ଚାହେଁ।
ଅବ୍ୟକ୍ତ ଯାତନା ବୁକେ ପଥ ନାହିଁ ପାଏ॥

## ।। ବାର ।।

ଅତି କ୍ଷୁଦ୍ର, ଅତି ଦୁର୍ବଳ ମନୁଷ୍ୟ ମୁଁ। ଶ୍ରୀଶ୍ରୀ ଠାକୁର ଦୟାକରି ପାଖେ ପାଖେ ରଖି ଯେଉଁ ଜୀବନର ସନ୍ଧାନ ମୋ ସମ୍ମୁଖରେ ଉପସ୍ଥିତ କଲେ ସେହି ନବ ନବ ଘଟଣା ଗୁଡ଼ିକ ମୁଁ କେବେହେଲେ ଭୁଲି ପାରୁନାହିଁ। ଦିନେ ପହିଲା ବୈଶାଖ, ନବବର୍ଷ ଉତ୍ସବ ଚାଲିଛି। ଶ୍ରୀଶ୍ରୀ ଠାକୁରଙ୍କ ଦେହ ଭଲ ନାହିଁ। ଯତି ଆଶ୍ରମରେ ଠାକୁରଙ୍କ ଦେଇଥିବା ଆଶୀର୍ବାଣୀ ପୂଜ୍ୟପାଦ ଋତ୍ୱିକ ଆଚାର୍ଯ୍ୟ ଶ୍ରୀଯୁକ୍ତ କୃଷ୍ଣପ୍ରସନ୍ନ ଭଟ୍ଟାଚାର୍ଯ୍ୟ ମାଇକ ଦ୍ୱାରା ପାଠ କରି ସମସ୍ତଙ୍କୁ ଶୁଣାଉଛନ୍ତି। ତିରିଶ, ପଇଁତିରିଶ ହଜାର ଲୋକ ସମାବେଶ ହୋଇଛନ୍ତି ଯତି ଆଶ୍ରମର ସମ୍ମୁଖସ୍ଥ ପ୍ରାଙ୍ଗଣରେ। ଶ୍ରୀଶ୍ରୀ ଠାକୁର ଅସୁସ୍ଥ ଦେହ ନେଇ ବଡ଼ାଲ ବଙ୍ଗଳାର ଏକ ପ୍ରକୋଷ୍ଠରେ ଚୁପ ହୋଇ ବସିଛନ୍ତି, ଉର୍ଦ୍ଧ୍ୱନେତ୍ର, ସେଠାରେ ଅନ୍ୟ କେହି ନାହିଁ। ଠାକୁର ବସିଥିବା ଘର କବାଟ ବାହାରେ ବାରନ୍ଦାରେ ମୁଁ ବସି ବସି ମନେ ମନେ ବିନତି କରୁଛି ଠାକୁରଙ୍କୁ ଅନାଇ। ପ୍ରାର୍ଥନା ଅନ୍ତେ ଆଶୀବାଣୀ ପାଠ ହୋଇଗଲା। ଶ୍ରୀଶ୍ରୀ ଠାକୁର ମୋ ଆଡ଼କୁ ଅନାଇ ପାଖକୁ ଡାକିଲେ। ମୁଁ ତାଙ୍କ ପାଖକୁ ଯାଇ ଚରଣ ତଳେ ଭୂଇଁରେ ବସିଲି। ଠାକୁର ଖଟ ଉପରେ ବସି ମୋ ମୁଣ୍ଡରେ ହାତ ଦେଇ କହି ଉଠିଲେ– ମୁଁ ଯାହା ଯାହା ଆଶୀର୍ବାଣୀରେ କହିଲି ସେପରି ହୋଇ ଉଠିବାକୁ ହେବ, ଦୁର୍ବଳତାକୁ ସ୍ଥାନ ଦେଲେ ହେବ ନାହିଁ, ମୋର ଅନ୍ତର ଭିତରେ ଶିହରଣ ଖେଳିଗଲା ଶ୍ରୀଶ୍ରୀ ଠାକୁରଙ୍କ ଶ୍ରୀ ହସ୍ତ ସ୍ପର୍ଶରେ, କହିଲି–ଠାକୁର ! ଆପଣ ଆଶୀର୍ବାଦ କରୁଛନ୍ତି, ମୁଁ ଆପଣଙ୍କର ଆଶୀର୍ବାଦର ଉପଯୁକ୍ତ ହୋଇ ଉଠି ପାରିବିକି ନାହିଁ, ତାହା ଆପଣହିଁ ଜାଣନ୍ତି। ଶ୍ରୀଶ୍ରୀ ଠାକୁର କହିଲେ– ପାରିବୁ, ପାରିବୁ, ପରମ ପିତାଙ୍କର ଦୟାରେ ନିଶ୍ଚୟ ପାରିବୁ। ମନ ଭିତରେ ଦୁର୍ବଳତାକୁ ସ୍ଥାନ ଦେବୁ ନାହିଁ। ସବଳ ହୃଦୟରେ ଈଶ୍ୱରଙ୍କର ଅଧିଷ୍ଠାନ, ଆଉ ଇଷ୍ଟନିଷ୍ଠା ଛଡ଼ା ମନୁଷ୍ୟ ସବଳ ହୋଇ ପାରନ୍ତି ନାହିଁ। ମୁଁ କହିଲି– ଠାକୁର ! ମୋର ତ କିଛି ସମ୍ବଳ ନାହିଁ। ଜ୍ଞାନ, ବିଦ୍ୟା, ବୁଦ୍ଧି ଭକ୍ତି କିଛି ନାହିଁ, ମାତ୍ର ଆପଣ ହିଁ ସମ୍ବଳ। ଯେ ଯାହା କିଛି ଚାହେଁ ପରମପିତା ତାହାକୁ ତାହା ଦେଇ ନିଜେ ଦୂରେଇ ରହନ୍ତି। ଯାହାର କିଛି ନାହିଁ ପରମପିତା ନିଜେ ଆସି ତାଙ୍କୁ ଧରା ଦିଅନ୍ତି। ଆଉ ଏହା ଭଲ ହୋଇଛି, ତୁ ବି ମୂର୍ଖ ମୁଁ ବି ମୂର୍ଖ। କୌଣସି କିଛି ନେଇ ଅହଙ୍କାର କରିବାର ତୋର

ବାଟ ନାହିଁ। ଇଷ୍ଟ ହିଁ ତୋର ଏକମାତ୍ର ଅହଙ୍କାରର କାରଣ ହୋଇ ଉଠନ୍ତୁ। ମୋର ଅନ୍ତର ଭିତରଟା କିପରି ହୋଇଗଲା। ମନେ ହେଉଛି– ଭିତରେ ଯେପରି ମୋର କିଛି ନାହିଁ, ଅନ୍ତର ଭିତରଟା ସବୁ ପିଗଳି ଯାଇ ବା ତରଳିତ ହୋଇ ବହିଯିବ କି? ଠିକ୍ ସେହି ମୁହୂର୍ତ୍ତରେ ଜଣେ ଲୋକ କର୍କଶ ସ୍ୱରରେ ଆସି କହି ଉଠିଲେ– ଏ କ'ଣ? ସୁଶୀଲଦା! ଆପଣ ଏଠି କାହିଁକି? ବାହାରିଯାନ୍ତୁ ଏହି ମୁହୂର୍ତ୍ତରେ ଏଇ ଘରୁ। ଠାକୁରଙ୍କର ଅସୁସ୍ଥ ଦେହ, ତାଙ୍କୁ ବିରକ୍ତ କରିବାକୁ ଆସିବାକୁ ଲାଜ ଲାଗୁନି?

ମୁଁ ହଠାତ୍ ଚମକି ସ୍ତମ୍ଭିତ ହୋଇଗଲି। ମୋତେ କେହି ଯେପରି ସ୍ୱର୍ଗରୁ ଟାଣି ଆଣି କଚାଡ଼ି ଦେଲେ। କିନ୍ତୁ ମୁଁ ଆତ୍ମସ୍ଥ ହେବାର ପୂର୍ବେହିଁ ଶ୍ରୀଶ୍ରୀ ଠାକୁର କହି ଉଠିଲେ ଆଗନ୍ତୁକ ଲୋକଟିକୁ– ସୁଶୀଲକୁ ମୁଁ ଡାକିଛି। ତୁ କାହିଁକି ଏଠି ଆସିଛୁ? ଯା' ଏଠୁ ପଳା। ଠାକୁରଙ୍କର ଏହି ଗମ୍ଭୀର ଆଦେଶ ଶୁଣି ଆଗନ୍ତୁକ ଭଦ୍ରଲୋକ ରୋଷକଷାୟିତ ଲୋଚନରେ ମୋତେ ଅନାଇ ଘରୁ ବାହାରିଗଲେ। ଶ୍ରୀଶ୍ରୀ ଠାକୁର ମୋତେ କହିଲେ– ଏହାଙ୍କ କଥାରେ ତୁ ଦୁଃଖ ପାଇଲୁ କି? ମୁଁ କହିଲି–ଠାକୁର! ମୁଁ ଭଲ ମନ୍ଦ କିଛି ବୁଝି ଦୁଃଖ ପାଇବା ପୂର୍ବରୁ ଆପଣଙ୍କ କରୁଣାଘନ ଆଚ୍ଛାଦନରେ ଆଚ୍ଛାଦିତ ହୋଇ ଦୁଃଖକୁ ଉପଲବ୍ଧି କରି ପାରିଲି ନାହିଁ। ଶ୍ରୀଶ୍ରୀ ଠାକୁର ଚାଲିଯାଇଥିବା ସେହି ଲୋକଟିକୁ ମୋତେ ଦେଖାଇ କହିଲେ– ଏ କିନ୍ତୁ ଲୋକ ଖରାପ ନୁହେଁ, ଭାଷାଟା କର୍କଶ। ତୁ ତାଙ୍କ ଉପରେ ଅସନ୍ତୁଷ୍ଟ ହେବୁ ନାହିଁ। ସେ ଭାବିଛି ମୋର ଦେହ ଅସୁସ୍ଥ, ତେଣୁ ଲୋକ ମୋ ପାଖରେ ଆସିଲେ ମୁଁ ଆହୁରି ଅସୁସ୍ଥ ହୋଇ ପଡ଼ିବି। ମୁଁ କହିଲି– ଠାକୁର, ମୋର ଆସିବା ଦ୍ୱାରା ସତ୍ୟ ସତ୍ୟ ଆପଣଙ୍କ ଦେହ ଆହୁରି ଖରାପ ହୋଇଯିବାର ସମ୍ଭାବନା ରହିଛି।

ଶ୍ରୀଶ୍ରୀ ଠାକୁର କହି ଉଠିଲେ– ତୋତେ ମୁଁ ଡାକି ଆଣିଛି। ଆଉ ଏହି କଥା ଜାଣିଥା, କେହି କେହି ଅଛନ୍ତି, ସେମାନେ ଆସିଲେ ମୋର ଦେହ ଖରାପ ନ ହୋଇ ଆହୁରି ଭଲ ହୋଇ ଉଠେ। ଏହା ତୋତେ ଆଜି ମୁଁ କହି ରଖୁଛି, ଯେତେବେଳେ ଯାହା କହିବାର, ଯାହା ପଚାରିବାର ମୋତେ କହିବୁ, ମୋତେ ପଚାରିବୁ। ଆଉ ଯେଉଁ ପଥରେ ଯେପରି ଚାଲିବାକୁ କହିବି ସେପରି ଚାଲିବୁ। କାହାରି କଥାରେ ଅଭିମାନ କରି ଦୂରେଇ ରହିବୁ ନାହିଁ। ଆଉ ମୁଁ ଦୂରରେ ରହିବାକୁ କହିଲେ ପାଖକୁ ଆସିବା ପାଇଁ ବ୍ୟସ୍ତ

ହେବୁ ନାହିଁ। ମୁଁ ସବୁବେଳେ ତୋ ସଙ୍ଗରେ ରହିଛି। ମୁଁ କହିଲି– ଠାକୁର, ମୁଁ ତ ମୂର୍ଖ ଲୋକ, ଆପଣଙ୍କର ଏହି ଭାବ ବୁଝି ପାରିବି କିପରି ? ଠାକୁର କହିଲେ, ମୁଁ କହିଦେବି ଯେତେବେଳେ ଯାହା ପ୍ରୟୋଜନ। ତାହାରେ ବହୁ ଲୋକ ଆସି ଜମାୟିତ ହୋଇଛନ୍ତି ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ କରିବା ପାଇଁ। ଆଉ ଥରେ ମୁଁ ଠାକୁରଙ୍କୁ ଭୂଲୁଣ୍ଠିତ ହୋଇ ପ୍ରଣାମ କରି ବାହାରି ଆସିଲି। ମନେ ମନେ ଧ୍ୱନିତ ହେବାକୁ ଲାଗିଲା ଠାକୁରଙ୍କର ସେହିକଥା....ପାରିବୁ, ପାରିବୁ, ମୁଁ କହୁଛି ନିଶ୍ଚୟ ପାରିବୁ।

## ବାଣୀ

ଇଷ୍ଟଙ୍କୁ First and Foremost (ପ୍ରଥମ ଓ ପ୍ରଧାନ) କରି ଚାଲିବାହିଁ ମଣିଷ ପରି ଚାଲିବା। ତାଙ୍କୁ Secondary (ଗୌଣ) କରି ଚାଲିବା ମାନେ ପ୍ରେତ ଜୀବନ ବା ପଶୁ ଜୀବନ ବହନ କରି ଚାଲିବା।

ଶ୍ରୀଶ୍ରୀ ଠାକୁର
(ଆ: ପ୍ର: ୧୦ମ ଖଣ୍ଡ)

# ॥ ଡେର ॥

ଏହିପରି ଚାଲିଛି ବହୁତ ଦିନ। ଯେଉଁଦିନ ବାଲେଶ୍ୱରରେ ବସି ଟେଲି ଫୋନ୍‌ରେ ଶ୍ରୀଶ୍ରୀ ଠାକୁରଙ୍କର ଡାକରା ପାଇଥିଲି ପୂଜ୍ୟପାଦ ବଡ଼ଦା' ମାଧ୍ୟମରେ କୌଣସି ପ୍ରସ୍ତୁତି ନ ନେଇ ସାଙ୍ଗେ ସାଙ୍ଗେ ଚାଲି ଆସିଥିଲି ଘଣ୍ଟାକ ଭିତରେ ପ୍ରଥମ ଗାଡ଼ି ଧରି। ଠାକୁର ମୋତେ ଛାଡ଼ିଲେ ନାହିଁ, ଯେତେବେଳେ ଫେରିଯିବା କଥା ଠାକୁରଙ୍କ ପାଖରେ ଉପସ୍ଥାପିତ କରୁଛି ଠାକୁର ମନା କରୁ ନାହାନ୍ତି ଯିବାପାଇଁ, କିନ୍ତୁ କହୁଛନ୍ତି– ତୁ ରହିଲେ ମୋର ଭଲ ଲାଗେ। ଶ୍ରୀଶ୍ରୀ ଠାକୁର ଅସୁସ୍ଥ, ଶଯ୍ୟାଶାୟୀ। ଗୋଟିଏ ହାତ, ଗୋଟିଏ ଗୋଡ଼, ପକ୍ଷାଘାତରେ ଆକ୍ରାନ୍ତ। କଲିକତାରୁ ସବୁବେଳେ ଡାକ୍ତର ଆସୁଛନ୍ତି। ସମସ୍ତ ଭାରତ ତଥା ପୃଥିବୀର ଶ୍ରୀଶ୍ରୀ ଠାକୁରଙ୍କର ସନ୍ତାନମାନେ ବ୍ୟସ୍ତ ହୋଇ ପଡ଼ିଛନ୍ତି ଠାକୁରଙ୍କୁ ରୋଗମୁକ୍ତ କରିବାପାଇଁ, ଠିକ୍ ଏହି ଅବସ୍ଥାରେ ଠାକୁର ଯେତେବେଳେ ମୋତେ କହୁଛନ୍ତି– ତୁ ରହିଲେ ମୋର ଭଲ ଲାଗେ; ସେତେବେଳେ ତାଙ୍କୁ ଛାଡ଼ିଯିବାର ପ୍ରଶ୍ନ ଆଉ ଉଠୁଛି କାହିଁ? ସ୍ୱାଭାବିକ ଭାବେ ମୋର ମନଯିବାକୁ ଚାହୁଁନାହିଁ। ତାହା ସଙ୍ଗରେ ଠାକୁରଙ୍କର ଏଇ କଥା ତାଙ୍କ ପାଖରୁ ଫେରିଯିବାର ପ୍ରଶ୍ନର ମୂଳଉତ୍ପାଟନ କରିଦେଲା। ଯଦିଓ ମନେ କେତେ କେତେବେଳେ ମେଘପରି ଭାସି ଆସୁଛି ବ୍ୟବସାୟ–ବାଣିଜ୍ୟ, ଟଙ୍କା ପଇସା ଓ ଘର କଥା, କିନ୍ତୁ ତାହା ମୁହୂର୍ତ୍ତ ମାତ୍ର। ଏହି ଭାବରେ ଦିନଠାରୁ ମାସ, ମାସ ଠାରୁ ବର୍ଷ ବିତି ଚାଲିଛି। ଠାକୁରଙ୍କର ଦେହ ଅସୁସ୍ଥ, ବାହାରର ଲୋକଜନ କାହାକୁ ଠାକୁରଙ୍କ ପାଖକୁ ଆସିବାକୁ ଦିଆ ଯାଉ ନାହିଁ। ଡାକ୍ତରମାନେ ଏବଂ ଶ୍ରୀଶ୍ରୀ ଠାକୁରଙ୍କର କତିପୟ ସେବା ଶୁଶ୍ରୁଷାକାରୀ ଓ ଯେଉଁମାନେ କି ଠାକୁରଙ୍କର ବାଣୀ ଇତ୍ୟାଦି ଲେଖାଲେଖି କରନ୍ତି, ଯଥା ପ୍ରଫୁଲ୍ଲ ଚନ୍ଦ୍ର ଦାସ, ଦେବୀ ମୁଖାର୍ଜୀ, ନିଖିଳ ଚନ୍ଦ୍ର ଘୋଷ– ଏମାନେ କେହି ନା କେହି ସବୁବେଳେ ଠାକୁରଙ୍କ ପାଖେ ରହୁଛନ୍ତି। କେତେବେଳେ କେଉଁ ମୁହୂର୍ତ୍ତରେ ଠାକୁରଙ୍କର ଶ୍ରୀ ମୁଖରୁ ବାଣୀ ବାହାରି ଆସିବ, ତାକୁ ନୋଟ କରି ରଖିବା ପାଇଁ ଅପେକ୍ଷା କରି ରହିଛନ୍ତି। କେତେକ ଜ୍ୟୋତିଷମାନେ ମଧ୍ୟ ସବୁବେଳେ ପାଖେ ପାଖେ ରହିଛନ୍ତି। ତା' ମଧ୍ୟରେ ଶ୍ରୀଯୁକ୍ତ ଅବିନାଶ ଭଟ୍ଟାଚାର୍ଯ୍ୟ, ଆକୁଦା (ଶ୍ରୀ ଅଧିକାରୀ, ଓକିଲ ଯେ କି ଶ୍ରୀ ଶ୍ରୀ ଠାକୁରଙ୍କର ଭାବବାଣୀ ମଝିରେ ମଝିରେ ଲେଖି ରଖୁଥିଲେ) ଏବଂ ସମୟେ ସମୟେ

କଲିକତାରୁ ପ୍ରସିଦ୍ଧ ଜ୍ୟୋତିଷ ମୋହିନୀ ମୋହନ ଆଚାର୍ଯ୍ୟଙ୍କର ପୁତ୍ର ଶ୍ରୀ କୁମାର ଆଚାର୍ଯ୍ୟ ଆସୁଛନ୍ତି। ଠାକୁର କିନ୍ତୁ ସବୁବେଳେ ସବୁ ଅବସ୍ଥା ମଧ୍ୟରେ ମୋତେ ସେଠାରେ ରଖିଛନ୍ତି।

ଜ୍ୟୋତିଷମାନଙ୍କ ଆଲୋଚନା ଭିତରେ ମୋତେ ପୁରାଉଛନ୍ତି, ମୁଁ ଜ୍ୟୋତିଷ ସମ୍ବନ୍ଧରେ ଯେତିକି ଯାହା ଜାଣେ ଠାକୁର ତାକୁ ମାଧ୍ୟମ କରି ଜ୍ୟୋତିଷ ଶାସ୍ତ୍ରର ଆହୁରି ଗଭୀର ତତ୍ତ୍ୱ ମଧ୍ୟରେ ଧୀରେ ଧୀରେ ମୋତେ ନେଇ ଚାଲିଲେ। ସାଧକ ପ୍ରବର ଶ୍ରୀଯୁକ୍ତ ସୁଶୀଲ ଚନ୍ଦ୍ର ବସୁ ଭାରତବର୍ଷର ବିଭିନ୍ନ ସ୍ଥାନ ବୁଲି ଭୃଗୁସଂହିତାରୁ ଶ୍ରୀଶ୍ରୀ ଠାକୁରଙ୍କର ଜାତକ ବିଚାର କରି ଆଣିଛନ୍ତି। ସେଥିରେ ଅଛି ଶ୍ରୀଶ୍ରୀ ଠାକୁରଙ୍କର ଇଚ୍ଛାମୃତ୍ୟୁ। କିନ୍ତୁ ସେହି କଥା ଉପରେ ନିର୍ଭର ନ କରି ଏଠାକାର ଜ୍ୟୋତିଷମାନେ ବିଶେଷ କରି ଶ୍ରୀଶ୍ରୀ ଠାକୁରଙ୍କର ବଂଶ ପୁରୋହିତ ତଥା ଜ୍ୟୋତିଷ ଗିରିଶ ଚନ୍ଦ୍ର କାବ୍ୟତୀର୍ଥ, ସମସ୍ତେ ଗ୍ରହଶାନ୍ତି ନିମନ୍ତେ ଶ୍ରୀଶ୍ରୀ ଠାକୁରଙ୍କର ଦେହ ସୁସ୍ଥ କରିବା ପାଇଁ ଗ୍ରହ ପୂଜାଦ୍ୱାରା ଶାନ୍ତି ସ୍ୱସ୍ତୟନ କରିବାକୁ ବ୍ରତୀ ହେଲେ। ଆଶ୍ରମସ୍ଥ ଠାକୁରଙ୍କର ଶିଷ୍ୟ ସନ୍ତାନମାନେ ଅଖଣ୍ଡ ନାମ କୀର୍ତ୍ତନରେ ଲାଗି ପଡ଼ିଲେ। ଡାକ୍ତରମାନେ ଆଧୁନିକ ଚିକିତ୍ସାଦ୍ୱାରା ଠାକୁରଙ୍କୁ ସୁସ୍ଥ କରି ଉଠାଇବା ପାଇଁ ଭାରତବର୍ଷର ବିଭିନ୍ନ ଚିକିତ୍ସକ ମଣ୍ଡଳୀର ସମାବେଶ କରାଇବାକୁ ଲାଗିଲେ। ମୂଳ କଥାରେ ଯେ ଯୁଆଡ଼େ ଯାହା ଜାଣିଛି ତାଙ୍କର ସେହି ବିଦ୍ୟା, ଜ୍ଞାନ ଓ ଦର୍ଶନ ଦ୍ୱାରା ଉଠି ପଡ଼ି ଲାଗିଛନ୍ତି କିପରି ଠାକୁରଙ୍କୁ ସୁସ୍ଥ କରିବେ। ଶ୍ରୀଶ୍ରୀ ଠାକୁର ଦିନେ ମୋତେ ଡାକି କହିଲେ— ମୋର ଜାତକଟା ଭଲ କରି ଦେଖ, ମୋର ଯିବାର ସମୟ ହୋଇଛି କି? ମୁଁ କହିଲି— ଠାକୁର! ଏତେ ବଡ଼ ବଡ଼ ଜ୍ୟୋତିଷମଣ୍ଡଳୀ ସବୁ ଏଠାରେ ଅଛନ୍ତି। ଏହା ଭିତରେ ମୁଁ ଆପଣଙ୍କର ଆୟୁ ବିଚାର କରିବି। ଏହା ମୋ ପକ୍ଷେ ଧୃଷ୍ଟତା ଛଡ଼ା ଆଉ କିଛି ନୁହେଁ। ଶ୍ରୀ ଶ୍ରୀ ଠାକୁର ମୋତେ କହିଲେ— ପରମପିତା ଦୟାରେ ତୁ ଯେତିକି ଜାଣିଛୁ ତାହା ଖାଣ୍ଟି। ଆଉ ଯାହା ବୁଝି ପାରିବୁ ନାହିଁ ମୋତେ ଆସି ପଚାରିବୁ, ମୁଁ କହିଦେବି। ଠାକୁରଙ୍କର ନିର୍ଦ୍ଦେଶ ପାଇ ଆଶ୍ରମରେ ରହିଥିବା ବହୁ ଜ୍ୟୋତିଷ ବହି ଘାଣ୍ଟିବାକୁ ଲାଗିଲି। କିନ୍ତୁ ଯେତେ ଦିଗରୁ ଯେଉଁ ବାଟରୁ ବିଚାର କରୁଛି, ଦେଖୁଛି ଶ୍ରୀ ଶ୍ରୀ ଠାକୁରଙ୍କର ଇଚ୍ଛା ମୃତ୍ୟୁ। ଆୟୁ ବିଚାରରେ ସର୍ବତ୍ର ଦେଖୁଛି ଶ୍ରୀ ଶ୍ରୀ ଠାକୁରଙ୍କର ପୂର୍ଣ୍ଣାୟୁ, କିନ୍ତୁ ଇଚ୍ଛା କଲେ ତା' ପୂର୍ବେ ଯେ କୌଣସି ଦିନ ଚାଲି ଯାଇ ପାରନ୍ତି ଏବଂ ଇଚ୍ଛା ହେଲେ ପୂର୍ଣ୍ଣାୟୁ ୧୨୦ ବର୍ଷ ପରେ

ମଧ୍ୟ ଆହୁରି ଯେତେଦିନ ଖୁସି ରହି ଯାଇ ପାରନ୍ତି। ଏହି ଭାବରେ ପ୍ରତିଦିନ ଯେଉଁଠି ଯାହା କିଛି ଦେଖୁଛି ଶ୍ରୀ ଶ୍ରୀ ଠାକୁରଙ୍କ ପାଖରେ ତାହା କହୁଛି। ଠାକୁର ନୂତନ ଦିଗର ସଂଧାନ ଦେଇ ପୁନର୍ବାର ଦେଖିବାକୁ କହୁଛନ୍ତି ତାଙ୍କର ଜାତକ। ତାହା ସଙ୍ଗେ ସଙ୍ଗେ ସେଠାକାର ଉପସ୍ଥିତ ଲୋକମାନଙ୍କର କଥା ମଧ୍ୟ ଠାକୁର ଯେତେବେଳେ ଗୋପନରେ ପାଉଛନ୍ତି କହୁଛନ୍ତି। ପ୍ରତିଟି ମନୁଷ୍ୟ ଯେ ଯେଉଁ ଦିଗରେ Interested ସେ ସେହି ଦିଗ ନେଇ ବ୍ୟସ୍ତ ରହିଛନ୍ତି। ଆଖିକୁ ଅଲଗା ଦିଗରେ ପକାଇବାର କୌଣସି ଚେଷ୍ଟା ନାହିଁ। ଅଥଚ ଯଦି ମନୁଷ୍ୟ ସଚେତନ ହୋଇ ସବୁ ଦିଗରେ ଦୃଷ୍ଟି ରଖି ଚାଲି ପାରନ୍ତା ତାହାହେଲେ ପ୍ରତିଟି ଲୋକହିଁ ଜୀବନରେ ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ଉଠିପାରନ୍ତା। ଏହାରି ସାଥେ ଠାକୁର କହିଲେ– ନିଜ ଜୀବନରେ ମନେ ରଖିଥିବୁ କାହାରିର କୌଣସି କଥାକୁ ଉପେକ୍ଷା କରିବୁ ନାହିଁ। ତାହା ଭିତରୁ ସତ୍ୟକୁ ଉପଲବ୍ଧି କରିବାର ଚେଷ୍ଟା ରଖିବୁ। ଆଉ ଏଇ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ତାହାହିଁ। ପ୍ରତିଟି ଜୀବନର ଅଜଣା ରାଜ୍ୟର ବହୁତ କଥା ଏହା ମାଧ୍ୟମରେ ଜଣାଯାଏ। କିନ୍ତୁ ତାହା ବୋଲି ଏଇ ଜ୍ୟୋତିଷକୁ ବା ଗ୍ରହମାନଙ୍କୁ ଜୀବନର ଏକମାତ୍ର ସମ୍ବଳ କରି ଚାଲିଲେ ମହା ଭୁଲ ହେବ। ମନେ ରଖିଥିବୁ ଜାତକ କୁଣ୍ଡଳୀ ସେତେବେଳେ ତିଆରି କରାଯାଏ ଯେତେବେଳେ ଲୋକ ମାତୃଗର୍ଭରୁ ଏହି ପୃଥିବୀରେ ଭୂମିଷ୍ଠ ହୁଅନ୍ତି। ଅର୍ଥାତ୍ ଏଇ ପଞ୍ଚଭୂତର ପୃଥିବୀ ସଙ୍ଗରେ ଆସି ଯୁକ୍ତ ହୁଅନ୍ତି Indipendently, ସ୍ୱାଧୀନ ଭାବରେ ଶ୍ୱାସ ପ୍ରଶ୍ୱାସ ନେଇ ଖାଇପିଇ ବଞ୍ଚିରହନ୍ତି। ଲଗ୍ନ ଅର୍ଥ ଲାଗିବା, ଏଇ ପଞ୍ଚଭୂତର ପୃଥିବୀ ସଙ୍ଗରେ ଯେଉଁ ମୁହୂର୍ତ୍ତରେ ମାତାର ସାହାଯ୍ୟ ବ୍ୟତିରେକ୍ ସ୍ୱତନ୍ତ୍ର ଭାବରେ ଆସି ଲାଗିଲେ ସେହି ମୁହୂର୍ତ୍ତକୁ ହିଁ କୁହନ୍ତି ଲଗ୍ନ ଏବଂ ସେଇ ଲଗ୍ନ ମୁହୂର୍ତ୍ତରେ ପୂର୍ବ ଜନ୍ମାର୍ଜ୍ଜିତ କାମ, କ୍ରୋଧ, ଲୋଭ, ମଦ, ମୋହ, ମାତ୍ସର୍ଯ୍ୟ, ମନ, ବୁଦ୍ଧି, ଅହଙ୍କାର ଏଇ ନଅଟି ଅବସ୍ଥାକୁ ପୂର୍ବଜନ୍ମରେ କିଏ କେତେ ପରିମାଣରେ ଜୀବନ ଉପରେ ଗ୍ରହଣ କରି Adjusted ହୋଇ ବା ନିୟନ୍ତ୍ରଣ କରି ଚାଲିଥିଲା। ତାହା ଜାଣିବାର ଉପାୟ ହେଉଛି ଏଇ ବାରଟି ରାଶି ଭିତରେ ନଅଟି ଗ୍ରହମାନଙ୍କର ସମାବେଶ ଯାହାକୁ କୁହନ୍ତି ରାଶିଚକ୍ର।

ଅବଶ୍ୟ ଏହାଛଡ଼ା ଆହୁରି ଛୋଟ ଛୋଟ କେତୋଟି ଗ୍ରହର ପ୍ରଭାବ ଲୋକ ସମାଜ ଓ ପୃଥିବୀ ଉପରେ ପଡ଼େ। କିନ୍ତୁ ତାଙ୍କର ପ୍ରାଧାନ୍ୟ ଦିଆଯାଏ ନାହିଁ। ପ୍ରତି ଲୋକ ଭିତରେ ଯେପରି ଏଇ ଭାବରେ ନବଗ୍ରହର ସମାବେଶ

ରହିଛି ସେହିପରି ଉର୍ଦ୍ଧାକାଶେ ଅବସ୍ଥିତ ବୁଧ, ଶୁକ୍ର, ରବି, ଚନ୍ଦ୍ର ଇତ୍ୟାଦି ବହୁ ଗ୍ରହ ଓ ନକ୍ଷତ୍ରର ଆଲୋକ ବା ରଶ୍ମି ଆସି ଏଇ ପୃଥିବୀ ତଥା ପ୍ରତି ଜୀବ ଉପରେ ବର୍ଷିତ ହେଉଛି। ମନୁଷ୍ୟ ମଧ୍ୟ ତାହା ବାହାରେ ନୁହେଁ। ମନୁଷ୍ୟ ସାଧନାଦ୍ୱାରା, ଜ୍ଞାନ ବୁଦ୍ଧି ଦ୍ୱାରା ତାଙ୍କର ଉପସ୍ଥିତ ଉପଲବ୍ଧି କରୁଛନ୍ତି। ରବି, ଚନ୍ଦ୍ର, ମଙ୍ଗଳ ଇତ୍ୟାଦି ନବଗ୍ରହକୁ ବାଦ ଦେଲେ ଆହୁରି ଅନେକ ଗ୍ରହ ଅଛନ୍ତି, ସେମାନଙ୍କର ଆଲୋକଧାରା ବା Ray ମଧ୍ୟ ଏଇ ପୃଥିବୀରେ ଆସୁଛି କିନ୍ତୁ ସେ ଗ୍ରହର ସେତେ ପ୍ରାଧାନ୍ୟ ନାହିଁ ବୋଲି ବଡ଼ ବଡ଼ ଦାର୍ଶନିକ, ମୁନି. ଋଷିମାନେ ତାଙ୍କ ଉପରେ ବେଶୀ ଲକ୍ଷ୍ୟଦେଇ ନାହାନ୍ତି ବା ବିଶେଷ କିଛି କହି ନାହାନ୍ତି। ମୁଁ କହିଲି–ଠାକୁର! ଏହି ଚନ୍ଦ୍ର, ସୂର୍ଯ୍ୟ, ଶୁକ୍ର, ବୃହସ୍ପତି କିପରି ଆମ୍ଭ ଉପରେ influence କରୁଛନ୍ତି। ଆଉ ଏଇ influence କୁ Regulated ବା ନିୟନ୍ତ୍ରିତ କରିବା ପାଇଁ ଗଛର ମୂଳ, ଚେର, ପତ୍ର ବା ବିଭିନ୍ନ ପ୍ରକାର ପଥର ଇତ୍ୟାଦି କିପରି କାର୍ଯ୍ୟ କରନ୍ତି ଯାହା ଫଳରେ ସେମାନଙ୍କର ଶକ୍ତିର ବୃଦ୍ଧି ବା କ୍ଷୟ ହୋଇଥାଏ। ଶ୍ରୀଶ୍ରୀ ଠାକୁର କହିଲେ– ସୂର୍ଯ୍ୟ ଯେପରି ଗଗନ ମଣ୍ଡଳେ ଅଛି କିନ୍ତୁ ରାତ୍ରିରେ ତାକୁ ଲୋକ ଉପଲବ୍ଧି କରି ପାରୁନାହିଁ ଅଥଚ ଦିନ ବେଳେ ବିଭିନ୍ନ ଭାବରେ ତାଙ୍କର ପ୍ରକାଶ ଉପଲବ୍ଧ କରୁଛି। ସକାଳେ, ମାଧ୍ୟାହ୍ନେ, ଅପରାହ୍ନେ ତାଙ୍କର ବିଭିନ୍ନ ପ୍ରକାଶ, ଅର୍ଥାତ୍ ତାଙ୍କର ସେହି ଆଲୋକ ବିଭିନ୍ନ ସମୟରେ, ବିଭିନ୍ନ ପ୍ରକାରରେ ବିଭିନ୍ନ ଶକ୍ତିରେ ଆସି ଆମ୍ଭମାନଙ୍କ ଉପରେ ପଡୁଛି। ସେହିପରି ଚନ୍ଦ୍ରର ଆଲୋକ ଶୁକ୍ଳ ପକ୍ଷ, କୃଷ୍ଣପକ୍ଷ, ଅମାବାସ୍ୟା, ପୂର୍ଣ୍ଣିମା ଇତ୍ୟାଦି ବିଭିନ୍ନ ରାତ୍ରିରେ କମ ବେଶୀ ଭାବରେ ଆସି ଆମ ଉପରେ ପଡୁଛି। ସେହପରି ସବୁ ଗ୍ରହରହିଁ Ray ବା ଆଲୋକ ଛଟା ଆସି ଏଇ ପୃଥିବୀରେ ଉପସ୍ଥିତ ହେଉଛି। ଆଉ ଏଇ ଯେ ଆସୁଛି ଏଇ ଆସିବାର ସମୟ ସମସ୍ତଙ୍କର ଏକା ନୁହେଁ। କାହାରୁ ସମୟ ବେଶୀ ଲାଗେ, କାହାର ସମୟ କମ ଲାଗେ। ଏହି ପୃଥିବୀଠାରୁ ଯେଉଁ ଗ୍ରହ ସବୁଠାରୁ ବେଶୀ ଦୂରରେ ଅଛି ତାହାର ରଶ୍ମି ଆସିବାକୁ ସମୟ ବେଶୀ ଲାଗେ ଏବଂ ତାଙ୍କର Influence ବା ପ୍ରଭାବ ପ୍ରତ୍ୟକ୍ଷ ଭାବେ ଲୋକେ ଉପଲବ୍ଧି କରି ନ ପାରିଲେ ମଧ୍ୟ ସେ Influence କିନ୍ତୁ କିଛି ମାତ୍ର କମ ନୁହେଁ। ବରଂ ବହୁକ୍ଷେତ୍ରରେ ମନୁଷ୍ୟର ଦେଖୁଥିବା ଉପଲବ୍ଧି କରୁଥିବା ଚନ୍ଦ୍ର ସୂର୍ଯ୍ୟ ଇତ୍ୟାଦି ଗ୍ରହଠାରୁ ଅନେକ ବେଶୀ କ୍ଷମତାଶାଳୀ ସେହି ଦୂରରେ ରହିଥିବା ଗ୍ରହମାନେ। ଆଉ ଏଇ ସବୁ ଗ୍ରହର Ray ବା ଆଲୋକଛଟା ପୃଥିବୀର ସବୁ ସ୍ଥାନରେ ସମାନ ଭାବରେ ପଡ଼େ ନାହିଁ। ଯେପରି ସୂର୍ଯ୍ୟ

ରଶ୍ମିକୁ ଯେଉଁସ୍ଥାନ ବେଶୀ ଗ୍ରହଣ କରେ ସେ ସ୍ଥାନ ମରୁଭୂମି ହୋଇଯାଏ। ସେହିପରି ଚନ୍ଦ୍ରଛଟା ଯେଉଁଠାରେ ବେଶୀ ପଡ଼େ ସେ ସ୍ଥାନ ସାଧାରଣତଃ ଜଳପୂର୍ଣ୍ଣ ବା ଓଦା ସନ୍ତସନ୍ତିଆ ହୁଏ। ଏହିପରି ଶୁକ୍ର ଗ୍ରହର ଆଲୋକଛଟା ଯେଉଁଠି ବେଶୀ ପଡ଼େ ଅର୍ଥାତ୍ ଏଇ ପୃଥିବୀର ଯେଉଁ ଅଂଶ ସେହି ଆଲୋକକୁ ଆକର୍ଷଣ କରେ ସେ ସ୍ଥାନ ଧୀରେ ଧୀରେ କଠିନ ହୋଇ ଉଠେ ଏବଂ ସେହି କଠିନ ହେବାକୁ ଯାଇ ଆଖପାଖ ମାଟିରୁ ବହୁତ କିଛି ଟାଣି ନେଇ ଖୁବ୍ ଛୋଟ ଆକାର ଧାରଣ କରି Concentrated ବା କେନ୍ଦ୍ରୀଭୂତ ହୁଏ। ପ୍ରକୃତିର ଏହି ଯେ ରୂପାନ୍ତର ଏହାକୁହିଁ ଲୋକ କହନ୍ତି ହୀରା ପଥର, ଠିକ ଏହିପରି ପୃଥିବୀର ଯେଉଁ ଅଂଶ ଶନିର ଆଲୋକଛଟାକୁ ବେଶୀ ଗ୍ରହଣ କରେ, ସେହି ଅଂଶରେ ସୃଷ୍ଟି ହୁଏ ନୀଳା ପଥର। ଏହି ଭାବରେ ପୃଥିବୀର ଯେଉଁ ଯେଉଁ ଅଂଶ ଯେଉଁ ଯେଉଁ ଗ୍ରହର ଆଲୋକ ଛଟା ବେଶୀ ଗ୍ରହଣ କରେ ସେହି ସବୁ ସ୍ଥାନ ପରିବର୍ତ୍ତିତ ହୋଇ ବିଭିନ୍ନ ପଥର ବା Stone ରୂପ ଧାରଣ କରନ୍ତି। ଆଉ ଠିକ୍ ଏହି ପଦ୍ଧତିରେ ବିଭିନ୍ନ ବୃକ୍ଷଲତାମାନେ ମଧ୍ୟ ବିଭିନ୍ନ ଗ୍ରହର ଆଲୋକ ନେଇ ବଞ୍ଚି ରହିଛନ୍ତି। ଯାହା ଭିତରେ ଯାର ପ୍ରକାଶ ବେଶୀ ସେଇ ଗଛର ମୂଳ, ପତ୍ର ଛାଲି ବା ରସ ଗ୍ରହଣ କଲେ ମନୁଷ୍ୟ ଦେହ ଭିତରେ ରହିଥିବା ନବଭାବ ବା ଗ୍ରହର ଯେଉଁ ଯେଉଁ ଅଂଶର ବୃଦ୍ଧି ବା କମଥାଏ ଏହି ସବୁ ଜିନିଷ ଠିକ୍ ଠିକ୍ ପରିମାଣରେ ବ୍ୟବହାର କରିବା ଦ୍ୱାରା ଦେହ ଓ ମନର ସର୍ବାବସ୍ଥାରେ ସମତା ରକ୍ଷା କରା ଯାଇପାରେ। ଆଉ ଜ୍ୟୋତିଷମାନେ ଏହା ବିଚାର କରି ଠିକ୍ ଠିକ୍ ବ୍ୟବସ୍ଥା ଦିଅନ୍ତି। କିନ୍ତୁ ମନେ ରଖିବ– ଏକମାତ୍ର ଗ୍ରହମାନଙ୍କ ପ୍ରଭାବରେ ଯେଉଁ ସବୁ ବସ୍ତୁର ସୃଷ୍ଟି ହେଉଛି ତାହା ଦ୍ୱାରା ହିଁ ଯେ ଲୋକର ଉପକାର ହେବ ତାହା ନୁହେଁ, ତାହା ସାଙ୍ଗରେ ରହିଛି ତାଙ୍କର ମନ୍ତ୍ର ଅର୍ଥାତ୍ Clue ଯାହା ଜାଣି ପାରିଲେ ମନୁଷ୍ୟ ସେହି ଭାବରେ ନିଜର ଜୀବନକୁ ନିୟନ୍ତ୍ରିତ କରି ପାରିବ। ଆଉ ଏହି ନିୟନ୍ତ୍ରଣ କରିବାକୁ ହେଲେ ନିଜକୁ ସଂଯମିତ ହେବାକୁ ହେବ। କାମ, କ୍ରୋଧ, ଲୋଭ, ମଦ, ମୋହ, ମାତ୍ସର୍ଯ୍ୟ, ମନ, ବୁଦ୍ଧି, ଅହଙ୍କାରକୁ Adjusted କରିବାକୁ ହେବ। ଆଉ ତାହା କରିବାକୁ ଗଲେ, ମୂଳରେ ଦରକାର ସେହି ଇଷ୍ଟ ଯେକି ଆଚରଣଶୀଳ ଆଚାର୍ଯ୍ୟ ଯେ କରିଛନ୍ତି ସବୁ, ଜାଣିଛନ୍ତି ସବୁ ଏବଂ ଦେଖିଛନ୍ତି ସବୁ। ଆଉ ଏହାରି ପାଇଁ ଜ୍ୟୋତିଷ ଶାସ୍ତ୍ରରେ ଅଛି– "କିଂ କୁର୍ବନ୍ତି ଗ୍ରହାଃ ସର୍ବେ ଯସ୍ୟ କେନ୍ଦ୍ରେ ବୃହସ୍ପତି"। ବୃହସ୍ପତି ଅର୍ଥ ଗୁରୁ।

ଏହି ଭାବରେ ଆହୁରି ବହୁ ବହୁ କଥା ଠାକୁର ମୋତେ ଜଣାଇଲେ, ଯାହାକି କହିବାର ସ୍ଥାନ ଏହିଠି ନୁହେଁ। ଠାକୁର ଦିନେ ମୋତେ କହିଲେ– ମୋର ଜାତକ ବିଚାର କରି ଦେଖ ମୋର ଯିବାର ଦିନ କେବେ। ମୁଁ କହିଲି– ଠାକୁର! ଆପଣଙ୍କର ଇଚ୍ଛା ମୃତ୍ୟୁ, ଯେତେବେଳେ ହେଲେ ଯିବେ। କିନ୍ତୁ ଏବେ ଯିବାର ପ୍ରଶ୍ନ ଉଠୁ ନାହିଁ। କାହିଁକି ନା ଦିନେ ଆପଣ ମୋତେ କହିଥିଲେ– ଏଇଥର ମୁଁ ପୃଥିବୀରେ ଆସିଛି। ଆଉ ୫୦୦୦ ବର୍ଷ ଆସିବି ନାହିଁ। ଆଉ ଏଇଥର ପୃଥିବୀକୁ ସବୁ ଦେଇଯିବି। କିନ୍ତୁ ଏଇ "ସବୁ ଦେଇଯିବି" ବୋଲି ଆପଣ ଯାହା କହିଛନ୍ତି ତାହା କଣ ସବୁ ଦିଆ ହୋଇ ସାରିଛି କି? ମୋର ତ ମନେ ହେଉଛି ଆହୁରି ଅନେକ କିଛି ଦେବାକୁ ବାକି ଅଛି ଯଦିଓ ମୁଁ ଜାଣେ ନାହିଁ ମୁଁ ଆପଣଙ୍କ ପାଖକୁ ଆସିବା ପୂର୍ବରୁ ଆପଣ କ'ଣ କ'ଣ ଦେଇଛନ୍ତି। ଶ୍ରୀ ଶ୍ରୀ ଠାକୁର ହସି ଉଠି କହିଲେ, ଠିକ୍ ଅଛି, ମୁଁ ଏବେ ଯିବି ନାହିଁ। ଆଉ ଯେତେବେଳେ ଯିବି ପୂର୍ବରୁ ତୋତେ କହିବି। ଆଉ କ'ଣ କ'ଣ ବାକି ରହିଲା, ମୋତେ କହିବୁ। ମୁଁ କହିଲି– ଠାକୁର! ଆପଣ ବିଶ୍ୱପତି, ଏ ବିଶ୍ୱପାଇଁ କ'ଣ କ'ଣ ବାକି ରହିଲା, ମୁଁ ତାହା ଜାଣିବି କିପରି ଏବଂ ଆପଣଙ୍କୁ କହିବି କିପରି? ଶ୍ରୀଶ୍ରୀ ଠାକୁର ହସି କହିଲେ– ତୋ ସାମ୍ନାରେ ଯେତେବେଳେ ଅଜଣା ଯାହା କିଛି ପଡ଼ିବ ତାହା ପଚାରିବୁ। ଏହାରି ପରେ ଦେଖିଲି ଠାକୁରଙ୍କର ଦେହ ଧୀରେ ଧୀରେ ସୁସ୍ଥ ହୋଇ ଉଠିବାକୁ ଲାଗିଲା।

ଦିନେ ଠାକୁର ଯେ କି ବିଛଣାରୁ ଉଠି ପାରୁ ନାହାନ୍ତି, ଗୋଡ଼ ହାତକୁ କେହି ଉଠାଇ ନ ଧରିଲେ ଟେକି ପାରୁ ନାହାନ୍ତି, ସେ ହଠାତ୍ ବିଛଣା ଉପରେ ଉଠି ଆପେ ଆପେ ଠିଆ ହୋଇ ପଡ଼ିଲେ। ଉପସ୍ଥିତ ସମସ୍ତେ ସ୍ତମ୍ଭିତ। ଉପସ୍ଥିତ ଡାକ୍ତରମାନଙ୍କ ଭିତରେ ସୂର୍ଯ୍ୟଦା, ପ୍ୟାରୀଦା, ରହିଥିଲେ, ସେମାନଙ୍କର ଡାକ୍ତରୀ ବୁଦ୍ଧିକୁ ଓଲଟପାଲଟ କରିଦେଲା ଶ୍ରୀଶ୍ରୀ ଠାକୁରଙ୍କର ଏହି ଠିଆ ହୋଇ ପଡ଼ିବା। ସମସ୍ତେ ସସବ୍ୟସ୍ତ ହୋଇ ଉଠିଲେ– ଅବଶ ଓ ଶକ୍ତିହୀନ ଗୋଡ଼ରେ ଠାକୁର ଠିଆ ହୋଇ ପଡ଼ିଛନ୍ତି, ପଡ଼ିଯିବେ କି? ପୁନରାୟ ଠାକୁର ବସି ପଡ଼ିଲେ ଏବଂ ଶୋଇ ପଡ଼ିଲେ। ଚିକିତ୍ସା ଚାଲିଛି, ଠାକୁର ଭଲ ଆଡ଼କୁ ଗତି କରୁଛନ୍ତି। ଟିକେ ଟିକେ ଚଲାବୁଲା କରୁଛନ୍ତି। ହାତ ଆଙ୍ଗୁଳିରେ ଶକ୍ତି ଆଣିବାପାଇଁ ଡାକ୍ତର ନିର୍ଦ୍ଦେଶ କରିଛନ୍ତି

ଷଣ୍ଢାବଲକୁ ହାତରେ ଚିପିବା ପାଇଁ, ପ୍ରତିଦିନ କଲମ ଧରି କିଛି ଲେଖିବାପାଇଁ। ବାହାର ଲୋକଙ୍କର ଠାକୁରଙ୍କ ପାଖେ ଯିବା ନିଷେଧ। ଯେଉଁଆଡୁ ଯେତେ ଲୋକ ଆସୁଛନ୍ତି ପୂଜ୍ୟପାଦ ବଡ଼ଦା ସେମାନଙ୍କ ସଙ୍ଗରେ କଥାବାର୍ତ୍ତା କରୁଛନ୍ତି। ଯାହାର ଯାହା ପ୍ରୟୋଜନ ତାକୁ ପରିପୂରଣ କରିବାକୁ ଚେଷ୍ଟା କରୁଛନ୍ତି। କୌଣସି ବିଶେଷ ବିଶେଷ ପ୍ରଶ୍ନର ସମାଧାନ କରି ନ ପାରିଲେ ବଡ଼ଦା' ଠାକୁରଙ୍କୁ ଆସି ପଚାରି ଯାଉଛନ୍ତି। ଠାକୁର ଘରେ ଲୋକଙ୍କର ଯିବା ଆସିବା, ଉଠିବା ବସିବା, ସବୁ କିଛି ନିୟନ୍ତ୍ରିତ ହେଉଛି ବଡ଼ଦା'ର ନିର୍ଦ୍ଦେଶରେ। ପ୍ରତିଦିନ ଦ୍ୱି ପ୍ରହରରେ ଠାକୁରଙ୍କ ବିଶ୍ରାମ ଅନ୍ତେ ୨/୩ଟା ବେଳେ ଠାକୁରଙ୍କ ପାଖରେ କାଗଜ କଲମ ଦିଆଯାଏ କିଛି ଲେଖିବା ନିମନ୍ତେ। ଅନେକ ସମୟରେ ଠାକୁର ପଚାରନ୍ତି କଅଣ ଲେଖିବେ। ଉପସ୍ଥିତ ଲୋକମାନଙ୍କ ଭିତରେ ଯେଉଁମାନେ କି ପୂଜ୍ୟପାଦ ବଡ଼ଦା'ଙ୍କର ନିର୍ଦ୍ଦେଶରେ ସେଠାରେ ରହୁଥିଲେ ସେମାନେ, କେତେବେଳେ ଠାକୁରଙ୍କର କୌଣସି ବାଣୀ ଡାକି ଦେଉଥିଲେ, ଠାକୁର ଲେଖୁଥିଲେ, କେତେ କେତେ ବେଳେ ଠାକୁର ନିଜର ମନରୁ ମଧ୍ୟ କିଛି କିଛି ଲେଖୁଥିଲେ, କିନ୍ତୁ ଅନେକ ସମୟରେ ଦେଖା ଯାଉଥିଲା ଠାକୁର କିଛି ଲେଖିବାକୁ ଚାହୁଁ ନ ଥିଲେ।

ସେତେବେଳେ ତାଙ୍କ ପାଖରେ କାଗଜ କଲମ ଦିଆ ଯାଉଥିଲା, ଅନ୍ତତଃ ତାଙ୍କ ନାମଟି ଲେଖିବାକୁ ଅନୁରୋଧ କରୁଥିଲେ। ଠାକୁର କାଗଜରେ ତାଙ୍କ ନାମ ଲେଖୁଥିଲେ। ଯେତେବେଳେ ଯେଉଁ କାଗଜ ତାଙ୍କ ପାଖରେ ଧରାଇ ଦିଆ ଯାଉଥିଲା ଏବଂ ଯାହା ଲେଖିବାକୁ କୁହା ଯାଉଥିଲା, ଠାକୁର ତାହା ଲେଖୁଥିଲେ। ଅନେକ ସମୟରେ ଦେଖାଯାଇଛି, ଠାକୁର ଖାଲି କାଗଜରେ ନିଜର ନାମ ସ୍ୱାକ୍ଷର କରିଛନ୍ତି ଏବଂ ସେ କାଗଜ ତାଙ୍କ ପାଖରୁ ନେଇ ରଖା ହେଉଥିଲା। ସେତେବେଳଠାରୁ ଠାକୁରଙ୍କ ପାଖରେ ଲୋକର ଯିବା ଆସିବା ନିୟନ୍ତ୍ରିତ ହେବାକୁ ଲାଗିଲା। ପୂଜ୍ୟପାଦ ବଡ଼ଦା'ଙ୍କ ନିର୍ଦ୍ଦେଶରେ ଆଶ୍ରମର ବହୁତ କିଛି କର୍ମ ପରିଚାଳିତ ହେବାକୁ ଆରମ୍ଭ ହେଲା। ଲୋକମାନେ ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ବେଶୀ ନ ଯାଇ ବଡ଼ଦା'ଙ୍କ ପାଖରେ ଯିବା ଆସିବା କରିବାକୁ ଆରମ୍ଭ କଲେ। ଠାକୁରଙ୍କ ପାଖରେ ଲୋକମାନଙ୍କର ଚାପ କମ ରହିବାରୁ ଅନେକେ ସ୍ୱସ୍ତି ବୋଧ କଲେ॥

ଶ୍ରୀଶ୍ରୀ ଠାକୁରଙ୍କର ଏହି ଅସୁସ୍ଥତା ସମୟରେ ମୁଁ ଆଶ୍ରମକୁ ଅପ୍ରସ୍ତୁତ ଭାବରେ ଯାଇ ଯେତେବେଳେ ଆଉ ଫେରି ଆସିଲି ନାହିଁ ଧୀରେ ଧୀରେ ଅର୍ଥହୀନ ହୋଇ ଦୁର୍ଦ୍ଦଶାର ଚରମରେ ପହଞ୍ଚିଛି। ଯେଉଁମାନେ କି ପୂର୍ବରୁ ସବୁବେଳେ "ସୁଶୀଲଦା, ସୁଶୀଲଦା" କରୁଥିଲେ, ସେମାନେ ମୋର ଏହି ଆର୍ଥିକ ଦୁର୍ଦ୍ଦଶା ପଡ଼ିବାର ଦେଖି ଅତ୍ୟନ୍ତ ଖରାପ ବ୍ୟବହାର କରିବାକୁ ଆରମ୍ଭ କଲେ। ଠାକୁର ବାଡ଼ିରେ ଯେପରି ମୁଁ ରହି ନ ପାରିବି ଭିତରେ ଭିତରେ ତାହାର ଷଡ଼ଯନ୍ତ୍ର ଚାଲିଲା। ଏପରିକି ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ଘୁଞ୍ଚାଇବା ପାଇଁ ବହୁତ ଲୋକ ବହୁତ ଚେଷ୍ଟା କଲେ। କିନ୍ତୁ ମୋର ମାଲିକ, ମୋର ଠାକୁର, ସେ ଦୃଢ଼ ହସ୍ତରେ ଧରି ରଖିଲେ ମୋର ହାତ। କହିଲେ— କାହା ପାଖରୁ କିଛି ପ୍ରତ୍ୟାଶା ରଖିବୁ ନାହିଁ। କିନ୍ତୁ ମୋ ପାଖରୁ କେବେ ଘୁଞ୍ଚିବୁ ନାହିଁ ମୁଁ ନ କହିବା ପର୍ଯ୍ୟନ୍ତ। ସେତେବେଳେ ପ୍ରତିଦିନ ଠାକୁରଙ୍କ ପାଖରେ ଦିନ ଚାରିଟା ବେଳେ ଭୋଗ ପଡୁଥିଲା ଏବଂ ଠାକୁରଙ୍କର ଭୋଗାନ୍ତେ ତାଙ୍କର ସେହି ପ୍ରାସାଦ ଯେଉଁମାନେ ଠାକୁରଘରେ ଠାକୁରଙ୍କ ପାଖରେ ରହୁଥିଲେ ସେମାନଙ୍କୁ ଦିଆଯାଉଥିଲା। ପ୍ରତିଦିନ ସକାଳୁ ଠାକୁର ଶ୍ରୀଶ୍ରୀ ବଡ଼ମାଙ୍କୁ ଡାକି କହିଦେବେ ସେଦିନ ୪ଟା ବେଳେ କଣ ଭୋଗ ପଡ଼ିବ।

କେଉଁଦିନ ଲୁଚି, କେଉଁଦିନ ପୁରି, କେଉଁଦିନ କଚୁଡ଼ି ଡାଲ—ପୁରି, ତାହା ସଙ୍ଗରେ ପ୍ରତିଦିନ ନୂଆନୂଆ ତରକାରୀ, ଠାକୁରଙ୍କ ନିର୍ଦ୍ଦେଶରେ ତାହା ରୋଷେଇ ହୁଏ। ରୋଷେଇ କରନ୍ତି, ସୁଧାପାଣି ମା', ବଡ଼ମା' ଦେଖାଶୁଣା କରନ୍ତି। ସବୁ ରୋଷେଇ ହୋଇଯିବା ପରେ ଠାକୁରଙ୍କ ସମ୍ମୁଖରେ ରନ୍ଧଣା ଜିନିଷ ସବୁ ନେଇ ଉପସ୍ଥିତ କରାନ୍ତି, ଠାକୁର ନିଜେ ଭଲ ଭାବରେ ସେଗୁଡ଼ିକ ଦେଖନ୍ତି, ଯାହାକୁ ସମସ୍ତେ କୁହନ୍ତି ଦୃଷ୍ଟିଭୋଗ। ତାପରେ ସେ ସବୁ ଜିନିଷ ବଡ଼ମା' ବରାଲ୍‌ବାଂଲା, ବର୍ତ୍ତମାନ ଠାକୁର ବାଂଲାର ଉତ୍ତର ଦିଗରେ ତାଙ୍କର ରହିବା ଘର ସମ୍ମୁଖରେ ବସି ସ୍ୱହସ୍ତେ ସମସ୍ତଙ୍କୁ ବିତରଣ କରନ୍ତି। ଶ୍ରୀଶ୍ରୀ ଠାକୁର ଯେଉଁ ଖଟରେ ବସନ୍ତି ତାହା ବଡ଼ମା'ଙ୍କର ଘର ନିକଟରେ। ଯେଉଁମାନେ ସେହି ପ୍ରସାଦ ଆଣିବାକୁ ଯା'ନ୍ତି, ଠାକୁର ନିଜେ ତାହା ପ୍ରତ୍ୟକ୍ଷ କରନ୍ତି। ଲୁଚି, ପୁରି ଯାହାକିଛି ହେଉନା କାହିଁକି, ବଡ଼ମା' ତାର ଦୁଇ ଦୁଇଖଣ୍ଡ ସମସ୍ତଙ୍କ ହାତରେ ଦିଅନ୍ତି। ଯେଉଁଦିନ ଯାହା ତରକାରୀ ହୋଇଥାଏ ତାହା ସହିତ। ଗୋଟାଏ List ହୋଇଥାଏ ଯେଉଁଥିରେ ସମସ୍ତଙ୍କର ନାମ ରହିଛି ଯେଉଁମାନେ କି ସେହି ପ୍ରସାଦ ପାଇବେ। ମୋର ନାମ ମଧ୍ୟ ତାହାରି

ଭିତରେ ଅଛି। ବଡ଼ଦା' ସ୍ୱୟଂ ଠାକୁରଙ୍କ ପାଖେ ରହି ଜଣ ଜଣଙ୍କ ନାମ ଧରି ଡାକନ୍ତି ଏବଂ ପ୍ରସାଦ ଦେବାର ବ୍ୟବସ୍ଥା କରନ୍ତି। କିନ୍ତୁ କାହିଁକି, କ'ଣ ପାଇଁ ମୁଁ ଜାଣେ ନାହିଁ, ମୁଁ ସବୁବେଳେ ଠାକୁରଙ୍କ ପାଖରେ ରହିଲେ ମଧ୍ୟ ସେହି ଭୋଗ ଦେବା ପୂର୍ବରୁ ଟିକିଏ ଦୂରେଇ ରହୁଥିଲି। ଏଇ ପ୍ରସାଦ ବିତରଣ ଚାଲିଥିବା ସମୟରେ ବଡ଼ଦା' ମୋତେ ଖୋଜୁଥା'ନ୍ତି, ଲୋକଙ୍କୁ ପଚାରୁ ଥାଆନ୍ତି— ସୁଶୀଲଦା' କାହିଁ? ସୁଶୀଲଦା' କାହିଁ? ତାଙ୍କୁ ଡାକନ୍ତୁ। ବଡ଼ଦା'ର ଏହି ଆହ୍ୱାନକୁ ମୁଁ ଉପେକ୍ଷା କରି ପାରୁନାହିଁ। ଆସି ଠାକୁରଙ୍କୁ ପ୍ରଣାମ କରି ବଡ଼ମା' ପାଖରେ ଚାଲିଯାଏ ପ୍ରସାଦ ଆଣିବା ପାଇଁ। ଏଇ ପ୍ରସାଦ ବିତରଣ ପର୍ବଟା ବଡ଼ଦା' ଖୁବ୍ ଆନନ୍ଦ ସହକାରେ ପାଳନ କରୁଥିଲେ। ବଡ଼ାଲ—ବାଂଲା (ଠାକୁରବାଂଲା)ର ଦ୍ୱିତଳ ଉପରେ ରହୁଥିବା ଛୋଟଦା' (ପୂଜ୍ୟପାଦ ବିବେକ ରଞ୍ଜନ ଚକ୍ରବର୍ତ୍ତୀ) ମଧ୍ୟ ଆସି ଏହାର ଅଂଶ ଗ୍ରହଣ କରୁଥିଲେ।

ଏହା ସମସ୍ତଙ୍କ ପାଖରେ ଆନନ୍ଦ ଓ ଆଶୀର୍ବାଦ ହେଲେ ମଧ୍ୟ ମୋ ସମ୍ମୁଖରେ ସୁଖ ଦୁଃଖ ଦୁଇ ପ୍ରକାର ଭାବନା ଉପସ୍ଥିତ ହେଉଥିଲା। କାହିଁକି ନା ଯେତେବେଳେ ଶ୍ରୀଶ୍ରୀ ବଡ଼ ମା' ପାଖରେ ପ୍ରସାଦ ପାଇବା ପାଇଁ ମୁଁ ଉପସ୍ଥିତ ହେଉଥିଲି ବଡ଼ମା' ମୋତେ ସ୍ୱହସ୍ତେ ସେହି ପ୍ରସାଦ ଦେଲେ ମଧ୍ୟ ମୁହଁଟିକୁ ବୁଲାଇ ରଖୁଥିଲେ, ମୋ ଆଡ଼କୁ ଦୃଷ୍ଟି ଦେଉ ନ ଥିଲେ, ମୋତେ ଦେଖୁ ନ ଥିଲେ। ଏହା ମୋ ପକ୍ଷରେ ଖୁବ୍ ଦୁଃଖଦାୟକ ହୋଇ ଉଠୁଥିଲା। ବଡ଼ମା' ସମସ୍ତଙ୍କର ମା', ପୂର୍ବେ ପୂର୍ବେ ବଡ଼ମା' ମୋତେ କେତେ କଥା କହିଛନ୍ତି, କେତେ ଆଦର କରିଛନ୍ତି। କିନ୍ତୁ ଏବେ କାହିଁକି ତାଙ୍କର ଏଇ ବ୍ୟବହାର ମୋ ସାଙ୍ଗରେ? ମୁଁ ଗରିବ ବୋଲି କି? ବର୍ତ୍ତମାନ ମୋର ଅର୍ଥ, ମାନ, ଯଶ କିଛି ନାହିଁ। ବହୁ ଲୋକ ମୋର ନିନ୍ଦାରେ ପଞ୍ଚମୁଖ। ସେତେବେଳେ ମୋର ଗୁରୁମାତା ତଥା ବିଶ୍ୱମାତା ମଧ୍ୟ ମୋ ପ୍ରତି ବିମୁଖ। ଦିନ ପରେ ଦିନ ଏ ଅବସ୍ଥାର ସମ୍ମୁଖୀନ ହେବାକୁ ଭଲ ଲାଗୁନାହିଁ। ବଡ଼ମା' ପାଖରେ ଗଲେ ମୁଁ କିପରି ସଙ୍କୁଚିତ ହୋଇ ପଡୁଛି। ମନେ ହେଉଛି— ମା' ମୋ ଉପରେ କୌଣସି କାରଣରେ ରୁଷ୍ଟ ହୋଇଛନ୍ତି। ଏହାରି ଭିତର ଠାକୁର, ଅନ୍ତର୍ଯ୍ୟାମୀ ସେ। ଦିନେ ମୁଁ ପ୍ରସାଦ ପାଇବାକୁ ଯାଇଛି। ବଡ଼ମା' ଯଥାରୀତି ମୁହଁକୁ ବୁଲାଇ ରଖି ଡାହାଣ ହାତରେ ମୋତେ ପ୍ରସାଦ ବଢ଼ାଇ ଦେଉଛନ୍ତି। ଟିକିଏ ଦୂରରେ ଖଟରେ ବସି ରହିଥିବା ଠାକୁର ବଡ଼ମା'ଙ୍କୁ କହି ଉଠିଲେ— ଓ ବଡ଼ବୋହୂ! ତୁମେ ଟିକେ ସୁଶୀଲ ଆଡ଼କୁ ଅନାଓ।

ତାଙ୍କୁ ଟିକେ ଦେଖ। ତାଙ୍କର ସବୁ କିଛି ଚାଲିଯାଇଛି। ନିଜର ବୋଲି କିଛି ନାହିଁ। ତୁମ୍ଭେ ଲକ୍ଷ୍ମୀ, ତୁମେ ସୁଶୀଳଙ୍କୁ ନ ଦେଖିଲେ, ତା ଆଡ଼କୁ ନ ଅନାଇଲେ ସୁଶୀଳର ଛୁଆପିଲା ବଞ୍ଚିବେ କିପରି? ଟିକେ ଅନାଓ, ତାଙ୍କୁ ଟିକେ ଦେଖ। ବଡ଼ମା' ଧୀର ଉପରେ ମୁହଁକୁ ବୁଲାଇ ମୋ ଆଡ଼କୁ ଅନାଇଲେ ଏବଂ ଶ୍ରୀଶ୍ରୀ ଠାକୁରଙ୍କୁ କହିଲେ—ମୁଁ ଆଉ ଦେଖୁନାହିଁ କେତେବେଳେ? ସବୁବେଳେ ହିଁ ତ ଦେଖୁଛି। କିନ୍ତୁ ମୋର ଏହା ଭଲ ଲାଗେ ନାହିଁ ଲକ୍ଷ୍ମୀଛଡ଼ା ପରି ଘର ସଂସାର ଛାଡ଼ି, ବୋହୂ ଏବଂ ଛୁଆପିଲାଙ୍କୁ ଛାଡ଼ି ବ୍ୟବସାୟ ବାଣିଜ୍ୟ ନ କରି ଏପରି ଦାୟିତ୍ୱହୀନ ହୋଇ ବୁଲିବାକୁ। ଶ୍ରୀଶ୍ରୀ ଠାକୁର କହିଲେ—ସୁଶୀଳକୁ ମୁଁ ଏଠାରେ ରଖିଛି। ସେ ତ ମୋ କଥାରେ ରହିଛି। ତୁମେ ଟିକେ ଦୟା କଲେ ଆଉ ଚିନ୍ତା ରହିବ ନାହିଁ।

ଶ୍ରୀଶ୍ରୀ ବଡ଼ମା' ମୋତେ କହିଲେ— ସେ ଯେପରି ଭୋଳା ମହେଶ୍ୱର, କେବେହେଲେ ସଂସାରର କିଛି ଦେଖିଲେ ନାହିଁ, ମୋ ଉପରେ ସବୁ ଛାଡ଼ିଦେଇ ନିଶ୍ଚିନ୍ତରେ ରହିଛନ୍ତି, ତୁ ବି ସେହିପରି ହେଉଛୁ। ଏହା ମୋର ଭଲ ଲାଗୁନାହିଁ। ଛୁଆମାନଙ୍କୁ କିଏ ଦେଖିବ? ଅତି ସ୍ୱଳ୍ପ କଥାର ଲୋକ ବଡ଼ମା'। ମୋତେ ଏତେ ଗୁଡ଼ିଏ କଥା କହି ପକାଇଲେ। ଶ୍ରୀ ଶ୍ରୀ ଠାକୁର ଆନନ୍ଦ କରି କହି ଉଠିଲେ— ସୁଶୀଲ, ଆଉ ତୋର ଚିନ୍ତା ନାହିଁ। ତୋର ଲକ୍ଷ୍ମୀମା' ତୋ ଆଡ଼କୁ ଅନାଇଛନ୍ତି। ମୁଁ ବଡ଼ମା'ଙ୍କୁ ପ୍ରଣାମ ହୋଇ ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ କରି ତାଙ୍କର ଚକ୍ଷୁ ଅନ୍ତରାଳରେ ଆସି ଭୋଗ ପାଇବାକୁ ଲାଗିଲି। ଆଜି ଏ ଭୋଗ ମୋ ପାଖରେ ଅମୃତମୟ ହୋଇ ଉଠିଲା। ପିତାର ଦାନ, ମାତା ମୋତେ ସ୍ୱହସ୍ତେ ଆନନ୍ଦ ସହକାରେ ଦେଇଛନ୍ତି।

ଏ ଆନନ୍ଦ ମୋର ରଖିବାର ଜାଗା ନାହିଁ। ମୋର ଅବସ୍ଥାର ପରିବର୍ତ୍ତନ ହେବ କି ହେବ ନାହିଁ ମୁଁ ଜାଣେ ନାହିଁ। କନ୍ତୁ ଦେଖିଲି ଶ୍ରୀ ଶ୍ରୀ ଠାକୁର ଯେ ଖାଲି ମୋ ସାଙ୍ଗରେ ଉଠାବସା କରି ମୋତେ ସାଧନା ଦିଗରେ ଟାଣିନେଇ ଚାଲିଛନ୍ତି ସୁଦ୍ଧା ତାହାହିଁ ନୁହେଁ, ତାହା ସାଥେ ସାଥେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଛି ମୋ ଉପରେ ଯେଉଁମାନେ ନିର୍ଭର ଶୀଳ ମୋର ସେଇ ସଂସାରର ସମସ୍ତଙ୍କ ପ୍ରତି ମଧ୍ୟ, ଏବେ ଠାକୁରଙ୍କ ପାଖରେ ଯାହା ଦେଖୁଛି ତାହା ନୂତନ ରୂପରେ ମୋ ସମ୍ମୁଖରେ ଉପସ୍ଥିତ ହେଲେ ମଧ୍ୟ ଅପ୍ରତ୍ୟାଶିତ ନୁହେଁ। କିନ୍ତୁ କ'ଣ ଦେଖିଲି ଆଜି ଶ୍ରୀଶ୍ରୀ ବଡ଼ମା' ତଥା ଲକ୍ଷ୍ମୀମା'ଙ୍କୁ। ସେ ଯେ ଭିତରେ ଭିତରେ ମୋ ପାଇଁ ଏତେ ଉଦ୍‌ବିଗ୍ନ,

ମୋ ସଂସାରର ସମସ୍ତଙ୍କତ ପାଇଁ ଏତେ ଚିନ୍ତିତ ଏକଥା ମୁଁ ଜାଣି ନଥିଲି, ବୁଝି ନଥିଲି, କେବେ ବୁଝିବାର ଚେଷ୍ଟା ମଧ୍ୟ କରି ନଥିଲି। ପରମା ପ୍ରକୃତି ଲକ୍ଷ୍ମୀ ମା' ମୋର, ସେ ବି ଅଭିମାନଭରେ କେବେ ମୋତେ ଡାକି କିଛି କହୁ ନଥିଲେ।

କିନ୍ତୁ ପରମପୂରଣକାରୀ ପୁରୁଷୋତ୍ତମ ଶ୍ରୀଶ୍ରୀ ଠାକୁର ମୋତେ ଦେଖାଇ ଦେଲେ ସେହି ଦିଗଟି, ବଡ଼ମା' ଭିତରେ ଅବ୍ୟକ୍ତ ଯାହା ରହିଥିଲା ଅଭିମାନ ଭରେ, ବ୍ୟକ୍ତ କରି ତାହା ଭସାଇ ଦେଲେ ସ୍ରୋତ ଜଳରେ। ଏହପରି ଠାକୁରଙ୍କ ସହିତ ଚାରି ପାଞ୍ଚବର୍ଷ ବିତିଯିବା ପରେ ୧୯୫୮ ସାଲ ଅଗଷ୍ଟ ମାସରେ ଶ୍ରୀଶ୍ରୀ ଠାକୁର ଦିନେ ଋତ୍ୱିକ ଆଚାର୍ଯ୍ୟ ତଥା ପ୍ରେସିଡେଣ୍ଟ ସତ୍‌ସଙ୍ଗ ଶ୍ରୀଯୁକ୍ତ କୃଷ୍ଣ ପ୍ରସନ୍ନ ଭଟ୍ଟାଚାର୍ଯ୍ୟ (କ୍ରିଷ୍ଟଦା')ଙ୍କୁ ଡାକି କହିଲେ– କେଷ୍ଟଦା'! ସୁଶୀଲକୁ ନେଇ କ'ଣ କରିବି? ସେ ତ ଯେତେବେଳେ ମୁଁ ଯାହା କହୁଛି ତାହା ଶୁଣି ଏଠାରେ ରହିଯାଇଛି। ଘର କଥା ମନେ ମଧ୍ୟ କରୁନାହିଁ। ତେବେ ମୁଁ ଭାବୁଛି–ସୁଶୀଲର ଏବେ କଲିକତାରେ ରହିଲେ ଭଲ ହୁଅନ୍ତା। କ୍ରୀଷ୍ଟଦା' ଠାକୁରଙ୍କୁ କହିଲେ– ସୁଶୀଲଦା'ର ବହୁପୂର୍ବେ ଘରକୁ ଯିବା ଉଚିତ ଥିଲା। ଓଡ଼ିଶାରୁ ଖବର ଆସୁଛି ସେଠାରେ ତାଙ୍କର ସବୁ ନିଲାମ ହୋଇଯାଇଛି। ସେଠାକାର ଲୋକମାନେ ବହୁତ ନିନ୍ଦା କରୁଛନ୍ତି ଏବଂ ସୁଶୀଲଦା'ର ସ୍ତ୍ରୀଛୁଆମାନେ ଖାଇବାକୁ ପାଉ ନାହାନ୍ତି। ଏଗୁଡ଼ିକ ଭଲ କଥା ନୁହେଁ। ଏହାଦ୍ୱାରା ସୁଶୀଲଦା'ର ତଥା ସତ୍‌ସଙ୍ଗର ବଦନାମ ହେଉଛି। ଆପଣଙ୍କୁ ମଧ୍ୟ ସୁଶୀଲଦା' ପାଇଁ ଅନେକେ ନିନ୍ଦା କରନ୍ତି। ଶ୍ରୀଶ୍ରୀ ଠାକୁର କହିଲେ– ନା ଥାକେ ସେ କଥା (ଛାଡ଼ି ଦିଅନ୍ତୁ ସେ କଥା)। ଅବିକା ସୁଶୀଲ କଲିକତାରେ ରହିଲେ ଭଲ ହେବ ମୋର ମନେ ହେଉଛି। କ୍ରୀଷ୍ଟଦା' କହିଲେ– ଆପଣଙ୍କର ଯେତେବେଳେ ମନେ ହେଉଛି ସୁଶୀଲଦା' କଲିକତାରେ ରହିଲେ ଭଲ ହେବ ତାହାହେଲେ ଆଉ ଏଠାରେ ପଡ଼ି ନ ରହି କଲିକତା ଯିବା ଉଚିତ। ଶ୍ରୀଶ୍ରୀ ଠାକୁର କହିଲେ– ମୁଁ ସେହିକଥା ଭାବୁଛି। ଏହାର କିଛି ସମୟ ପରେ କ୍ରୀଷ୍ଟଦା' ଉଠି ଚାଲିଗଲେ ଏବଂ କ୍ରିଷ୍ଟଦା ଚାଲିଯିବା ପରେ ଶ୍ରୀଶ୍ରୀ ଠାକୁର ମୋତେ କହିଲେ– ତୁ ଯା', କେଷ୍ଟଦା' ଘରକୁ ଯା'। ତାଙ୍କୁ ଯାଇ କହ କଲିକତାରେ ତୋର ରହିବାର ଗୋଟିଏ ବ୍ୟବସ୍ଥା କରିଦେବେ। କ୍ରୀଷ୍ଟଦା' ପାଖରେ ମୋର ଯିବାର ଇଚ୍ଛା ନାହିଁ। କିନ୍ତୁ ଶ୍ରୀଶ୍ରୀ ଠାକୁରଙ୍କର ଆଦେଶ ପାଳନ କରିବା

ନିମନ୍ତେ ମୁଁ କ୍ରୀଷ୍ଟଦା' ପାଖକୁ ତାଙ୍କ ଘରେ ଯାଇ ଉପସ୍ଥିତ ହେଲି। କ୍ରୀଷ୍ଟଦା' ମୋତେ ଦେଖି ବୋଧହୁଏ ବୁଝି ପାରିଛନ୍ତି ମୁଁ କ'ଣ ପାଇଁ ଯାଇଛି। ଟିକିଏ ବିରକ୍ତ ଭାବରେ ମୋତେ ପଚାରିଲେ– କ'ଣ ଖବର ସୁଶୀଳଦା', ଏଠାରେ କାହିଁକି? ମୁଁ କହିଲି– ଶ୍ରୀଶ୍ରୀ ଠାକୁର ଆପଣଙ୍କ ପାଖକୁ ପଠାଇଛନ୍ତି ମୋର କଲିକତାରେ ଯାଇ ରହିବାର ଗୋଟିଏ ବ୍ୟବସ୍ଥା କରିବା ପାଇଁ। ସାଙ୍ଗେ ସାଙ୍ଗେ କ୍ରୀଷ୍ଟଦା' କହି ଉଠିଲେ– ହଁ, ତାହାହେଲେ ସେହି କଥା କୁହନ୍ତୁ। ''ଠାକୁର କହିଛନ୍ତି'' ବୋଲି ଆପଣ ଆସିଛନ୍ତି, ନ ହେଲେ ମୋ ପାଖରେ ଆପଣଙ୍କର କିଛି ପ୍ରୟୋଜନ ନାହିଁ, ଆସି ମଧ୍ୟ ନଥାନ୍ତେ। କ୍ରୀଷ୍ଟଦା'ର ଏହି ଶ୍ଳେଷଯୁକ୍ତ କଥା ଶୁଣି ମୋ ମନ ଭିତରେ ଲୁଚି ରହିଥିବା ସେହି ବଣୁଆଭାବଟି ଯାହାକି ପୂର୍ବ ଜୀବନରେ ମୋର ସାଥି ହୋଇ ରହିଥିଲା, ସେ ଜାଗ୍ରତ ହୋଇ ଉଠିଲା। ମୁଁ କହିଲି– ଠିକ୍ କଥା ତ, ମୋର ଆପଣଙ୍କ ପାଖରେ କିଛି ମାତ୍ର ପ୍ରୟୋଜନ ନାହିଁ। ଶ୍ରୀଶ୍ରୀ ଠାକୁର ଆଦେଶ କରିଛନ୍ତି ବୋଲି ଆସିଛି ଏବଂ ପୁଣି କହୁଛି– ମୋର କଲିକତାରେ 'ରହିବାର ଗୋଟିଏ ବ୍ୟବସ୍ଥା କରି ଦିଅନ୍ତୁ। ମୋର ଏହି ଅଶାଳୀନତାପୂର୍ଣ୍ଣ କଥା ଓ ବ୍ୟବହାରରେ କ୍ରୀଷ୍ଟଦା' ଆହୁରି ଧୈର୍ଯ୍ୟଚ୍ୟୁତ ହୋଇ ପଡ଼ିଲେ। ମୋତେ କହିଲେ– ଆପଣ ଜାଣିଛନ୍ତି କାହା ଆଗରେ ଠିଆ ହୋଇ କଥା କହୁଛନ୍ତି? ମୁଁ ଋତ୍ୱିକ–ଆଚାର୍ଯ୍ୟ, ସତ୍‌ସଙ୍ଗ ପ୍ରେସିଡେଣ୍ଟ। ମୁଁ କହିଲି– ଆପଣ ଋତ୍ୱିଗାଚାର୍ଯ୍ୟ, ସତ୍‌ସଙ୍ଗ ପ୍ରେସିଡେଣ୍ଟ, ଏସବୁ କାଥା ମୋତେ ସ୍ମରଣ କରାଇବାର ପ୍ରୟୋଜନ ନାହିଁ। ଏହା ସାଙ୍ଗରେ ମୋର କୌଣସି କିଛି ସମ୍ପର୍କ ନାହିଁ। ମୁଁ ଜାଣେ ଆପଣ ମୋର ଗୁରୁ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଶିଷ୍ୟ ଏବଂ ଭକ୍ତ ଏବଂ ସେହି ସମ୍ପର୍କ ଧରି ଶ୍ରୀଶ୍ରୀ ଠାକୁରଙ୍କ ଆଦେଶରେ ମୁଁ ଏଠାକୁ ଆସିଛି ଏବଂ ଯାହା ମୁଁ ଜାଣିବାକୁ ଚାହୁଁଛି ସେ ସମ୍ବନ୍ଧରେ ଆପଣ କ'ଣ କହିବାକୁ ଚାହୁଁଛନ୍ତି କହନ୍ତୁ। କ୍ରୀଷ୍ଟଦା' ଏକଥା ଶୁଣି ନିଆଁ ପରି ଜଳି ଉଠିଲେ, ମୋତେ କହିଲେ, ରେ ଦାମ୍ଭିକ ପିଲା, ତୁମର ଏତେ ଦମ୍ଭ କାହିଁକି? ଦମ୍ଭ କରିବାର କଣ ଅଛି? ବାରମ୍ବାର ଯେଉଁ ''ଠାକୁର'', ''ଠାକୁର'' ବୋଲି ମୋତେ କହୁଛ ତାଙ୍କୁ ତୁମେ ଯେତିକି ଚିହ୍ନିଛ ତୁମର କ'ଣ ଧାରଣା ସେତିକି ମଧ୍ୟ ମୁଁ ଚିହ୍ନିପାରି ନାହିଁ? ଆଶ୍ରମସ୍ଥ ସମସ୍ତଙ୍କ ସାଙ୍ଗରେ ଖରାପ ବ୍ୟବହାର କରି କରି ତୁମର ସାହସ ବଢ଼ିଯାଇଛି, ଅବିକା ମୋ ପାଖରେ ଆସି ମଧ୍ୟ ସେହି ଦମ୍ଭପୂର୍ଣ୍ଣ

ଭାଷା ବ୍ୟବହାର କରୁଛ। ଠାକୁରଙ୍କୁ କିଛି ଜାଣି ନାହଁ, କିଛି ଚିହ୍ନି ନାହିଁ, ଏଇ ଚରିତ୍ର ନେଇ ବାରମ୍ବାର "ଠାକୁର", "ଠାକୁର" କହୁଛ, ଲୋକ ସମ୍ମୁଖରେ ଠାକୁରଙ୍କୁ ପ୍ରତିଷ୍ଠା ନକରି ଅପ୍ରତିଷ୍ଠା କରୁଛ ଠାକୁରଙ୍କ କଥା ମୁହଁରେ ଆଣି। ମୁଁ କହିଲି ଆପଣଙ୍କର ଏଇ ଉପଦେଶ ମୋର ଶୁଣିବାର ପ୍ରୟୋଜନ ନାହିଁ। ମୋ ସମ୍ମୁଖରେ ମୋର ଗୁରୁ ବର୍ତ୍ତମାନ ଅଛନ୍ତି। ମୁଁ କ'ଣ ଭଲ କରୁଛି, ମନ୍ଦ କରୁଛି, ସେ ହିଁ ହେଉଛନ୍ତି ତାର ଏକମାତ୍ର ବିଚାରକ। ଆପଣଙ୍କ ଏହିସବୁ କଥା ସେହିମାନଙ୍କୁ କହିବେ ଯେଉଁମାନେ ଆପଣଙ୍କ କଥାରେ ଉଠାବସା କରନ୍ତି। ମୋର ଏହି ଅସଂଯତ କଥା ଶୁଣି କ୍ରୀଷ୍ଟଦା' ଖଟ ଉପରେ ବସିଥିଲେ, ଠିଆ ହୋଇପଡ଼ିଲେ। ମୋର ମନେ ହେଲା– ସେ ମୋତେ ଆକ୍ରମଣ କରିବେ। ମୁଁ ମଧ୍ୟ ନିର୍ଭୀକ ଭାବରେ ଠିଆ ହୋଇ ରହିଲି ଯେ କୌଣସି ପରିସ୍ଥିତର ସମ୍ମୁଖୀନ ହେବା ପାଇଁ।

ଠିକ୍ ଏହି ସନ୍ଧିକ୍ଷଣରେ ଦେବୀପ୍ରସାଦ ମୁଖାର୍ଜୀ (ଦେବୀ ଦା') ଆସି ସେଠାରେ ଉପସ୍ଥିତ ହେଲେ। ମୋତେ ଦେଖି କହିଲେ– ସୁଶୀଲଦା', ଜଲଦି ଯାଆନ୍ତୁ, ଠାକୁର ଆପଣଙ୍କୁ ଡାକୁଛନ୍ତି। ମୁଁ କାଳ ବିଳମ୍ବ ନକରି ସେଠାରୁ ବାହାରି ପଡ଼ିଲି ଠାକୁରଙ୍କ ଉଦ୍ଦେଶ୍ୟରେ। ଠାକୁରଙ୍କ ପାଖକୁ ଆସିବା ସାଙ୍ଗେ ସାଙ୍ଗେ ଠାକୁର ଉପସ୍ଥିତ ସମସ୍ତଙ୍କୁ କହିଲେ ସେଠାରୁ ଚାଲିଯିବା ପାଇଁ। ନିର୍ଜ୍ଜନରେ ମୋତେ ପଚାରିଲେ– କ'ଣ ହେଲା ? କେଷ୍ଟଦା'ଙ୍କୁ କହିଲୁ ସେ କ'ଣ କହିଲେ ? ମୁଁ ସେଠାକାର ପରିସ୍ଥିତିସବୁ ଠାକୁରଙ୍କ ପାଖରେ ନିବେଦନ କଲି। ଠାକୁର ସବୁ ଶୁଣିଲେ। ପରେ ମୋତେ କହିଲେ– ଯା', ପୁଣିଯା, କେଷ୍ଟଦା'ଙ୍କୁ ଯାଇ କହ–କଲିକତାରେ ମୋର ରହିବା ବ୍ୟବସ୍ଥା କରି ଦିଅନ୍ତୁ। ଏହି ପରିସ୍ଥିତିପରେ ମଧ୍ୟ ପୁନର୍ବାର ଠାକୁର ମୋତେ ପଠାଉଛନ୍ତି ସେଠାରେ। ଆଶ୍ଚର୍ଯ୍ୟ ହେଲି। କିନ୍ତୁ ଠାକୁରଙ୍କ ଆଦେଶ ମୁଣ୍ଡରେ ନେଇ ପୁଣି ଯାଇ ଉପସ୍ଥିତ ହେଲି କ୍ରୀଷ୍ଟଦା' ପାଖରେ। କିନ୍ତୁ ବହୁତ କିଛି ମୋର ଦେଖିବାର ଥିଲା। କ୍ରୀଷ୍ଟଦା' ଘରେ ପଶିବା ସାଙ୍ଗେ ସାଙ୍ଗେ ସେ ମୋତେ ଦେଖି ତାଙ୍କର ଖଟ ଛାଡ଼ି ଉଠି ଆସି ମୋତେ କୁଣ୍ଢାଇ ପକାଇଲେ। କହିଲେ– ସୁଶୀଲଦା'! ଆଜି ମୋର ମହା ଆନନ୍ଦର ଦିନ, ଅନ୍ତତଃ ଜଣେ ଲୋକ ଦେଖି ପାରିଲି ଯେ କି ଇଷ୍ଟ ଗର୍ବେ ଗର୍ବୀ, ଅକମ୍ପିତ ହୃଦୟ, ନିର୍ଭୀକ। ମୁଁ ତ ଏହା ହିଁ ଚାହେଁ।

ଆଉ ଗୋଟିଏ କଥା ମନେ ରଖନ୍ତୁ ଶ୍ରୀଶ୍ରୀ ଠାକୁରଙ୍କୁ ବାଦ ଦେଲେ ଆମେ ସବୁ ଏକା ଦଳର ଲୋକ। କିଛି ଊଣା ଅଧିକ ରହିପାରେ। କ୍ରୀଷ୍ଟଦା'ର ଏହି ମହାନଭାବ ଏବଂ କଥା ଶୁଣି ମୋର ଅନ୍ତର ବିଗଳିତ ହୋଇ ପଡ଼ିଲା ତାଙ୍କର ଚରଣ ତଳେ। ତାଙ୍କ କୋଳରୁ ଦେହ ଛଡ଼ାଇ ଆଣି ଭୂଲୁଣ୍ଠିତ ହୋଇ ପ୍ରଣାମ କରିଲି। କହିଲି– କ୍ରୀଷ୍ଟଦା', ମୋତେ କ୍ଷମା କରନ୍ତୁ, ସତ୍ୟ ସତ୍ୟ ମୁଁ ଦାମ୍ଭିକ, ମୂର୍ଖ, ତେଣୁ ଆପଣଙ୍କୁ ଚିହ୍ନିପାରି ନାହିଁ। ପାଞ୍ଚ ମିନିଟ୍ ପୂର୍ବେ ଯେଉଁ କ୍ରୀଷ୍ଟଦା'ଙ୍କୁ ଦେଖିଥିଲି ଆଉ ଏହି ମୁହୂର୍ତ୍ତରେ ଆପଣଙ୍କୁ ଯେଉଁ କ୍ରୀଷ୍ଟଦା' ରୂପେ ଦେଖୁଛି– ଏ ଦୁହେଁ ଅପୂର୍ବ। ସେତେବେଳେ ଦେଖିଲି ଆପଣ ଯାହାକୁ ଅନ୍ୟାୟ ଦେଖିଛନ୍ତି ତାହା ସଙ୍ଗରେ କୌଣସି Compromise କଲେ ନାହିଁ। ନିଜର ମାନସମ୍ମାନ ରକ୍ଷା କରିବା ପାଇଁ କୌଣସି ମିଥ୍ୟାର ଆଶ୍ରୟ ନେଲେ ନାହିଁ। ଯାହା ଅନ୍ୟାୟ ବୋଲି ବୁଝିଲେ ତୀବ୍ର ଏବଂ କଠିନ ଭାବରେ ତାର ପ୍ରତିବାଦ କଲେ। ଆଉ ଏବେ ଦେଖୁଛି କ୍ଷଣ ପୂର୍ବର ଘଟଣା ମାଧ୍ୟମରେ ଯେଉଁ ସତ୍ୟ ଆପଣ ଉପଲବ୍ଧି କରିଛନ୍ତି ତାହାକୁ ବ୍ୟକ୍ତ କରିବାକୁ ମଧ୍ୟ ଆପଣଙ୍କ ମନରେ କୌଣସି ପ୍ରକାର ଦ୍ୱିଧା ବା ଦ୍ୱନ୍ଦ ନାହିଁ। ମୋ ପରି ମୂର୍ଖକୁ କ୍ଷମା କଲେ ମୁହୂର୍ତ୍ତ ଭିତରେ। ଅପୂର୍ବ ଆପଣଙ୍କର ଏହି ଚରିତ୍ର ଦେଖି ଏବେ ମୁଁ ବୁଝି ପାରୁଛି ଶ୍ରୀ ଶ୍ରୀ ଠାକୁର କାହିଁକି ତାଙ୍କର ଏହି ଲକ୍ଷ ଲକ୍ଷ ସନ୍ତାନଙ୍କ ଭିତରେ ଆପଣଙ୍କୁ ଶ୍ରେଷ୍ଠତମ ସ୍ଥାନ ଦେଇ ରଖିଛନ୍ତି।

କ୍ରୀଷ୍ଟଦା' ମୋତେ ପୁଣି କୁଣ୍ଢାଇ ପକାଇ କହିଲେ– ସୁଶୀଲଦା'! ମୁଁ ଆପଣଙ୍କର ଭୁଲ ତ୍ରୁଟି ଦେଖୁ ନାହିଁ। ଦେଖୁଛି ସେହି ଭାବଟି ଯେଉଁଥିରେ କି ରହଛି ତୁମି ଆର ଆମି, ଅର୍ଥାତ୍ ତୁମେ ଆଉ ମୁଁ। ଭୀମଙ୍କର ସେହି କଥା– ''ଦାଦା ଆଉ ଗଦା'' ମୁଁ କହିଲି କ୍ରୀଷ୍ଟଦା', ମୁଁ ପୁଣି ଆପଣଙ୍କ ପାଖକୁ ଆସିଛି। ଠାକୁର ମୋତେ କଲିକତା ଯିବା ପାଇଁ କହୁଛନ୍ତି। ମୋତେ ସେଠାରେ ଗୋଟିଏ ରହିବାର ବ୍ୟବସ୍ଥା କରି ଦିଅନ୍ତୁ। ପୂଜ୍ୟପାଦ କ୍ରୀଷ୍ଟଦା' କହିଲେ କିଛି ଚିନ୍ତା ନାହିଁ। ମୁଁ ଅବିକା ଟେଲିଫୋନ କରି ବଦ୍ରୀଦାସ୍ ଷ୍ଟ୍ରୀଟ୍‌ରେ ସତ୍‌ସଙ୍ଗ ମନ୍ଦିରରେ ରହିବାର ବ୍ୟବସ୍ଥା କରି ଦେଉଛି। ତାହା ପୂର୍ବରୁ ଚାଲନ୍ତୁ ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ବୁଲି ଆସିବା। ଏହା କହି ମୋତେ କୁଣ୍ଢାଇ ଧରି କ୍ରୀଷ୍ଟଦା' ଠାକୁରଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ। ଆମ୍ଭମାନଙ୍କୁ ଏଇ ଭାବରେ ଦେଖି ଠାକୁର ମହା ଆନନ୍ଦରେ କହି ଉଠିଲେ– କେଷ୍ଟଦା'! (ଶ୍ରୀଶ୍ରୀ ଠାକୁର କ୍ରୀଷ୍ଟଦା'ଙ୍କୁ ''କେଷ୍ଟଦା'' ବୋଲି ଡାକୁଥାନ୍ତି।) ସୁଶୀଲର କଲିକତାରେ

ରହିବାର ଗୋଟିଏ ବ୍ୟବସ୍ଥା କରି ଦିଅନ୍ତୁ। କ୍ରୀଷ୍ଟଦା' କହିଲେ– ଆପଣଙ୍କର ଇଚ୍ଛା ଯେତେବେଳେ ହୋଇଛି ଠାକୁର! ନିଶ୍ଚୟ ବ୍ୟବସ୍ଥା ହୋଇଯିବ। ମୁଁ ଟେଲିଫୋନ୍ କରି ସବୁ ବ୍ୟବସ୍ଥା କରି ଦେବି। ଶ୍ରୀଶ୍ରୀ ଠାକୁର କହିଲେ– ସୁଶୀଲ ଆସିଗଲେ ଭଲ ହେବ। ସେତେବେଳେ ସକାଳ ଆଠଟା ହୋଇଛି। କଲିକତା ଯିବାର ପ୍ରଥମ ଗାଡ଼ି ତୋଫାନ ଏକ୍ସପ୍ରେସ୍ ଦିନ ୧୧ ଟା ବେଳେ କ୍ରୀଷ୍ଟଦା' କହିଲେ– ସୁଶୀଲଦା' ତୋଫାନରେ ଯିବେ। ମୁଁ ତାହାର ବ୍ୟବସ୍ଥା କରି ଦେଉଛି। ଠାକୁରଙ୍କ ପାଖରେ ପ୍ରଣାମ କରି କ୍ରୀଷ୍ଟଦା' ମୋତେ ତାଙ୍କ ଘରକୁ ଫେରି ଆସିଲେ। ତାଙ୍କ ସ୍ତ୍ରୀ ସୁଷମା ମା'ଙ୍କୁ ଡାକି କହିଲେ–ସୁଶୀଲଦା' ତୋଫାନ୍ ଏକ୍ସପ୍ରେସ୍‌ରେ କଲିକତା ଯିବ, ଜଲଦି ତାଙ୍କର ଖାଇବାର ବ୍ୟବସ୍ଥା କର। ମୁଁ କହିଲି କ୍ରୀଷ୍ଟଦା', ମୋତେ କ୍ଷମା କରନ୍ତୁ। ମୁଁ ଏତେ ବର୍ଷ ପରେ ଆଜି ଆଶ୍ରମରୁ ବାହାରି ଠାକୁରଙ୍କ ନିର୍ଦ୍ଦେଶରେ କଲିକଥା ଯାଉଛି। ଆନନ୍ଦବଜାରରେ ପ୍ରସାଦ ପାଇଯିବି। ଏଠାରେ ଖାଇବି ନାହିଁ, ମୋତେ କ୍ଷମା କରନ୍ତୁ।

କ୍ରୀଷ୍ଟଦା' ମହା ଖୁସି ହୋଇ ଉଠିଲେ, କହିଲେ– ଆପଣ ଠିକ୍ କହିଛନ୍ତି। ଆନନ୍ଦ ବଜାରରୁ ପ୍ରସାଦ ପାଇଯିବା ହିଁ ଭଲ। ମୁଁ ଡ୍ରାଇଭରକୁ କହି ଦେଉଛି ସେ ଗାଡ଼ିରେ ନେଇ ଆପଣଙ୍କୁ ଯସିଡ଼ୀ ଷ୍ଟେସନରେ ଛାଡ଼ି ଦେଇ ଆସିବ। ଏହା ପରେ କ୍ରୀଷ୍ଟଦା' କହିଲେ– ଆନନ୍ଦବଜାରରେ ଖାଇବା ଡେରି ଅଛି। ଆସନ୍ତୁ ଏଠାରେ କିଛି ଜଳଖିଆ ଖାଇବା। କ୍ରୀଷ୍ଟଦା'ର ଆଦେଶ ପାଳନ କରି ତାଙ୍କ ସମ୍ମୁଖରେ ବସି ତାଙ୍କ ସାଥିରେ ଲୁଚି ଇତ୍ୟାଦି ଜଳଖିଆ ଖାଇ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଫେରି ଆସିଲି। ଶ୍ରୀଶ୍ରୀ ଠାକୁର ଖୁସି ହୋଇ ପଚାରିଲେ କେଷ୍ଟଦା' କ'ଣ କହୁଥିଲେ? ମୁଁ ପୁଣି ସବୁ ଘଟଣା ବିସ୍ତାରିତ ଭାବେ ଠାକୁରଙ୍କୁ କହିଲି। ଶ୍ରୀଶ୍ରୀ ଠାକୁର କହିଲେ କ୍ରୀଷ୍ଟଦା' ଜବର ଲୋକ। ଯେତେ ତାଙ୍କ ଭିତରଟା ଦେଖିବୁ ସେତେ ଆହୁରି ଭଲ ଲାଗିବ। କଲିକତାରେ ରହି କ୍ରୀଷ୍ଟଦା' ପାଖରେ ସବୁବେଳେ ଚିଠି ଦେବୁ। ଆଉ କୌଣସି ଅସୁବିଧା ହେଲେ ମୋତେ ଚିଠି ଲେଖି, ଦରକାର ହେଲେ ଟେଲିଫୋନ୍ କରି ମୋତେ ଜଣାଇବୁ। ଏହାପରେ ସକାଳ ୯–୫୮ ମିନିଟ୍‌ରେ ମୁଁ ଯେତେବେଳେ ଠାକୁରଙ୍କୁ ପ୍ରଣାମ ସାରି କଲିକତା ଉଦ୍ଦେଶ୍ୟରେ ବାହାରି ପଡୁଛି ସେତେବେଳେ ଶ୍ରୀଶ୍ରୀ ଠାକୁର କହିଲେ– ଏକଥାଗୁଡ଼ିକ ଲେଖି ରଖ, ମୁଁ କାଗଜ କଲମ ନେଇ ଲେଖିବାକୁ ବସିଲି, ଠାକୁର ବାଣୀ ଦେଲେ,

"ଦୁର୍ଦ୍ଦଶା, ଦୁର୍ବ୍ୟବହାର, ପ୍ରଲୋଭନ
ଓ ବିକ୍ଷୁବ୍ଧ ଅହଂୟେ ଓ
ଯଦି ତୁମି ସତ୍‌ନିଷ୍ଠ ଥାକୋ
ସକ୍ରୀୟ ଚର୍ଯ୍ୟାୟ
ବୁଝୋ ଓଇ ନିଷ୍ଠା ତୋମାର ଖାଣ୍ଟୀ।

ସକାଳ ଘ: ୯–୫–ମିନିଟ୍,
(୧୩–୮–୧୯୫୮)

ଆଉ ଗୋଟିଏ ବାଣୀ ଲେଖି ନେବାକୁ କହିଲେ ଯାହାକି ପୂର୍ବଦିନ ଦେଇଥିଲେ–

ବୋଧି ଆରର୍ତି ନିଷ୍ଠା,
ଆସଙ୍ଗଲିପ୍‌ସା,
ଅଭିପ୍ରାୟ ଅନୁସାରିଣୀ ଚଳନ,
ସେବା ଆକୃତି ଓ
ଅନୁଚର୍ଯ୍ୟା ଅନୁଶୀଳନ,
ପ୍ରୀତି ଯେଖାନେ ପ୍ରକୃତ–
ଏ କୟଟି ସେଖାନେ
ବିଦ୍ୟମାନ ଥାକେ ସ୍ୱତଃଇ

ଉପରଓଳି ଘ : ୪-୨୦ ମିନିଟ୍
(୧୨–୮–୧୯୫୮)

ଏହି ଦୁଇଟି ବାଣୀ ମୋତେ ଲେଖାଇ ଦେଇ ଶ୍ରଶ୍ରୀ ଠାକୁର କହିଲେ– ଏଗୁଡ଼ିକ ମନେରଖି ଚାଲିବୁ ସବୁବେଳେ। ଆଉ "ଅନୁଶ୍ରୁତି" (ପ୍ରଥମଖଣ୍ଡ) ପାଖରେ ରଖିବୁ। ଯେତେବେଳେ କୌଣସି ଅସୁବିଧାର ସମ୍ମୁଖୀନ ହେବୁ ସେତେବେଳେ ସେହି ବହି ଖୋଲିଲେ ସେଥିରେ ପାଇଯିବୁ ତାର ସମାଧାନ। ଆଉ "ସତ୍ୟାନୁସରଣ" ତ ନିଶ୍ଚୟ ପାଖରେ ରଖିବୁ ଏବଂ ସବୁବେଳେ ଚେଷ୍ଟା ରଖିବୁ ସେହି ଭାବରେ ଅନୁସରଣ କରି ଚରିତ୍ର ଗଠନ କରିବା ପାଇଁ। ଆହୁରି କହିଲେ– କେଷ୍ଟଦା' ବଦ୍ରୀଦାସ ଷ୍ଟ୍ରୀଟ୍‌ରେ ରହିବା ବ୍ୟବସ୍ଥା କରିଦେଲେ ମଧ୍ୟ ତୁ ମନେ ରଖିଥିବୁ ତୋ ପାଇଁ କିଛି ନାହିଁ। ପରମପିତା ଯେତେବେଳେ ଯେଉଁ ଅବସ୍ଥାରେ ରଖିବେ ତାକୁ ହିଁ ମାନିନେବୁ, ଜାଣିଥିବୁ ତାହାରି ଭିତରେ ଅଛି ତାଙ୍କର ଶୁଭାଶୀର୍ବାଦ। "ଯତି ଅଭି ଧର୍ମ" ରେ

ମୁଁ ଯେଉଁକଥା କହି ରଖିଛି ତାହା ହିଁ ହେଉଛି ତୁମ୍ଭର ପଥ। ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ କରି କଲିକତା ଉଦ୍ଦେଶ୍ୟରେ ବାହାରି ପଡ଼ିଲି। ମୋର ଜୀବନର ଯାହାକିଛି ସମ୍ବଳ ସବୁ ଯାଇଛି, ସବୁକିଛି ପରିବର୍ତ୍ତରେ ଶ୍ରୀଶ୍ରୀ ଠାକୁର ଥିଲେ ମୋର ସାମ୍ନାରେ। କାହାରିର ଅଭାବ ମୋତେ ଜାଣିବାକୁ ଦେଇ ନାହାନ୍ତି। ସବୁକିଛି ଅଭାବକୁ ସେ ନିଜେ ପରିପୂରଣ କରି ଦେଉଥିଲେ ସ୍ନେହ ଓ ଭଲ ପାଇବା ଦ୍ୱାରା। ଆଜି ନିଃସ୍ୱ, ନିସମ୍ବଳ ମୋତେ ଠାକୁର ନିଜ ପାଖରୁ ମଧ୍ୟ ଦୂରେଇ ଦେଲେ। କଲିକତାରେ ରହିବାକୁ କହିଲେ।

ରହିବାର ଘର ନାହିଁ, ଦ୍ୱାର ନାହିଁ, ଖାଇବାର କୌଣସି ବ୍ୟବସ୍ଥା ନାହିଁ, ଅର୍ଥ ନାହିଁ ଏପରିକି ପିନ୍ଧିବାର ଲୁଗାପଟା ମଧ୍ୟ କିଛି ନାହିଁ, ଏକ ବସ୍ତ୍ର କହିଲେ ଚଳେ। କିନ୍ତୁ ଆସିବା ସମୟରେ ଠାକୁର ଯେଉଁ ପରିସ୍ଥିତି ସୃଷ୍ଟି କଲେ, କ୍ରୀଷ୍ଟଦା' ପାଖକୁ ମୋତେ ପଠାଇଲେ, ମୋତେ ନ ପଠାଇ କ୍ରୀଷ୍ଟଦା'ଙ୍କୁ ପୂର୍ବରୁ ଡାକି କହିଦେଇ ପାରିଥାନ୍ତେ କଲିକତାରେ ମୋର ରହିବାର ବ୍ୟବସ୍ଥା କରିବା ପାଇଁ, କିନ୍ତୁ ନା, ସେଠାରେ ମୋତେ ପଠାଇଲେ, କ'ଣ ପାଇଁ? ମୋର ସବୁକିଛି ପାର୍ଥିବ ସମ୍ପଦ ଗଲେ ମଧ୍ୟ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ସବୁବେଳେ ଉଠାବସା କରି ତାଙ୍କର ସ୍ନେହାଶୀର୍ବାଦ ପାଇ ଭିତରେ ଭିତରେ କେତେବେଳେ ମୁଁ ଅଜାଣତରେ ଦାମ୍ଭିକ ହୋଇ ଉଠିଛି, ତାହା ମୋର ଜଣା ନାହିଁ, କାହିଁକି ନା ବାହାରର କୌଣସି ଲୋକ ସହିତ ମୋର ଉଠାବସା କରୁ ନାହିଁ, ଯାହା ସଙ୍ଗରେ ଉଠାବସା କରୁଛି ସେ ହିଁ ମୋର ଇଷ୍ଟ ଦେବତା, ସେ ତ କେତେବେଳେ ହେଲେ ମୋର ଅନ୍ତରକୁ ଆହତ କରି ନାହାନ୍ତି। ଧୀରେ ଧୀରେ ମୋତେ ଗୋଟିଏ ଅବସ୍ଥାରୁ ଆଉ ଗୋଟିଏ ଅବସ୍ଥା, ଏହି ଭାବରେ ବିଭିନ୍ନ ଅବସ୍ଥାନ୍ତରରୁ ଅବସ୍ଥାନ୍ତରେ ନେଇ ଚାଲିଛନ୍ତି। ମୋର ଭଲ ହିଁ ଲାଗୁଛି, ଆନନ୍ଦ ଲାଗୁଛି। କିନ୍ତୁ ଯେଉଁ ଅସଂଯତ ଚରିତ୍ର ମୋ ଭିତରେ ରହିଛି ତାକୁ ଠୋକ୍‌କର ବା ଆଘାତ କରିବାର ପ୍ରୟୋଜନ ରହିଛି। ଅନ୍ୟ ଯେ କେହି ଲୋକ ମୋତେ ସେ ଆଘାତ କରି ବା ଠୋକ୍‌କର ଦେଇ ସଜାଡ଼ି ପାରିବ ନାହିଁ। ତେଣୁ ଶ୍ରୀଶ୍ରୀ ଠାକୁର ପଠାଇଲେ ମୋତେ ପୂଜ୍ୟପାଦ କ୍ରୀଷ୍ଟଦା' ପାଖରେ ଯେ କି ବର୍ଷ ପରେ ବର୍ଷ, ଯୁଗ ପରେ ଯୁଗ ଧରି ଲୋକ ପାଖରୁ ସବୁବେଳେ ପାଇ ଆସିଛନ୍ତି ଶ୍ରଦ୍ଧା, ଭକ୍ତି, ପ୍ରୀତି, ପ୍ରଣାମ। ବେଶୀ ଭାଗ ଲୋକ କ୍ରୀଷ୍ଟଦା'ଙ୍କୁ ଭାବୁଥିଲେ ଶ୍ରୀଶ୍ରୀ ଠାକୁରଙ୍କର ପରବର୍ତ୍ତୀ ସ୍ଥଳାଭିଷିକ୍ତ ଯଦି କେହି ହେବାର ଉପଯୁକ୍ତ ଥାଏ, ସେ ଏହି

କ୍ରିଷ୍ଟଦା'। କ୍ରମାଗତ ବିଭିନ୍ନ ଲୋକ ପାଖରୁ ସେହିପରି ବ୍ୟବହାର ପାଇ ପାଇ ଅତି ଉଚ୍ଚ ସ୍ତରର ସାଧକ ଇଷ୍ଟଗତଚିତ୍ତ କ୍ରୀଷ୍ଟଦା' କେତେବେଳେ ଭିତରେ ଭିତରେ ଭାବି ଉଠିଥିଲେ ଯେ ସାଧନା ଦ୍ୱାରା ସେ ଭଗବାନ ତଥା ଶ୍ରୀଶ୍ରୀ ଠାକୁରଙ୍କୁ ଯାହା ବୁଝିଛନ୍ତି ତାହାଠାରୁ ଆଉ କେହି ବେଶୀ ବୁଝି ନାହିଁ ବା କେତେବେଳେ ହେଲେ ବୁଝି ପାରିବ ନାହିଁ।

ଚୋରଙ୍କ ପରି ଏହି ହାମବଡ଼ାମି ଭାବ ଚୁପିସାରେ ଅନ୍ତର ଭିତରେ ପଶି ଘର ବାନ୍ଧିବାର ଚେଷ୍ଟା କରୁଥିଲା। ଅନ୍ତର୍ଯ୍ୟାମୀ ଠାକୁର, ତାର ଚିର ଆଶ୍ରିତ ଭକ୍ତକୁ ସେଥିରୁ ରକ୍ଷା କଲେ ମୋ ପରି ଗୋଟିଏ ସାଧନ ଜଗତରେ ନବାଗତ ଅସଂଯତ ଚରିତ୍ର ଯୁବକ ଦ୍ୱାରା ଯେ କି ନିର୍ଭୀକ ଭାବରେ ଛିଡ଼ା ହୋଇ ପାରିବ ସେହି ବ୍ୟକ୍ତିତ୍ୱଶାଳୀ, ନିର୍ଭୀକ, ଜ୍ଞାନୀ, ବିଦ୍ୱାନ, ସାଧକ ସମ୍ମୁଖରେ। ଠାକୁର କଣ୍ଟା ଦେଇ କଣ୍ଟା କାଢ଼ିଲେ। କିନ୍ତୁ ଉପକୃତ ହେଲେ ଆମେ ଦୁହେଁ। କ୍ରୀଷ୍ଟଦା' ଯାହାର ଅନ୍ତରରେ ମଳିନତା ଜମା ହୋଇପାରେ ନାହିଁ, ଟିକିଏ ସେହି ମଳିନତାର ଆଭାସ ପାଇ ସଙ୍ଗେ ସଙ୍ଗେ ତାକୁ ଝାଡି ସଫା କରି ଦେଲେ, ଆଉ ମୁଁ ଯାହାର ଭିତର ମଳିନତା ଦ୍ୱାରା ପୂର୍ଣ୍ଣ ସେଇ ମୁଁ କ୍ରୀଷ୍ଟଦା' ସଂସ୍ପର୍ଶରେ ଆସି ନୂତନ ଭାବରେ ଦେଖିଲି ସାଧନାର ଜୀବନ, ଗଳିତ ଅହଂଯୁକ୍ତ ସାଧକ ଶ୍ରେଷ୍ଠ କ୍ରୀଷ୍ଟଦା'ଙ୍କୁ। ମୋତେ ଆକର୍ଷଣ କଲା ତାଙ୍କ ଚରିତ୍ର। ମୂହୂର୍ତ୍ତ ଭିତରେ ମୋର ସବୁକିଛି ଅସଂଯତ ବ୍ୟବହାରକୁ କ୍ଷମା କରି ମୋର ଧୂଳିମଳିନ ଚରିତ୍ର ରହିବା ସତ୍ତ୍ୱେ ମୋତେ କୁଣ୍ଢାଇ ପକାଇଲେ। କ୍ରୀଷ୍ଟଦା' କହିଲେ– ଆମେ ଏକା ଦଳର ଲୋକ।

ତାଙ୍କର ଏହି କଥା ଶୁଣି ମୁଁ ଭୀତତ୍ରସ୍ତ ହୋଇ ପଡ଼ିଲି। ଏ କି କଥା ? କାହା ମୁହଁରୁ ମୁଁ ଏକଥା ଶୁଣୁଛି ? ଶ୍ରୀଶ୍ରୀ ଠାକୁର, ଯାହାର କି ଆଦି ଅନ୍ତ ମୁଁ ଖୋଜି ପାଉ ନାହିଁ, ଯେ ମୋର ଅନ୍ତରର ଧନ, ସେ ପ୍ରତି ମୁହୂର୍ତ୍ତରେ କ୍ରୀଷ୍ଟଦା'ଙ୍କୁ ଡାକି ଡାକି ପାଖରେ ବସାନ୍ତି, କ୍ରୀଷ୍ଟଦା' ବିହୀନ ଠାକୁର ଯେପରି ମନେ ହେଉଥିଲା କ୍ରୀଷ୍ଣ ବିହୀନ ରାଧାପରି। ଯେ କୌଣସି କଥା ପଡ଼ିଲେ ଠାକୁର କହୁଥିଲେ କ୍ରୀଷ୍ଟଦା'ଙ୍କୁ ଡାକ। ଯଥା ସମୟରେ କ୍ରୀଷ୍ଟଦା'ର ଆସିବାର ଟିକିଏ ବିଳମ୍ବ ହେଲେ ଠାକୁର ବାରମ୍ବାର କ୍ରୀଷ୍ଟଦା'ର ଆସିବା ପଥ ଚାହିଁ ରହୁଥିଲେ। ପ୍ରତିଦିନ ଏହା ଥରେ ଦୁଇଥର ନୁହେଁ, ବହୁ ବହୁବାର। ସମୟ ଅସମୟ ନାହିଁ, ପ୍ରତି କର୍ମରେ ଠାକୁର ଯାହାକୁ ସ୍ମରଣ କରୁଥିଲେ, ହଜାର ହଜାର ଲୋକ ଯାହାଙ୍କ ପଛେ ପଛେ ବୁଲୁଛନ୍ତି ସେହି କ୍ରୀଷ୍ଟଦା'

ମୁଖରୁ ଏ କ'ଣ ମୁଁ ଶୁଣୁଛି? ମୁଁ ନିଜକୁ ଅତି ଲଜ୍ଜିତ ଓ ବିବ୍ରତ ବୋଧ କଲି। ସଙ୍ଗେ ସଙ୍ଗେ ମନେ ପଡ଼ିଗଲା ମୋର ଠାକୁରଙ୍କର କଥା— କେତେ ଦୟାଲ ମୋର ଠାକୁର, କ୍ରୀଷ୍ଟଦା'ର ପ୍ରକୃତ ପରିଚୟ ପାଇବା ପାଇଁ ପଠାଇଥିଲେ ମୋତେ ତାଙ୍କ ପାଖକୁ। କିନ୍ତୁ ମୁଁ ଯେତେବେଳେ ନିଜ ଅହଂକାରରେ ମତ୍ତ ରହି ଆଉ କାହା ଆଗରେ ଆଖି ନ ପକାଇ କ୍ରୀଷ୍ଟଦା'ଙ୍କୁ ଅସମ୍ମାନିତ କରିଲି। ତାଙ୍କ ଅନ୍ତରରେ ଆଘାତ ଦେଲି, କ୍ରୀଷ୍ଟଦା'ର ମଧ୍ୟ କ୍ଷଣିକ ପାଇଁ ବହୁ ଗଭୀର ସୁପ୍ତ ଆତ୍ମ ଅହଂ ଜାଗି ଉଠିବାରୁ ମୋତେ ଆକ୍ରମଣ କଲେ ତାଙ୍କର ସର୍ବଶକ୍ତି ଦେଇ, ଉଦ୍ୟତ ହେଲେ ମୋତେ ତାଙ୍କର ସର୍ବଶକ୍ତି ଦେଇ ଦୈହିକ ଆଘାତ କରିବା ପାଇଁ। ଆଉ ହିଂସ୍ର ପ୍ରକୃତିର ମୁଁ ମଧ୍ୟ ପ୍ରସ୍ତୁତ ହେଲି ତାହାର ସମ୍ମୁଖୀନ ହୋଇ ଉପଯୁକ୍ତ ଭାବରେ ମୁକାବିଲା କରିବା ପାଇଁ।

ଠିକ୍ ଏହି ସନ୍ଧିକ୍ଷଣରେ, କ୍ଷଣେ ମାତ୍ର ବିଳମ୍ବ ହେଲେ ଯେଉଁଠି ବିପର୍ଯ୍ୟୟ ଅବଶ୍ୟମ୍ଭାବୀ, ଠିକ୍ ସେହି ମୁହୂର୍ତ୍ତରେ ଠାକୁର ପଠାଇଲେ ତାଙ୍କର ଦୂତ ରୂପେ ଦେବୀଦା'ଙ୍କୁ। ମୋର ଅନ୍ତରର ଧନ ଶ୍ରୀଶ୍ରୀ ଠାକୁରଙ୍କର ଡାକରା ଶୁଣି ସବୁ ପରିସ୍ଥିତିକୁ ଭୁଲିଯାଇ ମୁଁ ଫେରି ଆସିଲି ଠାକୁରଙ୍କର ଚରଣ ପ୍ରାନ୍ତେ। ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଦେବୀଦା ଆସିଛନ୍ତି, କ୍ରୀଷ୍ଟଦା' ଏକଥା ଶୁଣିବା ସାଙ୍ଗେ ସାଙ୍ଗେ ଲୁଚିଥିବା ଆସୁରିକ ଭାବଟି, ଯାହାକି ବାହାରି ପଡ଼ିଥିଲା, ସେ ଉଡ଼ି ଚାଲିଗଲା ଝଡ଼ର ପ୍ରଚଣ୍ଡ ବେଗରେ ଶୁଷ୍କ ପତ୍ର ପରି। ଇଷ୍ଟପ୍ରାଣ କ୍ରୀଷ୍ଟଦା' ପୂର୍ଣ୍ଣ ଭାବରେ ବୋଧି ଚକ୍ଷୁ ଉନ୍ମୀଳିତ କରି ଦର୍ଶନ କଲେ ସେହି ତାର ଚିର ଆରାଧ୍ୟ ପରମ ପ୍ରିୟ ଶ୍ରୀଶ୍ରୀ ଠାକୁରଙ୍କର ଶୁଭ ଇଙ୍ଗିତ। ଅପୂର୍ବ ଠାକୁରଙ୍କର ସେହି ଦୟାଲ ଚରିତ୍ର, ସେ ଏକାଧାରରେ ଠାକୁର ଠୋକ୍‌କର ମାରିବା ପାଇଁ ପ୍ରୟୋଜନ ହେଲେ ତିଳେ ମାତ୍ର ଦ୍ୱିଧା କରନ୍ତି ନାହିଁ, ଆଉ ସେଇ ମୁହୂର୍ତ୍ତରେ ଦେଖାଯାଏ ସେହି ଆଘାତର ସ୍ଥାନକୁ ଅତି ସୁନ୍ଦର ସୁଚାରୁ ରୂପେ, ଏପରି ବିଚିତ୍ର ରଙ୍ଗରେ ରଙ୍ଗୀନ କରି ଉଠାନ୍ତି ଯାହାକି ପ୍ରତିଟି ମନୁଷ୍ୟ ପାଖରେ ହୋଇଉଠେ ଅତି ମନୋରମ, ଏବଂ ମନୋହର। ଯେଉଁ ଧାରାରେ ମୁଁ ଜୀବନକୁ ପ୍ରଭାବିତ କରି ଚାଲିଥିଲି ସେହି ଧାରାରୁ ଟାଣି ଆଣି ଠାକୁର ମୋର ଜୀବନ ପଥର ମୁହଁ ଫେରାଇ ଦେଲେ ଆଉ ଗୋଟିଏ ଆଡ଼କୁ। ପୂର୍ବ ଜୀବନର ଆକର୍ଷଣ ବା ସଂଘର୍ଷ ଜନିତ ବ୍ୟଥା ଉପଲବ୍ଧି କରିବାକୁ ଦେଲେ ନାହିଁ, ନିଜେ ସମ୍ମୁଖରେ ରହି ନିପୁଣ ଶିଳ୍ପୀ ପରି ମୋତେ ପଥ ଦେଖାଇଲେ। କିନ୍ତୁ ଆଜି ଯେତେବେଳେ ଠାକୁର ତାଙ୍କର ସ୍ଥୂଳ ଦେହ ପାଖରୁ ମୋରି

ପ୍ରୟୋଜନରେ ମୋର ମଙ୍ଗଳ ପାଇଁ, ସାଧନା ଜୀବନରେ ସତ୍ୟ ଉପଲବ୍ଧି କରିବା ପାଇଁ ଦୂରରେ ରହିବାର ବ୍ୟବସ୍ଥା କଲେ, କିନ୍ତୁ ଏଇ ଦୂରରେ ରହିବାର ବିରହିଁ ମୁଁ ସହି ପାରିବି ନାହିଁ, ସବୁକିଛି ହରାଇ ଯାହାକୁ ପାଇଥିଲି ଅତି ଏକାନ୍ତ ଭାବେ ତାକୁ ଛାଡ଼ି ଅନ୍ୟ କୌଣସି ସ୍ଥାନରେ ମୋତେ କିଛି ପଥ ଦିଶୁ ନାହିଁ, ହାହାକାର ହତାଶା, ଠିକ୍ ସେହି ସମୟରେ କ୍ରୀଷ୍ଟଦା' ସାଙ୍ଗରେ ଏକ ସଂଘର୍ଷ ବହୁଳ ଘଟଣା ମାଧ୍ୟମରେ ମୋର ଅନ୍ତରକୁ କରି ଉଠାଇଲେ ଇଷ୍ଟବଳେ ବଳୀୟାନ। ଭକ୍ତର ଚରିତ୍ର ମୋ ପାଖରେ ଉପସ୍ଥାପିତ କରି ଠାକୁର ଭକ୍ତି ରସରେ ମୋତେ ପ୍ଲାବିତ କରି ଦେଲେ। ନବଭାବ ସଞ୍ଚାରିତ କଲେ ମୋର ଅନ୍ତରରେ ଏବଂ ଏହି ଘଟଣାର ପରେ ପରେ ବିଦାୟ ମୂହୂର୍ତ୍ତରେ ଦେଲେ ତାର ସେହି ଅମୃତ ମୁଖ ନିଃସୃତ ମହାନ ବାଣୀ–

ଦୁର୍ଦ୍ଦଶା, ଦୁର୍ବ୍ୟବହାର, ପ୍ରଲୋଭନ
ଓ ବିକ୍ଷୁବ୍ଧ ହେଂୟେଓ
ଯଦି ତୁମି ସତ୍ ନିଷ୍ଠ ଥାକୋ
ସକ୍ରିୟ ଚର୍ଯ୍ୟାୟ
ବୁଝୋ ଓଇ ନିଷ୍ଠା ତୋ ମାର ଖାଁଟି।

ସବୁ ଦୁର୍ବଳତା ମୋର ଦୂର ହୋଇଗଲା। ଠାକୁରଙ୍କର ଇଙ୍ଗିତପୂର୍ଣ୍ଣ ଆନନ୍ଦମୟ ସମ୍ମୁଖ ଜୀବନକୁ ଆଲିଙ୍ଗନ କରିବା ପାଇଁ ମନ ବ୍ୟାକୁଳ ହୋଇ ଉଠିଲା। ନବ ରୂପାନ୍ତରିତ ଅବସ୍ଥାକୁ ଆଲିଙ୍ଗନ କରି ନେଲି ସାଗ୍ରହେ, ଆନନ୍ଦେ। "ଜୟଗୁରୁ" ବୋଲି ବାହାରି ପଡ଼ିଲି, ଅନ୍ତରରେ କହିଲି– ହେ ଗୁରୁ! ହେ ମୋର ତ୍ରାତା, ତୁମ୍ଭରି ଜୟ ହେଉ ମୋର ଏହି ପ୍ରବୃତ୍ତି ତାଡ଼ିତ ଅନ୍ତରରେ, ମୋ ଭିତରେ କ୍ଷୁଦ୍ରତା, ଲଘୁତାର ବିଲୁପ୍ତି ହେଉ।

## ।। ଚଉଦ ।।

ଇଂରାଜୀ ୧୯୫୮ ସାଲ, ଏପ୍ରିଲ ମାସ। ପାଞ୍ଚ ବର୍ଷ ବିତିଛି ଆଶ୍ରମରେ। ଏହି ପାଞ୍ଚବର୍ଷ ଭିତରେ କେବେହେଲେ ଆଶ୍ରମ ବାହାରକୁ ଯାଇ ନାହିଁ। ଶ୍ରୀଶ୍ରୀ ଠାକୁର ଦୟାକରି ସବୁବେଳେ ପାଖେ ପାଖେ ରଖିଛନ୍ତି। ଘର-ସଂସାର, ବ୍ୟବସାୟ-ବାଣିଜ୍ୟ ସବୁ ନଷ୍ଟ ହୋଇଯାଇଛି। ଏହି ଆଶ୍ରମ ଛଡ଼ା ବାହାରେ ଯେ ମୋର କେହି ଅଛି ସେସବୁ କଥା ଭୁଲିଯାଇଥିଲି। ପରମ ଦୟାଲ ଶ୍ରୀଶ୍ରୀ ଠାକୁର ଦୟା କରି ପାଖରେ ରଖି ଧୀରେ ଧୀରେ ମୋତେ ନେଇ ଚାଲିଛନ୍ତି ସାଧନାର ଜଗତକୁ। ପ୍ରକୃତି ଏବଂ ପରିବେଶର ବିଭିନ୍ନ ଅବସ୍ଥା ସହିତ ଖାପ୍ ଖୁଆଇବା ପାଇଁ ବିଭିନ୍ନ ସମୟରେ ଦେଇଛନ୍ତି ବିଭିନ୍ନ ନିର୍ଦ୍ଦେଶ। ଦିନେ ଠାକୁର କହିଲେ– ତୁ ମୋର ପାଖାପାଖି ନ ରହିଲେ ଭଲ ଲାଗୁ ନାହିଁ। ତେଣୁ ଠାକୁର ବାଂଲା (ବରାଲ୍‌ବାଂଲା) ଭିତରେ ରହିଲେ ଭଲ ହୁଅନ୍ତା। ଏହା ସହ ଭଗୀରଥଦା' ଡାକ୍ତରଖାନା ପାଖକୁ ଯେଉଁ ଟିଣ ଘରଟି ଅଛି ମୋତେ ସେଠାରେ ରହିବା ପାଇଁ ନିର୍ଦ୍ଦେଶ ଦେଲେ। କାଠମିସ୍ତ୍ରୀ ଡାକି ଗୋଟିଏ ଖଟ ତିଆରି କରି ଦେଲେ। ଠାକୁର ସେତେବେଳେ ଯୁଈ ଗଛ ପାଖରେ ନିରଳା ନିବାସରେ ରହୁଥାନ୍ତି ଏବଂ ତାଙ୍କର ରହିଥିବା ଘରଠାରୁ ମୋତେ ଯେଉଁଠି ରହିବାକୁ କହିଲେ, ସେ ଘର ପନ୍ଦର କୋଡ଼ିଏ ଗଜ ଦୂର।

ଶ୍ରୀଶ୍ରୀ ଠାକୁର କହିଲେ, ତୁ ସେଇଠି ରହିବୁ, ମୋର ଯେତେବେଳେ ଇଚ୍ଛା ହେବ ତୋତେ ଡାକିବି। ସେହି ଟିଣ ଘରେ ମୁଁ ରହିବାକୁ ଆରମ୍ଭ କଲି। ବୈଶାଖ ଜ୍ୟେଷ୍ଠ ମାସରେ ପ୍ରଚଣ୍ଡ ଖରା ଦେଓଘରରେ। ଦିନ ୮/୯ଟା ପରେ ପବନ୍ ସାଙ୍ଗରେ "ଲୁ" ବହି ଚାଲିଛି। ମନୁଷ୍ୟ ଖୋଜି ବୁଲୁଛନ୍ତି ଥଣ୍ଡା, ବାହାରର ପବନ ଠାରୁ ନିଜକୁ ରକ୍ଷା କରିବା ପାଇଁ ଶୀତଳ ସ୍ଥାନ। ଏହି ସମୟରେ ଠାକୁର ମୋତେ ନିର୍ଦ୍ଦେଶ ଦେଲେ ପତଳା କାନ୍ଥ ଓ ଉପରେ ଟିଣ ଦିଆ ଘର ଭିତରେ ରହିବା ପାଇଁ। କେବଳ ରହିବା ନୁହେଁ, କେତେବେଳେ ସେ ଘରୁ ବାହାରକୁ ଯାଇପାରୁ ନାହିଁ, କାହିଁକିନା ଠାକୁର କେତେବେଳେ ଖୋଜିବେ, ଡାକିବେ। ଏହି ଆଶାରେ ପ୍ରହର ଗଣି ଚାଲିଛି ସେହି ଉତ୍ତପ୍ତ ଘର ଭିତରେ। ଦିନ ଦଶଟା ପର୍ଯ୍ୟନ୍ତ ଠାକୁରଙ୍କ ପାଖରେ କଟୁଛି। ତାପରେ ଦ୍ୱିପ୍ରହର ଆହାରାଦି ପରେ ଦିନ ସାଢ଼େ ୧୧ଟା ୧୨ଟା ପର୍ଯ୍ୟନ୍ତ ଠାକୁରଙ୍କ ପାଖେ ପାଖେ ରହୁଛି। ତା'ପରେ ଯେତେବେଳେ ମୋର ନିର୍ଦ୍ଦେଶିତ ରହିବା

ଘରକୁ ଆସୁଛି ସେ କି ଅସହ୍ୟ ଗରମ। କିନ୍ତୁ ପ୍ରାୟ ଦିନ ଦେଖାଯାଉଛି ଠାକୁର ଦିନ ଗୋଟାଏ ଦେଢ଼ଟା ବେଳେ ବା କେଉଁଦିନ ତାହା ପୂର୍ବରୁ ମୋତେ ଡାକୁଛନ୍ତି। ଏହି ଭାବରେ ଦିନ ପରେ ଦିନ, ମାସ ପରେ ମାସ ବିତି ଚାଲିଛି। ଦିନେ ଠାକୁର ପଚାରିଲେ– ତୋ ଘରେ ଖୁବ୍ ଗରମ ହେଉଛି କି? ମୁଁ କହିଲି ହିଁ। ଶ୍ରୀଶ୍ରୀ ଠାକୁର ଆନନ୍ଦ ସହକାରେ ହସି ଉଠି କହିଲେ– ତୁ ଯେଉଁ ଘରେ ରହିଛୁ ସେଠି ଦିନତବେଳେ କେହି ରୁହୁ ନାହିଁ। ଥଣ୍ଡା ଖୋଜି ଅଲଗା ଘରେ ଯାଇ ରହୁଛନ୍ତି। କିନ୍ତୁ ମୋର ଭଲ ଲାଗୁଛି ଏହା ଦେଖି ଯେ ଯେତେ କଷ୍ଟ ହେଉନା କାହିଁକି ତୁ ଘର ଛାଡ଼ି ଦ୍ୱିପ୍ରହରରେ କେଉଁଠିକୁ ଯାଉ ନାହୁଁ। ସବୁବେଳେ ସେଇଠି ରହୁଛୁ। ମୁଁ କହିଲି ଠାକୁର, ସେ ଘରେ ଖୁବ୍ ଗରମ ହେଉଛି ସତ, କିନ୍ତୁ ମୋର ମନ ପଡ଼ି ରହୁଛି ଆପଣଙ୍କ ପାଖରେ। କେତେବେଳେ ମୋତେ ଡାକିବେ ଏହି ଚିନ୍ତାରେ ରହୁଛି। ଆପଣଙ୍କ ଡାକରା ଶୁଣିବା ପାଇଁ ମନ ସବୁବେଳେ ବ୍ୟାକୁଳ ହୋଇ ରହୁଛି। ତେଣୁ ଦେହରେ ଗରମ ଲାଗିଲେ ମଧ୍ୟ ତାହା ମନକୁ ସ୍ପର୍ଶ କରିପାରୁ ନାହିଁ। ଶ୍ରୀଶ୍ରୀ ଠାକୁର କହିଲେ– ଏହି ତ ସେହି କଥା, କାହାକୁ ଭଲ ପାଇଲେ ତାହା ପାଇଁ ସବୁକିଛି କରାଯାଏ, ସହ୍ୟ କରାଯାଏ। କୌଣସି ଦୁଃଖ କଷ୍ଟକୁ ଆଉ ଦୁଃଖକଷ୍ଟ ବୋଲି ମନେ ହୁଏ ନାହିଁ। ପରିଣତିରେ ଦେଖାଯାଏ ଏଇ ଟାଣ ବା ଆକର୍ଷଣ ଜୀବନକୁ ଉର୍ଦ୍ଧ୍ୱ ପଥକୁ ନେଇଯାଏ ଏବଂ କର୍ମ ଜୀବନରେ ମଧ୍ୟ ଆସେ Success ବା ସଫଳତା। ଏଇ ଭାବରେ ସେହି ଘରେ ରହିଲି ବେଶ୍ କିଛି ଦିନ ଶ୍ରୀଶ୍ରୀ ଠାକୁରଙ୍କ ଆଦେଶରେ। ଏହାର କେତେମାସ ପରେ, ଶ୍ରୀଶ୍ରୀ ଠାକୁର ସେତେବେଳେ ବରାଲ–ବାଂଲା (ଠାକୁର ବାଂଲା)ର ସମ୍ମୁଖସ୍ଥ ଘରେ ରହୁଛନ୍ତି, ଦିନେ November ମାସରେ ମୋତେ ଡାକି ଶ୍ରୀଶ୍ରୀ ଠାକୁର କହିଲେ– ତୋର ରହିବା ଜାଗାଟା ମୋର ରହିବା ସ୍ଥାନରୁ ଦୂର ହୋଇ ଯାଉଛି। ଆହୁରି ନିକଟରେ ରହିଲେ ଭଲ ହୁଅନ୍ତା। କିନ୍ତୁ ସେପରି କୌଣସି ଘର ନାହିଁ ମୋର ରହିବା ପାଇଁ। ଶ୍ରୀଶ୍ରୀ ଠାକୁର ମୋତେ ଡାକି କହିଲେ ସେଠି ଆମ୍ବ ଗଛ ତଳେ ଲୁହାର ରେଳ ୱାଗନ ପରି ଗୋଟିଏ ଘର ଅଛି। ସେଠାରେ ପଞ୍ଚାନନଦା'ର ଜିନିଷପତ୍ର ଅଛି। ତୁ ପଞ୍ଚାନନଦା' ସାଙ୍ଗରେ କଥା କହି ତାଙ୍କୁ ରାଜି କରି ସେଠାରେ ରହିଲେ ଭଲ ହେବ। ପଞ୍ଚାନନଦା' (ଶ୍ରୀଯୁକ୍ତ ପଞ୍ଚାନନ ସରକାର, ଏମ୍. ଏ.,) ପୂର୍ବରୁ ମୋତେ ଭଲ ପାଉଥିଲେ। ଠାକୁରଙ୍କର କଥା ତାଙ୍କୁ ନ କହି ତାଙ୍କର ସେହି ଲୌହ ଘରଟିରେ ରହିବା ବାସନା ଜଣାଇଲି। ପଞ୍ଚାନନଦା'

ପ୍ରଥମେ ଆପତ୍ତି କଲେ ମଧ୍ୟ ପଛରେ ଅନୁମତି ଦେଲେ ସେଠାରେ ରହିବା ପାଇଁ। କହିଲେ ତାଙ୍କର କାଗଜପତ୍ର ବହି ଇତ୍ୟାଦି କିଛି ଯେପରି ନଷ୍ଟ ନହେବ ବରଂ ସେଗୁଡ଼ିକୁ ଆହୁରି ଭଲ କରି ଦେଖାଶୁଣା କରିବାକୁ ହେବ– ଏହି ସର୍ତ୍ତରେ ଉକ୍ତ ଲୌହ ଘରଟିରେ ରହିବାର ଅନୁମତି ପାଇଲି ଏବଂ ଶ୍ରୀଶ୍ରୀ ଠାକୁରଙ୍କୁ ସେ କଥା ଜଣାଇଲି। ଠାକୁର ଖୁବ୍ ଖୁସି ହୋଇ ଉଠିଲେ, କହିଲେ ପରମପିତାର ଦୟାରେ ଖୁବ୍ ଭଲ ହୋଇଛି। ପାଖାପାଖି ରହିବୁ। ଦିନ ରାତି ଯେତେବେଳେ ମୋର ଦରକାର ହେବ ମୁଁ ଡାକିବି। ମୋର ବିଛଣା ଇତ୍ୟାଦି ଆଣି ମୁଁ ସେଠାରେ ରହିବାର ବ୍ୟବସ୍ଥା କଲି। ନଭେମ୍ବର ପରେ ଡିସେମ୍ବର ଆସିଲା। ଦେଓଘରରେ ଖୁବ୍ ଶୀତ ପଡୁଛି। ବାହାରେ ଯାହା ଶୀତ ତା'ଠାରୁ ଅନେକ ବେଶୀ ଶୀତ ସେହି ଲୁହାର ଘର ଭିତରେ। ଜାନୁୟାରୀ ମାସରେ ସେ ଘର ଭିତରେ ରାତ୍ରିରେ ରହିବା ଏକ ପ୍ରକାର ଅସମ୍ଭବ ହୋଇ ଉଠିଲା। ଶୀତ ଥଣ୍ଡାରେ ଦେହର ରକ୍ତ ଜମିଯିବା ଉପରେ। ପୁଣି ସେ ଲୁହା ଘରର ଲୁହା ଛାତ ଓ କାନ୍ଥ ଦେଇ ଠସ୍ ଠସ୍ କରି ଉପରୁ କାକର ପାଣି ପଡୁଛି। ରାତ୍ରି ସାରା ଜଗି ବସି ରହିବାକୁ ହେଉଛି। ଶୋଇବାର କୌଣସି ଉପାୟ ନାହିଁ। ଦେହରେ ଘୋଡ଼େଇ ହେବାର ରେଜାଇ ଦେହକୁ ଦେଲେ ମନେ ହେଉଛି ଯେପରି ପାଣି ଭିତରୁ କେହି ବୁଡ଼ାଇ ଆଣି ରଖିଛନ୍ତି। ଦିନସାରା କାଟୁଛି ଶ୍ରୀଶ୍ରୀ ଠାକୁରଙ୍କ ସାନିଧ୍ୟରେ। ରାତ୍ରିରେ ସେହି ଲୌହ ଘରେ ଏପରି ଅବସ୍ଥାରେ କବାଟ ବନ୍ଦ କରି ବସି ରହିବାକୁ ହେଉଛି। ଶୋଇବାର କୌଣସି ଉପାୟ ନାହିଁ। ବସିଲେ ମଧ୍ୟ ଦେହରେ କମ୍ପ ଉଠୁଛି। ରାତ୍ରିସାରା ବିତୁଛି ନାମ–ଧ୍ୟାନ ମାଧ୍ୟମରେ। ବସି ବସି ନାମ କରି ଚାଲିଛି, ଦିନ ପରେ ଦିନ, ମାସ ପରେ ମାସ। ଆଶ୍ଚର୍ଯ୍ୟ ହୋଇ ଗୋଟିଏ ଜିନିଷ ଦେଖୁଛି ଧ୍ୟାନରେ ବସିଲେ ପ୍ରଥମେ ପ୍ରଥମେ ଥଣ୍ଡା ପାଇଁ ଅସୁବିଧା ହେଲେ ମଧ୍ୟ ଧୀରେ ଧୀରେ ଥଣ୍ଡାର କୌଣସି ଅନୁଭୂତି ରହୁ ନାହିଁ। ଏହି ଭାବରେ କେତେବେଳେ ରାତ୍ରି ଭୋର ହୋଇ ଯାଉଥିଲା ଜାଣିପାରୁ ନଥିଲି। ଦିନେ ଠାକୁର କହିଲେ କ'ଣ ଖବର? କିପରି ଥଣ୍ଡା ପଡ଼ିଛି? ମୁଁ କହିଲି ଠାକୁର ଶୀତତ ବହୁତ ପଡ଼ିଛି। କିନ୍ତୁ ଆପଣଙ୍କ ଦୟାରେ ରାତ୍ରିରେ ମୁଁ ଶୀତ ବିଶେଷ ଉପଲବ୍ଧି କରି ପାରୁ ନାହିଁ। ଶୋଇଲେ ଶୀତରେ ନିଦ ଆସେ ନାହିଁ, କିନ୍ତୁ ନାମ କରିବାକୁ ବସିଲେ କୁଆଡୁ କ'ଣ ହେଉଛି ବୁଝିପାରୁ ନାହିଁ, ଶୀତ ଉପଲବଧି କରିପାରୁ ନାହିଁ। ପୂରା ରାତ୍ରିଟା କିପରି ବିତି ଯାଉଛି ସ୍ୱପ୍ନ ପରି। ଶ୍ରୀଶ୍ରୀ ଠାକୁର ଖୁବ୍ ଆନନ୍ଦ କରି କହି ଉଠିଲେ ତୁ ଜବର

ଲୋକ, ଥଣ୍ଡାକୁ ଜବଦ କରିବା ପାଇଁ ଭଲ ରାସ୍ତା ବାହାର କରିଛୁ। ଶ୍ରୀଶ୍ରୀ ଠାକୁର ଏକଥା କହିଲେ ମଧ୍ୟ ମୁଁ ଜାଣିଛି– ମୁଁ କୌଣସି ପଥ ବାହାର କରି ନାହିଁ। ଯଦି କିଛି ପଥ କେହି ବାହାର କରିଥାଏ ସେ ଶ୍ରୀଶ୍ରୀ ଠାକୁର ସ୍ୱୟଂ। ଅବାଧ ସନ୍ତାନ ଯେତେବେଳେ କୌଣସି କଥା ଶୁଣୁ ନାହିଁ, କୌଣସି ପ୍ରକାରରେ ମନକୁ ସଂଯତ କରିପାରୁ ନାହିଁ, ସେତେବେଳେ ସେ ନିଜେ ସ୍ନେହ-ପ୍ରେମ-ଡୋରରେ ବାନ୍ଧି ବିଭିନ୍ନ ପରିସ୍ଥିତିରେ ମୋର ଜୀବନକୁ ଅଭ୍ୟସ୍ତ କରି ନେଇ ଚାଲିଛନ୍ତି। ମୋରି କି ସାଧ୍ୟ ଏହି ସବୁ ପରିସ୍ଥିତି ଭିତରେ ଚାଲିବା ପାଇଁ? ଠାକୁର ନିଜେ ଆସି ମୋ ଭିତରେ ରହି ମୋତେ ନାମ ଧ୍ୟାନ କରାଉଛନ୍ତି। ହାତରେ ଗୋଟିଏ ପଇସା ରହୁନାହିଁ, ପ୍ରତିଦିନ ଭିକ୍ଷା କରି ଇଷ୍ଟ ଭୃତି କରୁଛି। ସକାଳେ ଏବଂ ଉପର ଓଳି ଜଳଖିଆ ଇତ୍ୟାଦି ଖାଇବାର କୌଣସି ପ୍ରଶ୍ନ ଉଠୁନାହିଁ, ଆନନ୍ଦବଜାରରେ ଦୁଇଓଳି ଡାଲି-ଭାତ। ସମସ୍ତେ ଦୋକାନରୁ ଜଳଖିଆ କିଣି ଖାଆନ୍ତି ମୋ ପାଇଁ ସେ ପଥ ମଧ୍ୟ ଠାକୁର ବନ୍ଦ କରି ରଖିଛନ୍ତି। ତ୍ୟାଗୀ ମୁଁ ନୁହେଁ, କିନ୍ତୁ ତ୍ୟାଗୀ ହୋଇ ଉଠିଲି। ସଂଯତ ମୁଁ ନୁହେଁ, କିନ୍ତୁ ସଂଯତ ହୋଇ ଉଠିଲି। ମୁଁ କେବେ ପ୍ରଲୋଭନକୁ ଜୟ କରିପାରୁ ନଥିଲି, କିନ୍ତୁ ସେହି ପ୍ରଲୋଭନ ମୋ ପାଖରେ ପରାଜିତ ହୋଇ ପଡ଼ିଲା। କିପରି? କିଏ କଲେ? କିଏ ମୋର ହାତ ଧରି ଧରି ମୋତେ ନେଇଛନ୍ତି? କିଏ ମୋର ମନ ଭିତରେ ପଶି ବହିର୍ବିଶ୍ୱରେ ଆକର୍ଷଣୀୟ ଯାହାକିଛି, ସବୁକିଛିକୁ ଦୂରାଇ ଦେଇ ମୋର ଜୀବନ ସାମ୍ନାରେ ଆସି ଉପସ୍ଥିତ ହେଲେ? ଏଇ ତ ସେଇ ମୋର ମନର ମନୁଷ୍ୟ, ସମ୍ମୁଖେ ବସିଥିବା ମୋର ଇଷ୍ଟ, ଗୁରୁ ଯେକି–

"ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା଼ଃ
ଚକ୍ଷୁରୁନ୍ମୀଲିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ"

ପ୍ରଣତ ହେଲି ଶ୍ରୀଶ୍ରୀ ଠାକୁରଙ୍କ ଚରଣରେ। କହିଲି ଠାକୁର! କି ସାଧ୍ୟ ମୋର ଯେ ନିଜଠାରୁ ପଥ ବାହାର କରି, ସେହି ପଥରେ ଚାଲିବି। ମୁଁ ଅତି ଦୁର୍ବଳ, ଆପଣ ଦୟା କରି ମୋତେ ପଥ ଦେଖାଇ ନେଇ ଚାଲିଛନ୍ତି ବୋଲି ମୁଁ ଚାଲିପାରୁଛି। ପୁନରାୟ ଶ୍ରୀଶ୍ରୀ ଠାକୁର କହିଲେ– ଇଷ୍ଟଙ୍କୁ ଭଲ ପାଇଲେ ସ ବୁ କିଛି କରିବା ସମ୍ଭବ ହୁଏ। ସେହି ଯେ କଥା– "ଭାଲୋବାସାର ଟାଣ, କରମେ ଆଣେ ସଫଳତା ଜୀବରେ ଉତ୍‌ଥାନ"। ଅର୍ଥାତ୍ ଜୀବନରେ ଇଷ୍ଟଙ୍କୁ ଯଦି ଭଲ ପାଏ, ତାଙ୍କ ପ୍ରତି ଯଦି ଟାଣ ବା ଆକର୍ଷଣ ହୁଏ

ତାହେଲେ ସବୁ କର୍ମରେ ସଫଳତା ଆସେ ଏବଂ ଜୀବନ ବର୍ଦ୍ଧନରୂପୀ ଉତ୍ଥାନ ମଧ୍ୟ ଆସେ ସେହିପରି ଅପ୍ରତିରୁଦ୍ଧ ଭାବରେ। ମୁଁ କହିଲି ଠାକୁର ! ଭଲ ପାଇବା, ଟାଣ ଇତ୍ୟାଦି ଯାହାକିଛି କୁହନ୍ତୁ ମୋର ଜୀବନରେ ତାହାର ଯଦି କିଛି ଆସିଥାଏ, ତାର ମୂଳରେ ଆପଣ ଛଡ଼ା ତ ଆଉ କେହି ନାହିଁ। ଆପଣ ଦୟାକରି ମୋର ଜୀବନ ସାମ୍ନାରେ ଆସି ଛିଡ଼ା ହୋଇଛନ୍ତି, ହାତ ଧରି ଧରି ନେଇ ଚାଲିଛନ୍ତି, ଯେପରି ଚାଲି ପାରୁ ନଥିବା ସାନ ଛୁଆମାନଙ୍କୁ ହାତ ଧରାଇ ଚାଲିବାକୁ ଶିଖାନ୍ତି। ସେହିପରି ମୋର ଜୀବନରେ ଆପଣ ଆସି ନେଇ ଚାଲିଛନ୍ତି ହାତ ଧରି ଧରି। ଶ୍ରୀଶ୍ରୀ ଠାକୁର ନୀରବ ରହିଲେ।

**"WHERE EVERY OPPOSITE MEETS**
**WITH MEANINGFUL GO**
**GODHOOD PEEPS THERE"**

**SREE SREE THAKUR**

## ॥ ପନ୍ଦର ॥

ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଯେ ମୋର ମନର ମଣିଷ, ତାହାଙ୍କୁ ଦେଖିଲେ ମୁଁ ମୋତେ ଖୋଜି ପାଏ, ମୋର ହୃଦୟର ବଳ ତାଙ୍କୁ ଦେଖିଲେ କେଉଁଠୁ ଫେରି ଆସେ। ମୋତେ ସେହି ସଞ୍ଜୀବନୀ ରସ ଅଦ୍ଭୁତ ବଳଶାଳୀ କରି ତୋଳେ। କ'ଣ ଯେ ରସ ତାହା ମୁଁ ଜାଣେନା, କିନ୍ତୁ କିଛି ଗୋଟାଏ ଯେ ହୁଏ, ଏକଥା ନିହାତି ସତ୍ୟ। ଦେଖିବାକୁ ଗଲେ ସେ ଜଣେ ସାଧାରଣ ମଣିଷ– ଜଟା, ତିଳକ, ଗେରୁଆ, ଲୋଟା କିଛି ନାହିଁ। ଶୁଭ୍ର ବସନ, ନଗ୍ନ ଦେହୀ ଉପବୀତ ଧାରୀ ବ୍ରାହ୍ମଣ ହିଁ, ଜୀବନରେ ଏଇ ପ୍ରଥମ ଥର ଜଣେ ଯଥାର୍ଥ ବ୍ରାହ୍ମଣ ଦେଖିଲି; ସବୁ ଜାଣି ମଧ୍ୟ ଜାଣି ନଥିବାର କି ମୂର୍ତ୍ତ ପ୍ରକାଶ ! ଦିନେ ପଚାରିଥିଲି ଠାକୁର, ଯେ ବହ୍ମଜ୍ଞ ବା ବ୍ରହ୍ମଦର୍ଶୀ, ସେ ନିଜକୁ କିଭଳି ମନେ କରେ ? ସେ ଉତ୍ତର ଦେଲେ ବ୍ରହ୍ମଦର୍ଶୀ ଜାଣେନା ଯେ ସେ ବ୍ରହ୍ମଦର୍ଶୀ, ବରଂ ବିରାଟର ଆଭାସ ପାଇ ନିଜେ କିଛି ଜାଣେନା– ଏଇ ବୋଧ ଜାଗ୍ରତ ହୁଏ। ତା ଦୀନତା ବୋଲି ଅନ୍ୟ ନିକଟରେ ପ୍ରତୀୟମାନ ହେଲେ ବି ପ୍ରକୃତରେ ସେ ବୋଧ କରେ କି ସାମାନ୍ୟତା ଜାଣିଛି ସେ ବିରାଟତ୍ତ୍ୱର, ଯାହା ଅବାଙ୍‌ମନସଗୋଚରମ୍ ତେବେ ଗୋଟାଏ ଜିନିଷ, ଏଇ ଜଗତର ମଣିଷ ସେଇ ବ୍ରହ୍ମଦର୍ଶୀଙ୍କ ଠାରୁ ଅନେକ ନୂତନ ଦିଗର ସନ୍ଧାନ ପାଆନ୍ତି, ତାଠାରୁ ଅନେକ ଅଜଣା ରାଜ୍ୟ କଥା ଶୁଣିବାକୁ ପା'ନ୍ତି, ଯାହା ଏଇ ଜଗତର ଚଳିତ ପ୍ରଥାର ବହିର୍ଭୂତ। ଏପରିକି ତାର ଚାଲିଚଳନ ସ୍ୱାଭାବିକ, ସହଜ ଓ ସମସ୍ତଙ୍କ ପରି ହେଲେ ବି ସେ ସମସ୍ତଙ୍କର ଧରାଛୁଆଁର ବାହାରେ ଥା'ନ୍ତି। ମଣିଷ ସେତେବେଳେ ତାଙ୍କ ପଛରେ ଦୌଡ଼ିଯାଏ, ବ୍ରହ୍ମଜ୍ଞ, ତତ୍ତ୍ୱଦର୍ଶୀ, ଭଗବାନ ଅବତାର ଇତ୍ୟାଦି କହି। କିନ୍ତୁ ଯାହାଙ୍କୁ ଏକଥା କୁହାଯାଏ; ସେ ଏ ବିଷୟରେ ମୋଟେ ଅବହିତ ନୁହନ୍ତି। ଲୋକେ ତାଙ୍କୁ ଭଗବାନ ଅବତାର ଇତ୍ୟାଦି ଯେ କୌଣସି ଭୂଷଣରେ ବିଭୂଷିତ କରନ୍ତୁ ନା କାହିଁକି, ସେ ସେଥିପାଇଁ ଖାତିର କରନ୍ତି ନାହିଁ, ବା ପ୍ରଭାବିତ ହୁଅନ୍ତି ନାହିଁ, ଯଦିବା ତାଙ୍କର ଚାଲିଚଳନ, ଆଚର ଆଚରଣ ସବୁ ସରଳ ଏବଂ ସେ ବିଶ୍ୱର ସବୁ କିଛି ସହ ଏକାତ୍ମ ହୋଇ ଚଳନ୍ତି। ସମସ୍ତଙ୍କ ସହ ରହି ମଧ୍ୟ ସେ ହୁଅନ୍ତି ସମସ୍ତଙ୍କର ପରିପୂରକ। ସେ ଯାହା ପାଇଁ ଯାହା କିଛି କରନ୍ତୁ ନା କାହିଁକି ତା' ନିଜର ଭାବି କରନ୍ତି।

ଦିନେ ପଚାରିଲି—ଠାକୁର ! ପରକୁ ଦାନ କରିବାତ ଧର୍ମ ? ଶ୍ରୀଶ୍ରୀ ଠାକୁର ଓଷ୍ଠାଧାରରେ ଏଭଳି ଅଦ୍ଭୁତ ଭଙ୍ଗୀ କଲେ— ଯେପରି କିଛି ଜାଣନ୍ତି ନାହିଁ। ତାପରେ ମୁହଁରେ କହିଲେ—''ମୁଁ ଜାଣେନା, ଆଜି ପର୍ଯ୍ୟନ୍ତ ପର କାହାକୁ ତ ପାଇନାହିଁ, ତେଣୁ ପରକୁ ଦାନ କରି ଧର୍ମ କରିବା ମୁଁ ବୁଝେନା। ମୁଁ ଯେତେବେଳେ ଯାହା କରେ, ମୋ ପାଇଁ କରେ। ଡାହାଣ ହାତର ପ୍ରୟୋଜନରେ ଯେତେବେଳେ ବାଁ ହାତ ଆଗେଇ ଯାଏ, ସେ ଯାଏ ତାର ନିଜର ପ୍ରୟୋଜନରେ ଡାହାଣ ହାତକୁ ସାହାଯ୍ୟ କରି ଧର୍ମ ଅର୍ଜନ କରିବା ପାଇଁ ନୁହେଁ। ନ ଯାଇ ରହି ପାରେନା। ତେଣୁ ଯାଏ। ମୁଁ ଯାହା କରେ, କେବଳ ମୋ ପାଇଁ କରେ— ସମସ୍ତଙ୍କୁ ମନେ ହୁଏ ମୋର ଅଂଶ। କିଛି କରି ନ ପାରିଲେ ଭୀଷଣ କଷ୍ଟ ହୁଏ।'' ଯାହାଙ୍କ ଠାରୁ ଏକଥା ଶୁଣିଲି, ଏକଥା ଯେ ତାଙ୍କ ପାଇଁ କେତେ ସତ୍ୟ, ତାର ବହୁ ପ୍ରମାଣ ବହୁବାର ପାଇଛି।

ଆଉ ଗୋଟିଏ ଦିନର ଘଟଣା ମନେ ପଡ଼େ— ଦିନ ପ୍ରାୟ ସାଢ଼େ ଦଶଟା, ଶ୍ରୀଶ୍ରୀ ଠାକୁର ସ୍ନାନ କରିବାକୁ ଯିବେ, ସେଥିପାଇଁ ପ୍ରସ୍ତୁତ ହେଉଛନ୍ତି। ଦେହରେ ତେଲ ଲଗେଇ ଗାଧୁଆ ଘରକୁ ଯିବେ— ଏତିକି ବେଳେ ଜଣେ ଲୋକ ଆସି ଅସ୍ତବ୍ୟସ୍ତ ହୋଇ ହାତଯୋଡ଼ି ଠିଆ ହେଲା। ଶ୍ରୀଶ୍ରୀ ଠାକୁର ଜିଜ୍ଞାସୁ ଦୃଷ୍ଟିରେ ତା' ଆଡ଼କୁ ଅନାଇବାରେ ସେ କହିଲା—ଠାକୁର ! ମୋର ବାପା, ମା ବୃଦ୍ଧ, ସେମାନେ ଏଇକ୍ଷଣି କଲିକତାରୁ ଆସି ପହଞ୍ଚିଲେ। ତାଙ୍କୁ କେଉଁଠି ରଖିବି, କ'ଣ ଖାଇବାକୁ ଦେବି, ମୋ ହାତରେ ଗୋଟିଏ ବି ପଇସା ନାହିଁ।

ତେଣୁ ଆପଣଙ୍କ ପାଖକୁ ଆସିଛି। ଶ୍ରୀଶ୍ରୀ ଠାକୁର ଶୁଣି ବ୍ୟସ୍ତ ହୋଇ ଉଠି କହିଲେ ''ତାଙ୍କୁ କେଉଁଠି ରଖିଛୁ ? ଗୋଟିଏ ଭଲ ଜାଗା ଦେଖି ରଖିବାର ବ୍ୟବସ୍ଥା କର। ବାପ, ମା,— ତାଙ୍କ ଠାରୁ ବଡ଼ ଆଉ କିଏ ଅଛି ? ତା'ପରେ କହିଲେ— ତମେ ଶରତ୍‌ଦା'ଙ୍କ ପାଖରେ ରହୁଛ ନା ? ଲୋକଟି କହିଲା— ହଁ, ମୁଁ ତାଙ୍କ ପାଖେ ରହେ। ସେ ଯୁଆଡ଼େ ଯାନ୍ତି, ମୁଁ ତାଙ୍କ ସଙ୍ଗେ ଯାଏ ଏବଂ ଗୀତ ବୋଲେ। ଶ୍ରୀଶ୍ରୀ ଠାକୁର ଭାଇଟିକୁ କହିଲେ— ତମେ ଯାଇ ଶରତ୍‌ଦା'ଙ୍କୁ ତୁମ୍ଭ ବାପ, ମା ଆସିବା କଥା କୁହ ଏବଂ ସେ କ'ଣ କହୁଛନ୍ତି ଶୁଣିଆସ। ଭାଇଟି ଗଲେ ଏବଂ ଆମେ ସମସ୍ତେ ମିଶି ଠାକୁରଙ୍କୁ ଗାଧୋଇ ଯିବା ପାଇଁ ଅନୁରୋଧ କଲୁ। ସେ କିନ୍ତୁ ଆମ

କଥା ପ୍ରତି କର୍ଣ୍ଣପାତ ନକରି ଚୁପ କରି ବସି ରହିଲେ– ସେ ଭାଇଟିର ଆସିବା ବାଟକୁ ଚାହିଁ। କିଛି ସମୟ ପରେ ସେ ଆସି କହିଲା– ଶରତଦା' କହିଲେ ତମର ବାପା, ମା ଆସିଛନ୍ତି। ସେଥିପାଇଁ ଯାହା କରିବା କଥା ତୁମେ କରିବ, ମୁଁ ଆଉ କ'ଣ କରିବି ? ଶ୍ରୀଶ୍ରୀ ଠାକୁର ଏକଥା ଶୁଣିଲେ। ସଙ୍ଗେ ସଙ୍ଗେ ସେ ଭିକ୍ଷା କରିବାକୁ ଲାଗିଲେ, ଉପସ୍ଥିତ ସମସ୍ତଙ୍କ ଠାରୁ କାହାଠାରୁ ଦଶ, କାହାଠୁ ପନ୍ଦର, କାହାଠାରୁ ବା ପଚିଶ ଟଙ୍କା। ସମସ୍ତେ ଦେବାପାଇଁ ପ୍ରତିଶ୍ରୁତି ଦେଲେ, କେହି କେହି ବା ସେଇଠି ଦେଇ ଦେଲେ। ମୁଁ ସେଇଠି ଉପସ୍ଥିତ ଥିଲି– ଯେ ଯାହା ଦେଲା ଶ୍ରୀଶ୍ରୀ ଠାକୁର ସବୁ ମୋତେ ରଖିବାକୁ କହିଲେ– ସେ ନିଜ ହାତରେ ଟଙ୍କା ଛୁଅନ୍ତି ନାହିଁ। ସମସ୍ତେ ଶ୍ରୀଶ୍ରୀ ଠାକୁର ସ୍ନାନ କରିବାକୁ ଯିବାକୁ ଆକୁଳ ପ୍ରାର୍ଥନା କଲେ– ସେ କିନ୍ତୁ ଅଟଳ, ଦୃଢ଼ ପ୍ରତିଜ୍ଞ ହୋଇ ବସି ରହିଲେ। ଯେଉଁମାନେ ଭିକ୍ଷା ଦେବାପାଇଁ ସଂକଳ୍ପ କରି ସେଇଠି ବସି ରହିଥିଲେ, ସେମାନେ ଉଠି ଚାଲିଗଲେ ଟଙ୍କା ଆଣିବାକୁ। ମୋର ମନେ ହେଲା– ସେ କହୁଛନ୍ତି ଯାହା କରିବ ତାହା ବର୍ତ୍ତମାନ କର, କରିବ ବୋଲି ବସି ରହି କର୍ମଫଳକୁ ପଛେଇ ଦିଅନାହିଁ, ଶ୍ରୀଶ୍ରୀ ଠାକୁରଙ୍କ ମୌନ ଶିକ୍ଷା ତାଙ୍କ ଶରଣାଗତ ଶିଷ୍ୟମାନଙ୍କୁ ଏଇ କଥା ଶିକ୍ଷା ଦେଲା।

ଶ୍ରୀଶ୍ରୀ ଠାକୁର ଉପବାସୀ–ଏପରିକି ତେଲ ଲଗେଇ ବସି ରହିଛନ୍ତି। ଗାଧୋଇ ନାହାନ୍ତି, ଆଶ୍ରମରେ ଏକଥା ରଚନା ହୋଇଗଲା। ସମସ୍ତେ ଆସି ପହଞ୍ଚିଲେ। ସମସ୍ତଙ୍କ ଚାହାଣୀରେ ଓ କଥାରେ କାତର ପ୍ରାର୍ଥନା– ''ହେ ପ୍ରଭୁ, ଦୟାକରି ଉଠ– ଆମେ ଜାଣୁ ଏଇ ଜାଗତିକ ଆହାର ନିଦ୍ରା ପ୍ରଭୃତିର ବହୁ ଉର୍ଦ୍ଧ୍ୱରେ ତୁମେ– ତେବେ ଦେହ ଯେତେବେଳେ ଗ୍ରହଣ କରିଛ, ସେଥିପାଇଁ ଯାହା ଆବଶ୍ୟକ, ତା ତ କରିବା ଉଚିତ। ଏଇକଥା ତ ତମେ ଶିଖାଇଛ।'' କାତର ବିନତି ଭାବ ମୁହଁରେ ଫୁଟି ଉଠିଲେ ବି କେହି ମୁହଁ ଫିଟେଇ ଶ୍ରୀଶ୍ରୀ ଠାକୁରଙ୍କୁ ଏକଥା କହି ପାରୁନି। ସେ ଏକ ଅବ୍ୟକ୍ତ ବେଦନାର ଅନୁଭୂତି। ଯାହା ପାଖରେ ଯାହାଥିଲା, ସମସ୍ତେ ବ୍ୟସ୍ତ ହୋଇ ଯଥାସର୍ବସ୍ୱ ଦେବା ପାଇଁ ଛୁଟିଲେ ତାଙ୍କୁ। ଯାହାଙ୍କ ଉପରେ ଠାକୁର ଦୟା କରିଛନ୍ତି– ହଠାତ୍ ଗୁରୁଭାବେ ଭିକ୍ଷା ଚାହିଁଛନ୍ତି ବୁକୁଭରା ବେଦନା ମଝିରେ କେଉଁଠୁ ଯେମିତି ଉଛୁଳି ଉଠୁଛି ଆନନ୍ଦରାଶି ସମସ୍ତଙ୍କ ଅନ୍ତରରୁ ଏପରି ଗୋଟାଏ

ଭାବ ଉଦ୍‌ଗମନ ହେଉଛି— ସେମାନେ ସବୁ କିଛି ବିଲୀନ କରି ଦେବାକୁ ଚାହାନ୍ତି। ନିଜ ପାଖେ ଯାହା ଅଛି ତା ତ ଦେଲେ, ଆହୁରି ଅଧିକ ଦେବାପାଇଁ ଏକ ଅନ୍ୟ ପାଖରେ ଭିକ୍ଷା କରିବାକୁ ଲାଗିଲେ। ମୋ ପାଖେ ଆସି ଯିଏ ଯାହା ଟଙ୍କା ଜମା ଦେଇ ଶ୍ରୀଶ୍ରୀ ଠାକୁରଙ୍କ ପାଦତଳେ ପ୍ରଣାମ କଲେ। ମଣିଷର ଦେବା ଭିତରେ ଯେ ଏତେ ତୃପ୍ତି, ମୁଁ ମୋ ଜୀବନରେ ପ୍ରଥମେ ଦେଖିଲି। ଶ୍ରୀଶ୍ରୀ ଠାକୁର ମୋତେ ଟଙ୍କା ଗଣି ୨୫୦ ଟଙ୍କା ହୋଇଛି କି ନାହିଁ ଦେଖିବାକୁ କହିଲେ। ମୁଁ ଗଣି ଦେଖିଲି, ଠିକ୍ ଅଛି। ଏଇ ଟଙ୍କା ପ୍ୟାରିଦା'ଙ୍କୁ ଦେବାକୁ କହିଲେ ଓ ତାପରେ ଶରତ୍‌ଦା'ଙ୍କୁ ଡକାଇ ପଠାଇଲେ। ସେତେବେଳେକୁ ସାଢ଼େ ବାରଟା— ଶରତ୍‌ଦା' ଗାଧୋଉ ଥିଲେ। ଶ୍ରୀଶ୍ରୀ ଠାକୁରଙ୍କ ଡାକଶୁଣି ଓଦା ଲୁଗାରେ ହାତଯୋଡ଼ି ଆସି ପହଞ୍ଚିଲେ କାଳ ବିଳମ୍ବ ନକରି। ଶ୍ରୀଶ୍ରୀ ଠାକୁର ପ୍ୟାରିଦା'ଙ୍କୁ କହିଲେ— ୨୫୦ ଟଙ୍କା ଶରତ୍‌ଦା'ଙ୍କୁ ଦେବାକୁ। ତା'ପରେ ଠାକୁର ଶରତ୍‌ଦା'ଙ୍କୁ କହିଲେ— ''ଯେଉଁ ପିଲାଟି ଆପଣଙ୍କ ପାଖରେ ଥାଏ, ତାର ବାପା ମା' ଆସିଛନ୍ତି। ଏଇ ଟଙ୍କାରେ ସେମାନଙ୍କର ରହିବା ଓ ଖାଇବାର ସୁବ୍ୟବସ୍ଥା କରିବେ। ପୁଅ ଧର୍ମ କରିବ, ବାପ, ମା' ଖାଇବାକୁ ପାଇବେନି, ଏ କିଭଳି କଥା? ତା ଛଡ଼ା, ସେ ଆପଣଙ୍କ ପାଖରେ ରହେ। ତାକୁ ଏପରି ଗଢ଼ି ତୋଳନ୍ତୁ ଯେପରି ସେ ସବୁ ଦିଗରୁ ସାମର୍ଥବାନ ହୋଇ ଉଠିବ ଏବଂ ତାହା ଯେତେଦିନ ହୋଇ ନ ଉଠିଛି ସେତେଦିନ ସବୁ ଦିଗରୁ ଆପଣଙ୍କୁ ଦେଖିବାକୁ ହେବ।'' ଶରତ୍‌ଦା' ଆର୍ଦ୍ରବସନରେ ବେଦନାହତ ହୋଇ ଶ୍ରୀଶ୍ରୀ ଠାକୁର ଚରଣରେ ଲୋଟି ପଡ଼ିଲେ— ଅବ୍ୟକ୍ତ ଭାଷାରେ ବୁଝାଇ ଦେଲେ ଯେପରି— ହେ ମାଲିକ, ହେ ଦୟାଳ, ଏଇଥିପାଇଁ ତୁମ୍ଭଙ୍କୁ ଆଚାର୍ଯ୍ୟ ବୋଲି ଗ୍ରହଣ କରିଛି। ଗୁରୁ ବୋଲି ତମ ପାଦ ତଳେ ନିଜକୁ ଲୁଟାଇ ଦେଇ ଧନ୍ୟ ହୋଇଛି। ତମେ ସବୁ ନିଜେ କରି ଦେଖାଓ ବୋଲି ଆମେ ନକରି ରହି ପାରୁନା। ଏହାକୁ କୁହାଯାଏ ଆଚରଣଶୀଳ ଆଚାର୍ଯ୍ୟ। ପୂର୍ବୋକ୍ତ ଭାଇକୁ ଡାକି ଶ୍ରୀଶ୍ରୀ ଠାକୁର କହିଲେ— ଯାଅ, ଶରତ୍‌ଦା' ସବୁ ବ୍ୟବସ୍ଥା ବର୍ତ୍ତମାନ କରିଦେବେ। ବାପାମା'ଙ୍କୁ ଭଲ କରି ଦେଖିବ, ତାଙ୍କର ଯେପରି କିଛି କଷ୍ଟ ନ ହୁଏ ଏବଂ ନିଜେ ବାପା, ମା'ଙ୍କ ପାଇଁ ସବୁ କରିବାର ବୁଦ୍ଧି ରଖିବ। ଯେତେବେଳେ କୌଣସି ଅସୁବିଧା ହେବ ମୋତେ ଆସି କହିବ।'' ତାପରେ ଠାକୁର ତୃପ୍ତିର ହସ ହସି ସମସ୍ତଙ୍କୁ ଅନୁମତି ମାଗିଲେ ଯିବି ଯିବି?

ଏଥର ଗାଧୋଇ ଯିବି? ସମସ୍ତେ ସମବେତ ଭାବରେ କହି ଉଠିଲେ— ହଁ, ହଁ, ନିଶ୍ଚୟ ନିଶ୍ଚୟ। ତାପରେ କଳା ରଙ୍ଗର ଚଟି ପାଦରେ ଦେଇ ଝୁଲି ଝୁଲି ଗାଧୁଆ ଘରକୁ ଗଲେ। ଯେତେବେଳେ ଭୋଗରେ ବସିଲେ ସେତେବେଳକୁ ସମୟ ସାଢ଼େ ଗୋଟାଏ। ଗୋଟାଏ କଥା ମୁଁ ଲକ୍ଷ୍ୟ କରୁଥିଲି— ଶ୍ରୀଶ୍ରୀ ଠାକୁର ଯାହା କରୁଥିଲେ ତା ଯେପରି ନିଜ ବାପା, ମା'ଙ୍କ ପାଇଁ କରୁଥିଲେ। କୌଣସି ଠାରେ ଦାନର ଗର୍ବ ନାହିଁ— ଅର୍ଥଦାନ, ଧର୍ମଦାନ, ବା ଜ୍ଞାନଦାନ ହେଉ। ଶିକ୍ଷକ ସେ ଶିଖେଇ ଯାନ୍ତି। କିନ୍ତୁ ଛାତ୍ର ଜାଣେନା କେତେବେଳେ କିଭଳି ସେ ସବୁ ସଜେଇ ଦେଇ ଯାଆନ୍ତି।

ଆଉ ଦିନେ ଶ୍ରୀଶ୍ରୀ ଠାକୁରଙ୍କ ପାଖେ ବସିଛି। ସକାଳ ଆଠଟା, ଜଣେ ମା' ବୟସ ବାଇଶି ତେଇଶି ହେବ— ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଆସି କାନ୍ଦି କାନ୍ଦି ଲୋଟି ପଡ଼ିଲା। ଠାକୁର, ଠାକୁର ମୋତେ ରକ୍ଷା କରନ୍ତୁ। ମୁଁ ଆଉ ସହି ପାରୁ ନାହିଁ। ଶ୍ରୀଶ୍ରୀ ଠାକୁର ଧୀର ଭାବରେ ଜିଜ୍ଞାସା କଲେ, ତୋର କ'ଣ ହୋଇଛି? ମା'ଟି କହିଲା— ମୁଁ ଶାଶୁ ଘରେ ରହିପାରୁନି। ସେମାନେ ମୋ ଉପରେ ଅତ୍ୟାଚାର କରୁଛନ୍ତି। ମୋ ଶାଶୁ ମୋତେ ଧରି ମାଡ଼ ଦିଅନ୍ତି, ମୋ ସ୍ୱାମୀ ମାତୃଭକ୍ତ, ସେ ମା'ଙ୍କୁ କିଛି କହନ୍ତି ନାହିଁ। ଶ୍ୱଶୁର ବି କୌଣସି ପ୍ରତିବାଦ କରନ୍ତି ନାହିଁ। କ୍ରମାଗତ ମାଡ଼, ଲାଞ୍ଛନା, ଗଞ୍ଜଣା ସହି ନପାରି ଆତ୍ମହତ୍ୟା କରିବା ପୂର୍ବରୁ ବାବା! ମୁଁ ଆପଣଙ୍କ ପାଖକୁ ଆସିଛି। ଆପଣ ଭଗବାନ, ଆପଣ ମୋତେ ରକ୍ଷା କରନ୍ତୁ।

ଶ୍ରୀଶ୍ରୀ ଠାକୁର ସ୍ନେହ ବିଗଳିତ କଣ୍ଠରେ କହି ଉଠିଲେ— କାନ୍ଦନା ମା', ମୁଁ ତ ଅଛି, ଭୟ କ'ଣ? ମା'ଟି କହିଲା— ଠାକୁର ମୁଁ ଏଠୁ ଫେରିଯିବି ନାହିଁ, ଚିରଦିନ ଆପଣଙ୍କ ପାଖରେ ରହିବି। ବାପ ଘରକୁ ଗଲେ ସେମାନେ ପୁଣି ଶାଶୁ ଘରକୁ ପଠାଇଦେବେ। ଶ୍ରୀଶ୍ରୀ ଠାକୁର କହିଲେ ବେଶ୍ ତ ଭଲ କଥା। ଏଇଟା ତ ତୋର ବାପର ଘର, ତୋର ଯିବାକୁ ଇଚ୍ଛା ନହେଲେ ଯିବୁ ନାହିଁ। ତୁ କ'ଣ ଭାସିଯାଉଛୁ? ଯା, ଦୁଃଖ କରନା। ଗାଡ଼ିରେ ଆସିଛୁ— ରାତିରେ ନିଦ ହୋଇନି। ଗାଧୋଇ, ପୂଜାକରି, ଖାଇପିଇ ଯାଇ ବିଶ୍ରାମ କର। ଯିବାବେଳେ ସେଇ ମା'ଟି ବାରମ୍ବାର ଶ୍ରୀଶ୍ରୀ ଠାକୁରଙ୍କୁ ସ୍ମରଣ କରାଇ ଦେଇଗଲା—ମୁଁ କିନ୍ତୁ ଏଇଠି ଚିରଦିନ ରହିବି।

ସମସ୍ତ ଦିନ କଟିଗଲା। ରାତି ବରାଟା। ଶ୍ରୀଶ୍ରୀ ଠାକୁର ଅର୍ଦ୍ଧଶୁଆ ଅବସ୍ଥାରେ ଗୋଲାତାମ୍ବୁରେ ଅଛନ୍ତି, ମୁଁ ମନ ଖୁସିରେ କଥାବାର୍ତ୍ତା ହେଉଛି। ସେ ବି କେତେ କଥା କହୁଛନ୍ତି। ହଠାତ୍ ଶ୍ରୀଶ୍ରୀ ଠାକୁର କହି ଉଠିଲେ, ସୁଶୀଲ୍! ସକାଳେ ଜଣେ ମା' ଆସି ମୋ ସାଙ୍ଗେ କଥାବାର୍ତ୍ତା ହେଉଥିଲା। ବହୁ ଦୁଃଖରେ ଶାଶୁ ଘରୁ ଚାଲି ଆସିଛି, ତମେ ଦେଖିଆସି, ସେ ମା'ଟି କେଉଁଠି ଅଛି। ତା'ର ଶୋଇବାର କି ବ୍ୟବସ୍ଥା ହୋଇଛି। ମୁଁ ମନେ ମନେ ଭାବିଲି, ଆଶ୍ରମରେ ଏମିତି ଆନ୍ଦାଜରେ କେଉଁଠି ଖୋଜିବି? ଏଣେ ଡେରି ହେଲେ ଶ୍ରୀଶ୍ରୀ ଠାକୁର ଖବରକୁ ଚାହିଁ ବସି ରହିବେ। ଏହି ସମୟରେ ଶ୍ରୀଶ୍ରୀ ଠାକୁର କହିଲେ, ବରାଲ ବାଂଲାର ଠାକୁର ବାଂଲର ବାରଣ୍ଡାରେ ଦେଖତ ଅଛି କି ନାହିଁ। ସଙ୍ଗେ ସଙ୍ଗେ ଆଉ ଜଣକର ନାଁ କହିଲେ। ଧରାଯାଉ ତା ନାଁ ହରିପଦ, କହିଲେ ଦେଖି ଆସିବ, ହରିପଦ କେଉଁଠି ଅଛି? ଶ୍ରୀଶ୍ରୀ ଠାକୁରଙ୍କ ଇଙ୍ଗିତାନୁଯାୟୀ ଦେଖିଲି—ସକାଳର ସେ ମା'ଟି ବରାଲ ବାଂଲାର ବାରଣ୍ଡାରେ ଉତ୍ତର ପଟରେ ନିଘୋଡ଼ ନିଦରେ ଶୋଇଛି। ବୈଶାଖୀ ପବନ ତା' ଦେହରେ ସ୍ନିଗ୍ଧ ହାତ ବୁଲେଇ ଶୁଆଇ ଦେଇଛି। କିନ୍ତୁ ତାପରେ ଲକ୍ଷ୍ୟ କଲି— ଅନ୍ଧାରରେ କିଛି ଦୂରରେ କିଏ ବସିଛି। ପାଖକୁ ଯାଇ ଦେଖିଲି—ଶ୍ରୀଶ୍ରୀ ଠାକୁରଙ୍କ ସେଇ ନିର୍ଦ୍ଦେଶିତ ସେଇ ଲୋକଟି ହରିପଦ। ଆଖିରେ ନିଦ ନାହିଁ, ଚୁପ୍ କରି ବସି ରହିଛି। ନିସ୍ତବ୍ଧ ରାତ୍ରି— ଏକା ବାଇଶବର୍ଷର ଅଭିଭାବକ ହୀନା ନାରୀ। ଶ୍ରୀଶ୍ରୀ ଠାକୁରଙ୍କ ଆଶ୍ରୟରେ ନିଶ୍ଚିନ୍ତ ମନରେ ଶୋଇଛି। ଦେହର ଅଙ୍ଗାଭରଣ ଅସ୍ତବ୍ୟସ୍ତ ହୋଇ ପଡ଼ିଛି। ଆଉ ତାର କିଛି ଦୂରେ ୩୫ ବର୍ଷର ଜଣେ ଯୁବକ ପୈଶାଚିକ। କୁଟୀଳ ଦୃଷ୍ଟି ନେଇ ଅପେକ୍ଷା କରିଛି କ୍ଷୁଧିତ ବ୍ୟାଘ୍ର ପରି। ବିସ୍ମୟରେ ମୁଁ ହତବାକ୍ ହୋଇଗଲି। ମୁଁ ଆସି ଶ୍ରୀଶ୍ରୀ ଠାକୁରଙ୍କୁ ସମସ୍ତ ଘଟଣା ବିସ୍ତୃତ ଭାବେ କହିଲି। ଶ୍ରୀଶ୍ରୀ ଠାକୁର ସବୁ ଶୁଣି କହିଲେ, ତୋର ବଡ଼ମା'ଙ୍କୁ ନିଦରୁ ଉଠେଇ କହିବୁ— ଏଇ ମା'ଟିକୁ ଯେପରି ତାଙ୍କ ଘରକୁ ନେଇ ଶୁଆଇବେ ଏବଂ ତୁ ନିଜେ ତାକୁ ବଡ଼ମା'ଙ୍କ ଘରେ ଛାଡ଼ି ଫେରି ଆସିବୁ। ମୁଁ ଯାଇ ବଡ଼ମା'ଙ୍କୁ ଠାକୁରଙ୍କ ନିର୍ଦ୍ଦେଶ କହିଲି ଓ ବଡ଼ମା' ସଙ୍ଗେ ସଙ୍ଗେ ମା'ଟିକୁ ନେଇ ତାଙ୍କ ଘରେ ଶୋଇବାର ବ୍ୟବସ୍ଥା କରିଦେଲେ। ଶ୍ରୀଶ୍ରୀ ଠାକୁରଙ୍କୁ ଆସି ପଚାରିଲି— ଠାକୁର, ଗୋଟାଏ ଅସଚ୍ଚରିତ୍ର ପଶୁଭାବର ମଣିଷକୁ ଆଶ୍ରମରେ ଆଶ୍ରୟ ଦେବାର ସାର୍ଥକତା

କ'ଣ ? ଶ୍ରୀଶ୍ରୀ ଠାକୁର କହିଲେ— କେଉଁଠିକୁ ତଡ଼ିଦେବି ? ଏ ଚରିତ୍ର ନେଇ ସେ ଯେଉଁଠିକି ଯିବ ତାର ତ କ୍ଷତି ହେବ। ଯେଉଁ ସମାଜରେ ରହିବ ସେ ସମାଜର କ୍ଷତି ହେବ। ତେଣୁ ମୋ ପାଖରେ ରଖିଛି। ପରମପିତାଙ୍କ ଦୟାରୁ ଅନେକ ଭଲ ହୋଇଗଲାଣି। ଥରେ ଯେତେବେଳେ ଭଲ ବାଟରେ ପାଦ ଦେଲାଣି, ସେତେବେଳେ ଆଉ ଚିନ୍ତା କରିବାର କିଛି ନାହିଁ।'' ବିସ୍ମିତ ନୟନରେ ଚାହିଁ ରହିଲି— ଅନ୍ତରରୁ କହି ଉଠିଲି କିଏ ତୁମେ ? ସନ୍ତାନର ଦୋଷ ଧରନା, ଯେଉଁଠି ଯେ ଅବସ୍ଥାରେ ଥିଲେ ବି ତାଙ୍କୁ ସେଇଠୁ ଉର୍ଦ୍ଧ୍ୱପଥକୁ ଆଗେଇ ନେଇ ଚାଲିଛ, ତୁମର ଜାଗ୍ରତ ଦୃଷ୍ଟି ସର୍ବଦା ସନ୍ତାନ ପ୍ରତି ଅଛି। ସବୁ ଜାଣି ବି ଅଜଣା ପରି ରୁହ। ଏଇ ଚରିତ୍ରହୀନ ଲୋକଟି ଜାଣି ବି ପାରିଲା ନାହିଁ ଯେ ତମେ ତାର ସବୁକଥା ଜାଣ। ତା'ବୋଲି ଅବଶ୍ୟ ପ୍ରଶୟ ଦେଉନାହଁ, ଯେଉଁଠି ଯାହା କଲେ ସମସ୍ତଙ୍କର ଶୁଭ ବୁଦ୍ଧି ଫେରି ଆସିବ ଓ ଶୁଭ ପଥରେ ପାଦ ଆଗେଇବ, ତମେ ତାହା କରୁଛ। ଶାସନ ଅଛି, କିନ୍ତୁ ସେଥିରେ ଜ୍ୱାଳା ନାହିଁ, ଦୁଃଖ ନାହିଁ। ତେଣୁ ତୁମ ଶାସନର ଶାସିତ ହେବାକୁ ସମସ୍ତେ ଚାହାଁନ୍ତି।

ଏ ଘଟଣା ଏଇଠି ଇତି ନୁହଁ। ଏଇ ମା'ଟି ତା' ପରଦିନ ଶାନ୍ତ ଭାବେ ଆସି ଠାକୁରଙ୍କୁ ପଚାରିଲା— ଠାକୁର, ମୁଁ କ'ଣ କରିବି ? ଆପଣ ଯାହା କହିବେ ମୁଁ ତାହା କରିବି, କେବଳ ଶାଶୁଘରକୁ ଫେରି ଯିବିନି। ଶ୍ରୀ ଶ୍ରୀ ଠାକୁର କହିଲେ— 'ତୁ ଏଇଠି ରହ, ତୋ ବଡ଼ମା'ଆଙ୍କ ପାଖରେ, ତେବେ ଗୋଟାଏ କଥା ହେଲା— ତୋତେ ତୋ ଶାଶୁ ଘରୁ ତଡ଼ି ଦେଇଛନ୍ତି, ପତିତ୍ୟାଗ କରିଛନ୍ତି, ଏକଥା ଭାବିଲେ ମୋତେ କିଏ ତଡ଼ି ଦେଲା ପରି ମନେ ହୁଏ। ତୁ ମୋ ଝିଅ, ତତେ ପୁଣି ତଡ଼ିଦେବେ ?' ମାଆଟି କହିଲା— ତା' ହେଲେ ମୁଁ କ'ଣ କଲେ ଆପଣଙ୍କର ଏ କଷ୍ଟ ଦୂର ହେବ ? ଶ୍ରୀଶ୍ରୀ ଠାକୁର କହିଲେ— 'ମୋର ଇଚ୍ଛା ହୁଏ ତୁ ଶାଶୁ ଘରକୁ ଫେରିଯା। ତୁ ମାଆ— ପିଲାମାନଙ୍କୁ ଛାଡ଼ି ଦେଇ ଆସିଛୁ, ମନରେ କେତେ କଷ୍ଟ ହେଉଛି, ତା'ପରେ ତୁ ଶାଶୁଘରୁ ଚାଲି ଆସିବାରୁ ସେଠା ଲୋକେ ଭାବୁଛନ୍ତି କଣ୍ଟା ଗଲା, ଭଲ ହେଲା। ଏଥର ଫେରିଯାଇ ସେମାନଙ୍କୁ ଯଦି ଖୁବ୍ ସେବା କରିପାରୁ, ଅବଶ୍ୟ ତା' ଖୁବ୍ କଠିନ କାମ— ତା' ଛଡ଼ା, ସେମାନେ ତତେ ଅବଶ୍ୟ ଖୁବ୍ ଗାଳିଦେବେ, ଏପରିକି ମାଡ଼ ବି ଦେବେ। ତଥାପି ତୁ ଶାଶୁ,

ଶ୍ୱଶୁର, ସ୍ୱାମୀର ସେବା କରିବୁ, ପିଲାମାନଙ୍କର ଯତ୍ନ ନେବୁ— ମୁହଁ ବୁଜି ପାରିବୁ ମାଆ ? ମୋ ପାଇଁ, ଏଇ ବୁଢ଼ା ବାପା ପାଇଁ, ସହି ପାରିବୁ ?' ମାଆଟି କହିଲା— ହଁ ପାରିବି, ନିଶ୍ଚୟ ପାରିବି। ବାବା, ଆପଣ କହିଲେ ମୁଁ ସବୁ ପାରିବି। ଶ୍ରୀଶ୍ରୀ ଠାକୁର କହିଲେ 'ତା ହେଲେ ସେଇ କଥା କର। ଘରକୁ ପୁଣି ଫେରିଯା। ତୋ ଉପରେ ଅତ୍ୟାଚାର କରିବେ। ଯେତେବେଳେ ଶାଶୁ, ଶ୍ୱଶୁର ଦେଖିବେ ଯେ ତୁ ମୁହଁ ବୁଜି ସହ୍ୟ କରୁଛୁ, ପ୍ରଥମେ ପ୍ରଥମେ ସନ୍ଦେହ କରିବେ। ଆହୁରି ବେଶୀ ଅତ୍ୟାଚାର କରିବେ। ତାହା ଯେତେବେଳେ ସହ୍ୟ କରିବୁ, ସେତେବେଳେ ଦେଖିବୁ, ସମସ୍ତେ ତୋ ଛଡ଼ା ଚଳିପାରୁ ନାହାନ୍ତି। ଏଇ ଶାଶୁ, ଶ୍ୱଶୁର, ସ୍ୱାମୀ— ସମସ୍ତେ ତୋ ଛଡ଼ା ପାଦେ ବି ଚଳିପାରିବେ ନାହିଁ। ସେତିକିବେଳେ ଏଠିକି ଚାଲି ଆସିବୁ, ଯେତେବେଳେ ତୋ ପାଇଁ ସମସ୍ତେ କାନ୍ଦୁ ଥିବେ। ବିତାଡ଼ିତ ହୋଇ ନୁହେଁ, ସେତେବେଳେ ଆସିବୁ ରାଜରାଣୀ ପରି। ଏ ଘର ତୋ ପାଇଁ ସବୁବେଳେ ଖୋଲା। ଏ ଭିତରେ ଯଦି ସହ୍ୟ କରି ନ ପାରିବୁ, ତେବେ ଚାଲି ଆସିବୁ। ମୁଁ ତ ଅଛି।'

ମାଆଟି ଶ୍ରୀ ଶ୍ରୀ ଠାକୁରଙ୍କ ଅନୁମତି ନେଇ ସେଇ ଦିନ ଚାଲିଗଲା। କେତେ ମାସ ପରର ଘଟଣା, ସେ ଦିନ ବି ମୁଁ ଶ୍ରୀଶ୍ରୀ ଠାକୁରଙ୍କ ପାଖେ ବସିଛି। ଶ୍ରୀଶ୍ରୀ ଠାକୁରଙ୍କ ପାଖେ ଆସି ଗୋଟାଏ ମା' ପ୍ରଣାମ କଲା। ପ୍ରଥମେ ମୁଁ ଚିହ୍ନି ପାରିଲି ନାହିଁ। ପରେ ଦେଖିଲି ସେହି ମା'ଟି— ଦୁଇଜଣ ବୃଦ୍ଧ, ବୃଦ୍ଧା, ଜଣେ ଯୁବକ ଓ ତିନୋଟି ଶିଶୁ। ମାଆଟିକୁ ଦେଖି ଠାକୁର କହିଲେ, ଆସିଲୁ। ମା'ଟି ଆନନ୍ଦରେ କହିଲା— ହଁ ବାବା, ଆସିଲି। ସଙ୍ଗରେ ଶାଶୁ, ଶ୍ୱଶୁର, ସ୍ୱାମୀ ଓ ଛୁଆପିଲା ବି ଆସିଛନ୍ତି। ଠାକୁର ସମସ୍ତଙ୍କୁ ଚାହିଁଲେ ଓ ବିଶ୍ରାମ କରିବାର ବ୍ୟବସ୍ଥା କରିବାକୁ କହିଲେ। କିଛି ସମୟ ପରେ ମା'ଟି ଏକା ଫେରିଆସି କହିଲା, ଠାକୁର ଆପଣ ଯାହା କହିଥିଲେ ସବୁ ଫଳିଛି ! ଆପଣଙ୍କ ଏଠୁ ଫେରିଗଲା ପରେ ଶାଶୁ ମୋ ଉପରେ ଖୁବ୍ ଅତ୍ୟାଚାର ଆରମ୍ଭ କଲେ, କିନ୍ତୁ କ'ଣ ହେଲା ଯେ, ତାଙ୍କର କୌଣସି କଥାରେ ମୋର ରାଗ ହୁଏନି। କେତେବେଳେ କେତେବେଳେ କାଠ ଫାଳିଆରେ ମାଡ଼ ଦିଅନ୍ତି। ଆଶ୍ଚର୍ଯ୍ୟର କଥା, ମାଡ଼ବି ଜାଣେ ନାହିଁ। କେବଳ ଆପଣଙ୍କ କଥା ମନେ ପଡ଼େ। ଖାଲି ମନେ ହୁଏ, ଏମାନେ ମୋର ନିଜର ଲୋକ ଯାହା କରିବେ କରନ୍ତୁ, ମୁଁ ନ ସହିଲେ ସହିବ କିଏ ? କେତେଦିନ ପରେ

ଶାଶୁ, ଶ୍ୱଶୁର ପ୍ରତି କାମରେ ମୋତେ ଡାକିବାକୁ ଲାଗିଲେ। ତାପରେ ଏପରି ହେଲା, ମୁଁ ନିଜ ହାତରେ ତାଙ୍କ ପାଇଁ କିଛି କରି ନଦେଲେ ସେମାନେ ତୃପ୍ତି ପାଆନ୍ତି ନାହିଁ। ଦିନକ ପାଇଁ ବି ବାହାରକୁ ଛାଡ଼ି ଦିଅନ୍ତି ନାହିଁ। ଆଉ ମୋ ସ୍ୱାମୀ ବାପା ମାଆଙ୍କର ମୋ ପ୍ରତି ସ୍ନେହ ଦେଖି ଖୁବ୍ ଖୁସି ହେଲେ। ତାପରେ କହିଲେ, ଠାକୁର, ମୋ ପ୍ରତି ଆପଣଙ୍କର କି ଅସୀମ ଦୟା। ଶ୍ରୀଶ୍ରୀ ଠାକୁର କହିଲେ, ସେ ସବୁତ ହେଲା, ଏଥର ଏଠି ରହିବୁ ତ? ଆଉ ଯେତେଦିନ ସେମାନେ ଏଠି ରହିଛନ୍ତି, ସେମାନଙ୍କର ଯେପରି କିଛି ଅସୁବିଧା ନହୁଏ, ତା ପ୍ରତି ଦୃଷ୍ଟି ରଖ। ମା'ଟି କହିଲା, ବାବା! ମୋର ତ ଏଠି ରହିବାକୁ ଖୁବ୍ ଇଚ୍ଛା, କିନ୍ତୁ ଶାଶୁ ଶ୍ୱଶୁର ସ୍ୱାମୀ ଏମାନେ ଛାଡ଼ିଲେ ତ ରହିବି? ମୁଁ ସେମାନଙ୍କୁ ନ ଦେଖିଲେ କିଏ ଦେଖିବ। ବୁଢ଼ା ହେଲେଣି। ଶ୍ରୀଶ୍ରୀ ଠାକୁର କହିଲେ– ଆଗେ ତାଙ୍କ କଥା ବୁଝ। ଆଉ ସେମାନଙ୍କୁ ବୁଝେଇ ସୁଝେଇ ଯଦି ଏଠି ରହି ପାରିବୁ, ଖୁବ୍ ଭଲ ହେବ। ଉପରବେଳା ମା'ଟି ପୁଣି ଆସିଲା, ସଙ୍ଗରେ ଶାଶୁ, ଶ୍ୱଶୁର ସ୍ୱାମୀ ଓ ସନ୍ତାନଗୁଡ଼ିକ। ତାର ଶାଶୁ, ଶ୍ୱଶୁର ଦୂରରୁ ଠାକୁରଙ୍କୁ ପ୍ରଣାମ କରି କହି ଉଠିଲେ– ଠାକୁର, ଆମ ବୋହୂ ସାକ୍ଷାତ୍ ଲକ୍ଷ୍ମୀ, ସେ ଆମ ଘର ଛାଡ଼ିଲେ ଆମର ଲକ୍ଷ୍ମୀ ଛାଡ଼ିଯିବ। ତା' ଛଡ଼ା ଆମର ଗୋଟିଏ ପୁଅ ଓ ବୋହୂ। ଆଉ ଆମ ସଂସାରର ଏକମାତ୍ର ଅବଲମ୍ବନ ତ ସେ। ବୋହୂର ଇଚ୍ଛା ସେ ଆପଣଙ୍କ ପାଖେ ରହିବ। କିନ୍ତୁ ଆପଣ ଯଦି ଆଦେଶ କରିବେ, ତେବେ ସେ ଆମ ସଂଗେ ନିଶ୍ଚୟ ଯିବ। ଆପଣଙ୍କ କଥା କେବେ ଲଙ୍ଘନ କରିବ ନାହିଁ। ତା' ଛଡ଼ା ବର୍ତ୍ତମାନ ସେ ଆଉ ଆମର ବୋହୂ ନୁହେଁ ଝିଅ, ଶ୍ରୀଶ୍ରୀ ଠାକୁର ମା'ଟିକୁ କହିଲେ କି ରେ, ତୁ କ'ଣ କହୁଛୁ? ଯିବୁ ନା ରହିବୁ? ମା'ଟି ମୁହଁ ପୋତି ଲଜ୍ଜା ନମ୍ର ଭାବେ କହିଲା– ମୋତେ ତ ଏଠି ରହିବାକୁ ଭଲ ଲାଗେ। ମନ ସବୁବେଳେ ଚାହୁଁଛି। କିନ୍ତୁ ପୁଣି ଭାବୁଛି– ମୁଁ ନ ରହିଲେ ଏମାନଙ୍କର କଷ୍ଟ ହେବ। ମା' (ଶାଶୁ) ତ ମୋତେ ନ ଦେଖିଲେ ମୁହୂର୍ତ୍ତକେ ଅନ୍ଧାର ଦେଖନ୍ତି। ହଠାତ୍ ଠାକୁର ଗମ୍ଭୀର ହୋଇ କହିଲେ– ତାହେଲେ ଯା ମା', ତାହେଲେ ଯା'। ବାପର ଇଚ୍ଛା ଥିଲେ ବି ଝିଅକୁ ଧରି ରଖି ପାରେନା। ତୁ ଯେ ଜନନୀ, ଧରିତ୍ରୀ– ତୁ ଧରି ନ ରଖିଲେ ଏ ସଂସାର ରହିବନି। କେବେ ପୁଣି ସୁବିଧା ପାଇଲେ ଆସିବୁ, ଆଉ ସମସ୍ତଙ୍କୁ ଧରି

ଆସିବୁ। ଶ୍ରୀଶ୍ରୀ ଠାକୁରଙ୍କ ଆଖି ଛଳଛଳ ହୋଇଗଲା। ମା'ଟିର ଶାଶୁ ଶ୍ୱଶୁର ଶ୍ରୀଶ୍ରୀ ଠାକୁରଙ୍କ ପାଦତଳେ ଲୋଟି ପଡ଼ି କହିଲେ– ଠାକୁର, ଆମେ ମହାପାପ କରିଛୁ। ଏ ଲକ୍ଷ୍ମୀ ଉପରେ ବହୁ ଅତ୍ୟାଚାର କରିଛୁ। ଏ ପାପର କ'ଣ ପ୍ରାୟଶ୍ଚିତ ଅଛି? ଶ୍ରୀଶ୍ରୀ ଠାକୁର କହିଲେ–ପାପ ଆଉ କ'ଣ? ତମ ଝିଅକୁ ତମେ ଶାସନ କରିଛ.....ଏଥିରେ କ'ଣ ପାପ ହୁଏ? ପୁଅକୁ ମାଡ଼ ଦେଇ ମା' ଶେଷରେ କାନ୍ଦେ ତମେ ତ ତା ପାଇଁ କାନ୍ଦୁଛ? ଶାଶୁ, ଶ୍ୱଶୁର ସମସ୍ତେ ଠାକୁରଙ୍କ ପାଖରେ ପ୍ରାର୍ଥନା କରି କହିଲେ, ଠାକୁର! ଆମକୁ ଦୀକ୍ଷା ଦେଇ ଆମ ଜୀବନ ଧନ୍ୟ କରନ୍ତୁ ଆମ୍ଭର ଅଜ୍ଞାନତା ଦୂରେଇ ଯାଉ। ଆପଣଙ୍କ କୃପା ଆମ ଉପରେ ବର୍ଷିତ ହେଉ। ଶ୍ରୀଶ୍ରୀ ଠାକୁର କହିଲେ– ପରମପିତାଙ୍କର କୃପା ସର୍ବାବସ୍ଥାରେ ଅଛି, କେବଳ ତୁମେ ତା କରି ପାରିଲେଇ ହେଲା! ଆଉ ମୁଁ ବୁଝେ, କୃପା ଅର୍ଥ କରି ପାଇବା, ତାପରେ ଶ୍ରୀଶ୍ରୀ ଠାକୁର ଦୀକ୍ଷା ଦେବାର ଅନୁମତି ଦେଲେ।

**"TOWARDS BEAUTY AND PROSPERITY"**

**UNI-CENTRAL ATTACHMENT,**
**INTENSITY AND CONTINUITY,**
**THESE IN ONE–**
**LEAD THE LIFE**
**TOWARDS BEAUTY,**
**SUCCESS AND PROSPERITY.**

**SREE SREE THAKUR**

## ॥ ଷୋହଳ ॥

୧୯୫୪ ସାଲ, ଏକ ଶ୍ରାବଣ ସନ୍ଧ୍ୟାରେ ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ଯାଇ ବସିଲି। ଠାକୁର ବରାଲ ବାଂଲାରେ ଜେସ୍‌ମିନ୍ ଗଛ ପାଖକୁ ଗୋଟିଏ ତମ୍ବୁ ଭିତରେ ବସିଥିଲେ ପୂର୍ବଦିଗକୁ ମୁହଁ କରି। ଭିତରେ ମାୟା ମାସୀମା' ଓ ଅନ୍ୟାନ୍ୟ ଭକ୍ତମାନେ ଉପସ୍ଥିତ ରହିଛନ୍ତି। ଖଟ ଉପରେ ଶ୍ରୀଶ୍ରୀ ଠାକୁର ଅର୍ଦ୍ଧଶାୟିତ ଅବସ୍ଥାରେ ରହିଛନ୍ତି, ବାହାରେ ଅବିଶ୍ରାନ୍ତ ବୃଷ୍ଟି ବର୍ଷି ଚାଲିଛି। ମୁଁ ତମ୍ବୁ ଭିତରେ ବସି ଶ୍ରୀଶ୍ରୀ ଠାକୁରଙ୍କୁ ଅନାଇ ଭାବୁଛି :- ଠାକୁର! ତୁମେ କି କ'ଣ ସେହି ଭଗବାନ, ଯେ ଯୁଗେ ଯୁଗେ ଆସୁଛ, ମଂନୁଷ୍ୟକୁ ତ୍ରାଣ କରିବା ପାଇଁ? କିପରି ଜାଣିବି ଯେ ତୁମେ ସେହି ଭଗବାନ? ଏପରି ଦେଖି ତ କିଛି ବୁଝି ହେଉ ନାହିଁ? ସାଧାରଣ ମନୁଷ୍ୟ ପରି ବସିଛ। ଏପରି ବସି ବସି ଭାବୁଛି, ମନେ ମନେ ନାମ କରି ଚାଲିଛି। ହଠାତ୍ ଅନ୍ଧକାରାଚ୍ଛନ୍ନ ତମ୍ବୁ ଆଲୋକରେ ଉଦ୍‌ଭାସିତ ହୋଇ ଉଠିଲା। ମୋର ମନେ ହେଲା ଯେପରି ଶ୍ରୀଶ୍ରୀ ଠାକୁରଙ୍କ ଦେହରୁ ଆଲୋକ ବିଚ୍ଛୁରିତ ହୋଇ ସମସ୍ତ ସ୍ଥାନକୁ ସ୍ୱର୍ଣ୍ଣମୟ ଆଭାରେ ଆଲୋକିତ କରି ପକାଇଲା। ସେହି ଆଲୋକରେ ମୁଁ ଦେଖିଲି ଯେଉଁଠାରେ ଯେଉଁ ଖଟରେ ଶ୍ରୀଶ୍ରୀ ଠାକୁର ବସିଥିଲେ, ସେଇଠି ଶଙ୍ଖ, ଚକ୍ର, ଗଦା ପଦ୍ମଧାରୀ କେହି ଜଣେ ବସିଛନ୍ତି ହସ ହସ ମୁହଁରେ। ଭଲ କରି ନିରୀକ୍ଷଣ କରି ଦେଖିଲି ଯେ ସେ ଆଉ କେହି ନୁହଁନ୍ତି, ସ୍ୱୟଂ ଶ୍ରୀଶ୍ରୀ ଠାକୁର। ମନର ସବୁ ଦ୍ୱନ୍ଦ୍ୱ ମେଣ୍ଟିଗଲା। ମନେ ହେଲା—ପ୍ରଭୁ! ତୁମେ ଅନ୍ତର୍ଯ୍ୟାମୀ, ମୋର ମନର କଥା ବୁଝି ପାରି ସବୁ କିଛି ନିରସନ କରିଦେଲ ମୁହୂର୍ତ୍ତକେ। ଏହାପରେ ଠାକୁରଙ୍କୁ କହିଲି— ଠାକୁର! ଏ କ'ଣ ଦେଖିଲି, ଏହା କ'ଣ ସତ୍ୟ? ଶ୍ରୀ ଶ୍ରୀ ଠାକୁର କହିଲେ— ଯାହା କିଛି ଦେଖନା କାହିଁକି ତାହା ସେତିକି ବେଳେ ସତ୍ୟ ହୋଇ ଉଠିବ ଯେତେବେଳେ ନିଜେ କରି ବୁଝି ସେମିତି ହୋଇ ଉଠି ପାରିବ। ଦେଖିଲେ କିଛି ଲାଭ ହୁଏ ନାହିଁ, ଯାହା ଦେଖି ଭଲ ଲାଗେ ତାହା ହେବାକୁ ହୁଏ। ଆଉ ହେବାକୁ ହେଲେ କରିବାକୁ ହୁଏ।

ଯେତେବେଳେ ଯାହା କହିବି ତାହ କର, କରି ଦେଖ, ପରମ ପିତା କ'ଣ ନ କରି ପାରନ୍ତି। ମୁଁ କହିଲି– ଠାକୁର! ଆପଣଙ୍କ ଭିତରେ ମୁଁ ଯେ କୃଷ୍ଣଙ୍କୁ ଦେଖିଲି, ତାହା କ'ଣ ସତ୍ୟ ନୁହେଁ? ଠାକୁର କହିଲେ–ହଁ, ସତ୍ୟ। କିନ୍ତୁ କୃଷ୍ଣ, ରାମ, ଈଶ୍ୱର ଯାହା କିଛି କୁହନା କାହିଁକି, ସବୁ କିଛି ତୁମ ଭିତରେ ଅଛି। ଖାଲି ତୁମର କାହିଁକି, ସମସ୍ତଙ୍କର ମଧ୍ୟରେ ଅଛି। ତାଙ୍କୁ ଉପଲବ୍ଧି କରିବାକୁ ହୁଏ, ଦର୍ଶନ କରିବାକୁ ହୁଏ, ଇଷ୍ଟ ନିର୍ଦ୍ଦେଶିତ କର୍ମ ମାଧ୍ୟମରେ ଏବଂ ଏହାକୁ ହିଁ କହନ୍ତି ସାଧନା। ଇଷ୍ଟ–ନିଷ୍ଠା ନଥିଲେ ଏ ସାଧନା କଦାପି ସମ୍ଭବ ହୁଏନା। ତମ୍ବୁରେ ଉପସ୍ଥିତ ସମସ୍ତେ ଆମ୍ଭର କଥୋପକଥନ ଶୁଣୁଥିଲେ। ମୁଁ ତମ୍ବୁରୁ ବାହାରିବା ପରେ ଅନେକେ ପଚାରିଲେ– ଦାଦା! ଠାକୁରଙ୍କ ସହିତ ଆପଣଙ୍କର ଏ ସବୁ କି କଥା ହେଉଥିଲା? କାହିଁ ଆମ୍ଭେ ତ କିଛି ବୁଝି ପାରିଲୁ ନାହିଁ। ମୁଁ ବିସ୍ମିତ ହୋଇ କହିଲି– କାହିଁକି, ଆପଣମାନେ କ'ଣ ଦେଖି ନାହାନ୍ତି କିଛିକ୍ଷଣ ପୂର୍ବେ ଶ୍ରୀଶ୍ରୀ ଠାକୁରଙ୍କ ଦେହ ଠାରୁ ଆଲୋକ ବିଚ୍ଛୁରିତ ହୋଇ ସମସ୍ତ ତମ୍ବୁ କିପରି ଆଲୋକରେ ଉଦ୍‌ଭାସିତ ହୋଇଥିଲା। ସେମାନେ କହିଲେ– କାହିଁ? ନାଁ ତ, ଆମ୍ଭେ କିଛି ଦେଖି ନାହୁଁ। ପୁଣି ମୁଁ ଭାବିବାକୁ ବସିଲି– ଏହା କ'ଣ ମୋର ମନର ଭୁଲ, ମୋ ଆଖି ଯାହା ଦେଖିଲା ତାହା କ'ଣ ଠିକ୍ ନୁହେଁ, କିନ୍ତୁ ତାହା ବା କିପରି ସମ୍ଭବ? ଏହାପରେ ମୁଁ ଯେତେବେଳେ ଠାକୁରଙ୍କୁ ପଚାରିଲି–ଠାକୁର! ଏହା କ'ଣ? ଠାକୁର ସାଥେ ସାଥେ ଏହାର ସତ୍ୟତା ସ୍ୱୀକାର କରି ଯାହା କିଛି କହିଲେ ତାହା ତ ସମସ୍ତେ ଶୁଣିଛନ୍ତି। ସର୍ବୋପରି ମୁଁ ଏହା ବୁଝିଲି– ଯେଉଁଠି ଯାହାକୁ ଯାହା କରିଲେ ଭଲ ହେବ, ଯେଉଁ ପଥରେ ଗଲେ ଭଲ ହେବ, ଶ୍ରୀଶ୍ରୀ ଠାକୁର ପ୍ରତିଟି ଲୋକକୁ ସେହି ପଥରେ ନେଇ ଚାଲିଛନ୍ତି ଯାହାର ଯାହା ବୈଶିଷ୍ଟ୍ୟାନୁଯାୟୀ। ବାସ୍ତବ ଅନୁଭୂତି ମାଧ୍ୟମରେ ଯାହାପାଇଁ ଯାହା କିଛି କରନ୍ତି ସେହି କେବଳ ଏକମାତ୍ର ତାହାର ଦ୍ରଷ୍ଟା ଓ ବୋଧ୍ୟା। ଉପସ୍ଥିତ ହଜାର ହଜାର ଲୋକ ଭିତରେ ଯେ କୌଣସି ଗୋଟିଏ ଲୋକକୁ କିପରି ତାଙ୍କର ବୈଶିଷ୍ଟ୍ୟ ଉପରେ ଟାଣି ତୋଳି ଆଗେଇ ନେଇ ଯାଉଛନ୍ତି, ଆଉ ଥରେ ତାହାର ପ୍ରମାଣ ପାଇ ଦେହ ମୋର ପୁଲକିତ ହୋଇ ଉଠିଲା! ମୂଳ କଥା ଏତିକି ବୁଝିଲି, ଅନ୍ତତଃ ଠାକୁର ଯାହା ମୋତେ

ବୁଝାଇଲେ– ତତ୍ତ୍ୱ କଥାରେ ମତ୍ତ ରହି ଅଲୌକିକ କିଛି ଦେଖିଲେ ଯେ, ଧର୍ମ ଜୀବନରେ ଉନ୍ନତ ଅବସ୍ଥା ଆସିଲା ବା ସାଧକ ଜୀବନରେ କିଛି ଉନ୍ନତି ହେଲା ତାହା ନୁହେଁ, ପରମ୍ ପିତାର ଦୁନିଆରେ ତାଙ୍କ ଇଚ୍ଛା ହେଲେ ସେ ବହୁତ କିଛି କରି ପାରନ୍ତି, ବହୁତ କିଛି ଦେଖାଇ ପାରନ୍ତି। କେତେବେଳେ ହେଲେ ହୁଏତ ତାଙ୍କର ସେହି ଅଲୌକିକ ଲୀଳା କିଛି ଦେଖିବାର ସୌଭାଗ୍ୟ ହୋଇପାରେ, କିନ୍ତୁ ତାହାଦ୍ୱାରା ଆମ୍ଭର ଆଧ୍ୟାତ୍ମିକ ଜୀବନର ବା ଈଶ୍ୱର ପ୍ରାପ୍ତି ପଥର କୌଣସି ସାହାଯ୍ୟ ହୁଏନା। ଏକମାତ୍ର ଯଦି ସେହି ଦେଖିଥିବା ଘଟଣାଗୁଡ଼ିକ ମନ ଭିତରେ କିଛି ବିଶ୍ୱାସ ସ୍ଥାପନ କରେ ତାହାହେଲେ ସାଧନା ପଥରେ ଆଗେଇବାକୁ ସାହାଯ୍ୟ କରେ ମାତ୍ର। କିନ୍ତୁ ସେହି ଦର୍ଶନର ବାସ୍ତବତା ସମ୍ବନ୍ଧରେ ମଧ୍ୟ ଜାଣି ନେବାକୁ ହୁଏ ଆଚାର୍ଯ୍ୟରୂପୀ ଇଷ୍ଟଙ୍କ ପାଖରୁ।

# ।। ସତର ।।

ନବବର୍ଷ ଉତ୍ସବ ସରି ଯାଇଛି। ଭାରତର ବିଭିନ୍ନ ସ୍ଥାନରୁ ଭକ୍ତମଣ୍ଡଳୀ ଆସିଛନ୍ତି ଶ୍ରୀଶ୍ରୀ ଠାକୁରଙ୍କୁ ଦର୍ଶନ କରିବା ପାଇଁ। ଉତ୍ସବାନ୍ତେ ଲୋକ ଚାଲିଯିବା ସତ୍ତ୍ୱେ ପାଞ୍ଚ ସାତ ହଜାର ଲୋକ ରହିଗଲେ। ମାସେ ପରେ ଦେଖାଗଲା ସେହି ଲୋକସଂଖ୍ୟା କମୁନାହିଁ। ସତ୍‌ସଙ୍ଗ୍ କର୍ତ୍ତୃପକ୍ଷ ଚିନ୍ତିତ ହୋଇ ପଡ଼ିଲେ। ମାସ ପରେ ମାସ ଯଦି ଏତେ ଲୋକର ଚାପ ଆନନ୍ଦବଜାର ଉପରେ ପଡ଼ିବ ତାହାହେଲେ ଏତେ ଚାଉଳ, ଡାଲି କୁଆଡୁ ଆସିବ? ଉତ୍ସବରେ ବହୁ ହଜାର ଲୋକର ସମାବେଶ ହୋଇଥିଲା। ସତ୍‌ସଙ୍ଗର କର୍ମୀମାନେ ପ୍ରାୟ ସମସ୍ତେ ଆଶ୍ରମରେ ରହିଛନ୍ତି, ତାଙ୍କ ସାଥିରେ ରହିଛନ୍ତି ବହୁତ ଭକ୍ତ ମଣ୍ଡଳୀ। ଏହିପରି ଦିନେ ଦ୍ୱିପ୍ରହରରେ ଆନନ୍ଦବଜାର ସର୍ବସାଧାରଣଙ୍କର ବିନା ପଇସାରେ ଖାଇବାର ସ୍ଥାନରେ ମୁଁ ପ୍ରସାଦ ପାଇବା ପାଇଁ ଗଲି। ସେତେବେଳେ ଦିନ ସାଢ଼େ ଏଗାରଟା ସମୟରେ ସେଠାରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଜଣେ ଗୁରୁଭ୍ରାତା ଶାଳପତ୍ର ଆଣି ମୋର ସାମ୍ନାରେ ଦେଇଗଲେ। କାଳବିଳମ୍ବ ନକରି ଆନନ୍ଦବଜାରର ପରିବେଷଣକାରୀ ବିପ୍ର ମୋ ପତ୍ରରେ ଭାତ ଏବଂ ଡାଲି ଦେଇଗଲେ। ମୁଁ ଖାଇବାକୁ ଆରମ୍ଭ କରିବି, ଏହି ସମୟରେ ମୋ ପୂର୍ବରୁ ଯେଉଁମାନେ ସେହି ଆନନ୍ଦବଜାରରେ ବସିଥିଲେ ପ୍ରସାଦ ପାଇବା ପାଇଁ, ଲକ୍ଷ୍ୟକଲି ତାଙ୍କର ଭିତରେ କେତେକ ଲୋକ ବସି ରହିଛନ୍ତି। ସାମ୍ନାରେ ଭାତ ଦିଆହୋଇଛି। କେତେକ ଲୋକଙ୍କର ପ୍ରସାଦ ଖାଇବା ସରିଯାଇଛି, କିନ୍ତୁ ସେମାନେ ମଧ୍ୟ ପତ୍ର ଛାଡ଼ି ଉଠୁ ନାହାନ୍ତି।

ହଠାତ୍ ମୋର କିପରି ମନେ ହେଲା କ'ଣ କିଛି ଗୋଟିଏ ଅସ୍ୱାଭାବିକ ପରିସ୍ଥିତ ସୃଷ୍ଟି ହୋଇଛି କି? ପାଖରେ ବସିଥିବା ଗୁରୁଭ୍ରାତାକୁ ପଚାରିଲି– କ'ଣ କଥା? ଆପଣମାନେ ନଖାଇ କାହିଁକି ବସିଛନ୍ତି? ଆଉ ଅନ୍ୟାନ୍ୟ ସମସ୍ତେ ମଧ୍ୟ ଖାଇ ସାରିଛନ୍ତି, କିନ୍ତୁ ଉଠି ଯାଉ ନାହାନ୍ତି କାହିଁକି? ତିନି ଚାରିଜଣ ଏକ ସାଙ୍ଗରେ ମୋତେ କହି ଉଠିଲେ– ଆମ୍ଭେ ଖାଇବା ନାହିଁ। ଆମ୍ଭ ପୂର୍ବରୁ ଯେଉଁମାନେ ଖାଇବାକୁ ବସିଥିଲେ ସେମାନଙ୍କୁ ଥରେ ଛୋଟ ମଗରେ ଭାତ ଦେଇଛନ୍ତି। କିନ୍ତୁ ଆଉ ଥରେ ମାଗିଲା ବେଳେ ଆନନ୍ଦବଜାର

କର୍ତ୍ତୃପକ୍ଷ କହୁଛନ୍ତି— ଆଉ ଭାତ ଦିଆଯିବ ନାହିଁ। ଚାଉଳର ଦାମ ବହୁତ ହୋଇଛି। ମିଳୁ ନାହିଁ। ଯେଉଁ ମଗ୍‌ରେ ଭାତ ଦେବାର ନିର୍ଦ୍ଦେଶ ଦିଆ ହୋଇଛି। ସେଥିରେ ତିନି ଛଟାଙ୍କଠାରୁ ପାଏ ଚାଉଳର ଭାତ ଧରେ। ଦେଓଘରର ଜଳବାୟୁ ଯୋଗୁଁ ହେଉ ବା ଅନ୍ୟ ଯେ କୌଣସି କାରଣରୁ ହେଉ ଆଶ୍ରମକୁ ଗଲେ ଯେ ଯାହା ଖାଆନ୍ତି ହଜମ ହୋଇ ଯାଏ ଏବଂ ପ୍ରଚୁର ଭୋକ ଲଗେ, ଯେଉଁଥିରେ କି ସାଧାରଣତଃ ଦେଖାଯାଏ ପାଏ ଠାରୁ ଦେଢ଼ ପ୍ରାୟ ଭିତରେ ଚାଉଳର ଭାତ ନ ହେଲେ ଜଣକର ପେଟ ଭର୍ତ୍ତି ହୁଏ ନାହିଁ। କିନ୍ତୁ ଆଶ୍ରମ କର୍ତ୍ତୃପକ୍ଷ ଏହି ଦୁର୍ମୂଲ୍ୟ ବଜାରରେ ଚାଉଳ ସଂଗ୍ରହ ହୋଇ ପାରିବ କି ନାହିଁ ସେଥିରେ ଚିନ୍ତିତ। ବଜାରରେ ସେତେବେଳେ ଯଥେଷ୍ଟ ପରିମାଣରେ ଚାଉଳ ନଥାଏ। ତାହାରି ପାଇଁ ପରିମାପିତ— ଅନ୍ନ ପ୍ରସାଦ ଦେବାର ବ୍ୟବସ୍ଥା କରିଛନ୍ତି। କିନ୍ତୁ ଚିରଦିନ ଶ୍ରୀଶ୍ରୀ ଠାକୁରଙ୍କର ଶିଷ୍ୟ ସନ୍ତାନମାନେ ଆନନ୍ଦବଜାରରେ ବସି ଯାହାର ଯେତେ ପ୍ରୟୋଜନ ସେତେ ପରିମାଣ ଭୋଜନ କରି ତୃପ୍ତ ହୋଇଛନ୍ତି।

ଆଜିକାର ଏହି କଣ୍ଟ୍ରୋଲ ବ୍ୟବସ୍ଥା ବା ସୀମିତ ବ୍ୟବସ୍ଥା ତାଙ୍କ ପାଖରେ ଭଲ ଲାଗିଲା ନାହିଁ। ଭାରତର ବହୁ ସ୍ଥାନରୁ ବହୁତ ଲୋକ ଆସିଛନ୍ତି ଏବଂ ସେମାନଙ୍କର ପ୍ରକୃତି ମଧ୍ୟ ବିଭିନ୍ନ। ଏହା ନେଇ କେତେକ ଲୋକ କ୍ଷୋଭ ପ୍ରକାଶ କରୁଛନ୍ତି। ସେମାନଙ୍କ ଭିତରେ କେହି କେହି କହୁଛନ୍ତି— ଆମ୍ଭେ କ'ଣ ଘରେ ଖାଇବାକୁ ପାଉନାହୁଁ? ଆମ୍ଭେ ଠାକୁରଙ୍କ ପାଖକୁ ଆସିଛୁ ତାଙ୍କର ଦର୍ଶନ କରିବାପାଇଁ। ଛୁଆପିଲା ଧରି ଆସି ଭୋକ ରହିବା ସତ୍ତ୍ୱେ ଏହି ଅଧପେଟ ଖାଇବା ପାଇଁ କ'ଣ ଆମେ ଏଠାକୁ ଆସିଥିଲୁ? ପୂର୍ବରୁ ଆମ୍ଭଙ୍କୁ ଏକଥା ଜଣାଇଥିଲେ ଆମ୍ଭେ ଆମ୍ଭ ନିଜ ନିଜର ଖାଇବାର ବ୍ୟବସ୍ଥା କରିନେଇ ଆସିଥାନ୍ତୁ। ଠାକୁର ବାଡ଼ିରେ ଏତେ ଦିନର ନିୟମ ହଠାତ୍ ଭଙ୍ଗ କରି ଖାଇବାକୁ ବସିଥିବା ବେଳେ କହୁଛନ୍ତି— ଆଉ ଭାତ ଦିଆଯିବ ନାହିଁ, କର୍ତ୍ତୃପକ୍ଷର ହୁକୁମ ନାହିଁ। ତେଣୁ ଯେଉଁମାନଙ୍କୁ ଭାତ ଦିଆ ହୋଇଛି ସେମାନେ କହୁଛନ୍ତି— ପୂର୍ବରୁ ଯେଉଁମାନେ ବସିଥିଲେ ଖାଇବାକୁ, ତାଙ୍କୁ ପୁରା ପେଟ ଭାତ ଦିଆଯାଉ, ନହେଲେ ଆମ୍ଭେ ଖାଇବା ନାହିଁ, ଅନ୍ୟ ଦିଗରେ ଆନନ୍ଦବଜାରର ଯେଉଁମାନେ ଦିଆନିଆ କରୁଛନ୍ତି ଏହି ଦ୍ୱିପ୍ରହରରେ କର୍ତ୍ତୃପକ୍ଷଙ୍କ ବିନା ହୁକୁମରେ କିଛି କରି ପାରୁ ନାହାନ୍ତି। ମୁଁ ସମସ୍ତ କଥା ଶୁଣି ମୋତେ ଦେଇଥିବା ପ୍ରସାଦ ଗ୍ରହଣ କରି ପତ୍ର ବାହାରେ ପକାଇ ଦେଇ ଉଠି ଆସିଲି।

ବାହାରେ ଆସି ଦେଖିଲି ବହୁତ ଲୋକ ଜମା ହୋଇଛନ୍ତି। ତାଙ୍କ ଭିତରେ ଦେବେନ୍ଦ୍ରାଦା'( ଶ୍ରୀଯୁକ୍ତ ଦେବେନ୍ଦ୍ର ରାୟ ଚୌଧୁରୀ) ଋତ୍ୱିକ କଲିକତାରେ ରହନ୍ତି, ସେ ସମସ୍ତ ବିକ୍ଷୁବ୍ଧ ଲୋକଙ୍କର ଦାବୀକୁ ସମର୍ଥନ କରି ସମସ୍ତଙ୍କୁ କହୁଛନ୍ତି, ଆମ୍ଭେ ଏ ଅନ୍ୟାୟ ମାନିବା ନାହିଁ। ଦୀର୍ଘ ୨୦ ବର୍ଷ ଠାକୁରଙ୍କ ପାଖରେ ଯିବା ଆସିବା କରୁଛି। ଠାକୁର କେବେହେଲେ ଏପରି କଥା କହି ନାହାନ୍ତି ଯେ ଲୋକଙ୍କୁ ଅଧପେଟ ଖାଇବାକୁ ଦେବୁ। ତେଣୁ ଏହାର ପ୍ରତିକାର ନ ହେଲେ ଆମ୍ଭେ ଖାଇବା ନାହିଁ। ଏଠାରେ ଉପବାସ କରି ରହିବା, ଇତ୍ୟାଦି ଇତ୍ୟାଦି ବହୁତ କଥା। ଦେବେନ୍ଦ୍ରଦା'ର ଏହି କଥା ଦ୍ୱାରା ସମସ୍ତେ ପ୍ରଭାବିତ ହୋଇ ତାଙ୍କୁ ସମର୍ଥନ ଜଣାଉଛନ୍ତି ଏବଂ ଆନନ୍ଦବଜାରରେ ଭାତ ରହିବା ସତ୍ୱେ କେହି ଖାଇବାକୁ ଯାଉ ନାହାନ୍ତି। ଯେଉଁମାନେ ଭାତନେଇ ବସିଥିଲେ ସେମାନେ ଭାତ ଛାଡ଼ି ଉଠି ଆସିଲେ। ଏପରି ପରିସ୍ଥିତି ଦେଖି ମୋର ମନଟି ଖରାପ ହେଲା। କ'ଣ ବା ମୁଁ କରିପାରେ? ଏମାନେ କେହି ମୋର କଥା ଶୁଣି ଖାଇବେ ନାହିଁ, ଆଉ କର୍ତ୍ତୁପକ୍ଷଙ୍କୁ ଯଦି ମୁଁ କିଛି କହିବି ସେମାନେ ମଧ୍ୟ ମୋ କଥା ରଖିବେ ନାହିଁ। ତେଣୁ ଚିନ୍ତିତ ମନରେ ଆସି ଠାକୁରଙ୍କ ପାଖରେ ଉପସ୍ଥିତ ହେଲି। ଠାକୁର ମୋତେ ଦେଖି ପଚାରିଲେ– ଖାଇଛୁ ତ? ପ୍ରତିଦିନ ଏହିପରି ମୋତେ ପଚାରନ୍ତି। ସେଦିନ ମଧ୍ୟ ପଚାରିଲେ। ମୁଁ କହିଲି– ହଁ ଅବିକା ଖାଇ ଆସିଲି। ଶ୍ରୀଶ୍ରୀ ଠାକୁର ଟିକେ ଚୁପ୍ ହୋଇ ରହି କ୍ଷଣିକ ପରେ ପଚାରିଲେ, ଆନନ୍ଦବଜାରରେ କ'ଣ ରୋଷେଇ ହୋଇଛି? ମୁଁ କହିଲି ଡାଲି, ଭାତ। ଠାକୁର କହିଲେ-- ଖୁବ୍ ଭଲ। କିଛିକ୍ଷଣ ଚୁପ୍ ରହି ପଚାରିଲେ, ଆଉ ଖବର କ'ଣ? ମୁଁ ଚିନ୍ତା କରୁଛି ସବୁ କଥା ଠାକୁରଙ୍କୁ କହିବି କି ନାହିଁ, ଆଉ ଠାକୁର ଆଜି କାହିଁକି ବାରମ୍ବାର ପଚାରୁଛନ୍ତି "ଖାଇଛୁ କି ନାହିଁ? କ'ଣ ଦେଇ ଖାଇଲୁ? ଆଉ କ'ଣ ଖବର? ଏହା ଭିତରେ ଅନ୍ୟ କିଛି କାରଣ ଅଛି କି? ଏହା ପରେ ମୁଁ ଶ୍ରୀ ଶ୍ରୀ ଠାକୁରଙ୍କୁ କହିଲି ସବୁ ଖବର ଭଲ କିନ୍ତୁ ଆନନ୍ଦବଜାରରେ ଆଜି ଗୋଟିଏ ଗଣ୍ଡଗୋଳ ଚାଲିଛି।

ଠାକୁର ପଚାରିଲେ– କ'ଣ ସେ ଗଣ୍ଡଗୋଳ? କ'ଣ ପାଇଁ ହେଉଛି? ମୁଁ ଜଣାଇଲି ଶ୍ରୀଶ୍ରୀ ଠାକୁରଙ୍କୁ ଆନନ୍ଦବଜାର ବିସ୍ତାରିତ ଘଟଣା। ତା' ସାଥେ ସାଥେ ଦେବେନ୍ଦ୍ର'ଦା ଲୋକମାନଙ୍କୁ ନେଇ ବାହାରେ ଠିଆ ହୋଇ ଆନନ୍ଦବଜାରରେ ଯେପରି କେହି ନଖାନ୍ତୁ ତାହା ପାଇଁ ପ୍ରରୋଚନା ଦେଉଁଛନ୍ତି, ଏ କଥା

କହିବାକୁ ମଧ୍ୟ ଭୁଲିଲି ନାହିଁ। ଶ୍ରୀଶ୍ରୀ ଠାକୁର ସେଠାରେ ରହିଥିବା ଜଣେ ଦାଦାଙ୍କୁ କହିଲେ– ଯା'ତ, ଦେବେନ୍ଦ୍ରକୁ ଡାକି ଆଣିବୁ, କହିବୁ ମୁଁ ଡାକୁଛି ବୋଲି। କିଛିକ୍ଷଣ ପରେ ଦେବେନ୍ଦ୍ରଦା' ଶ୍ରୀଶ୍ରୀ ଠାକୁରଙ୍କର ଡାକରା ପାଇ ବ୍ୟତିବ୍ୟସ୍ତ ହୋଇ ଛୁଟି ଆସିଲେ। ଶ୍ରୀଶ୍ରୀ ଠାକୁର ଦେବେନ୍ଦ୍ରଦା'ଙ୍କୁ ଦେଖି ପଚାରିଲେ–ଆନନ୍ଦ ବଜାରରେ କ'ଣ ହୋଇଛି? ଦେବେନ୍ଦ୍ରଦା' ବିନୀତ ଭାବରେ କହିଲେ– ଠାକୁର! ପାବନାରୁ ଆମେ ଆନନ୍ଦବଜାରର ପ୍ରସାଦ ପାଇ ଆସିଛୁ। ଯେତେବେଳେ ଆନନ୍ଦବଜାରରେ କିଛି ରହୁ ନଥିଲା ସେତେବେଳେ ଆପଣ ନିଜେ ରହି ସମସ୍ତ ଖାଇଲେ କି ନାହିଁ ଦେଖୁଥିଲେ। ଯାହା କିଛି ରହୁଥିଲା ମା' ସ୍ୱୟଂ (ଜନନୀ ମନ ମୋହିନୀ) ନିଜ ହାତରେ ଆନନ୍ଦବଜାରର ପ୍ରସାଦ ଆମକୁ ବିତରଣ କରୁଥିଲେ। ପେଟ ପୁରୁ ନ ଥିଲା କିନ୍ତୁ ଅନ୍ତର ପୂରି ଯାଉଥିଲା। ଆମେ ମନେ କରୁଥିଲୁ ମୁଁ କମ୍ ଖାଇ ଆଉ ଜଣକୁ ବେଶୀ ଦେଇ ପାରିଲେ ଭଲ ହେବ। ଆଜି ସେହି ଆନନ୍ଦ ବଜାରରେ ପ୍ରତିଦିନ ହଜାର ହଜାର ଲୋକ ଖାଉଛନ୍ତି; କର୍ତ୍ତୃପକ୍ଷଙ୍କ ବ୍ୟବହାରରେ କେହି ନିଜର ବୋଲି ସେହି ଆନନ୍ଦବଜାରକୁ ଭାବିପାରୁ ନାହାନ୍ତି। ପୂର୍ବରୁ କିଛି ଖବର ନ ଦେଇ ଖାଇବାକୁ ବସିବା ପରେ ଅର୍ଦ୍ଧ ଆହାର ପରେ କହୁଛନ୍ତି– ଆଉ ଭାତ ଦିଆଯିବ ନାହିଁ। କର୍ତ୍ତୃପକ୍ଷ କେହି ଆନନ୍ଦ ବଜାରରେ ଉପସ୍ଥିତ ରହିନାହାନ୍ତି। ସମସ୍ତେ ହୁକୁମ କରି ଯେ ଯାହାର ଘରେ ପେଟ ଭର୍ତ୍ତି କରି ଖାଇ ପିଇ ବିଶ୍ରାମ ନେଉଛନ୍ତି, ଆଉ ଆମ୍ଭେ ଆପଣଙ୍କର ସନ୍ତାନମାନେ ରାସ୍ତା ଭିକାରୀ ପରି ଖାଇଲୁ କି ନ ଖାଇଲୁ ତାହାର ଖବର ମଧ୍ୟ କେହି ନେଲେ ନାହିଁ, ଏହିପରି ଅବସ୍ଥାରେ ମୁଁ ସମସ୍ତଙ୍କୁ କହୁଛି– ଆମ୍ଭେ ଏଠାରେ ଖାଇବା ନାହିଁ, ଦରକାର ହେଲେ ଆମେ ଅଲଗା ରୋଷେଇ କରି ଖାଇବା। ଏକଥା ଶୁଣି ଶ୍ରୀଶ୍ରୀ ଠାକୁର ଦେବେନ୍ଦ୍ରଦା'ଙ୍କୁ ହୁଙ୍କାର ଛାଡ଼ି କହି ଉଠିଲେ– ଯା', ତୋର ଖାଇବାକୁ ହେବ ନାହିଁ। ତୁ କ'ଣ ପାଇଛୁ କି? ଲୋକଙ୍କୁ ନ ଖୁଆଇବା ପାଇଁ ବୁଦ୍ଧି ଦେଇ ପାରୁଛୁ, କିନ୍ତୁ ସେହି ଭାଇମାନଙ୍କର ଖାଇବାର ବ୍ୟବସ୍ଥା ତ କିଛି କରିନାହୁଁ। ତୋତେ କହିବାକୁ ଲାଜ ମାଡୁନାହିଁ କର୍ତ୍ତୃପକ୍ଷ ଖାଇବାକୁ ଦେଲା ନାହୁଁ। କର୍ତ୍ତୃପକ୍ଷ କିଏ? ତୁ କ'ଣ ନିଜେ କର୍ତ୍ତୃପକ୍ଷ ନୁହଁ କି? ଆନନ୍ଦ ବଜାର ତୋର ନୁହେଁ କି? ଯେଉଁମାନେ ଆନନ୍ଦବଜାରକୁ ଖାଇବାକୁ ଯାଇଛନ୍ତି ସେଟା ତାଙ୍କର ନିଜର ଘର। ନିଜ ଘରେ ଯାହାଥିବ ତାହାକୁ

ଭାଗବଣ୍ଟା କରି ଖାଇବ। ତାହା ଭିତରେ କିଏ ଖାଇବାକୁ ଦେଲେ, ନ ଦେଲେ ଏକଥା ରହିବ କାହିଁକି? ଯଦି ବୁଝି ପାରୁଛ ଚାଉଳର ଅଭାବ ରହୁଛି, ସମସ୍ତେ ଲାଗିପଡ଼, ସଂଗ୍ରହ କରି ଆଣି ସମସ୍ତଙ୍କୁ ପେଟପୁରି ଖାଇବାକୁ ଦିଅ। ଆଉ ଯଦି ଚାଉଳ ନଥାଏ ତାହାହେଲେ ନିଶ୍ଚୟ କମ୍ ଖାଇବାକୁ ହେବ। ଏପରି କି ଦରାକାର ହେଲେ ଉପବାସ ରହିବୁ। ପାବନା ଆଶ୍ରମରେ ତୁମ୍ଭେମାନେ କେତେ ଉପବାସ କରିଛ, ସେ କଥା କ'ଣ ଭୁଲି ଯାଇଛ? ନିଜେ ଋତ୍ୱିକହୋଇ ସାଧାରଣ ଲୋକଙ୍କ ପରି ଦାବୀ ଜଣାଇ ବିକ୍ଷୋଭ ପ୍ରକାଶ କରିବାକୁ ଲଜ୍ଜା ହେଉନାହିଁ? ବିକ୍ଷୋଭ କରିବା ପୂର୍ବରୁ ସବୁକିଛି ପ୍ରତିକାର କରି ସମାଧାନ କାହିଁକି କରିଲୁ ନାହିଁ?

ଦେବେନ୍ଦ୍ରଦା' ଲଜ୍ଜିତ ହୋଇ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ଲୋଟି ପଡ଼ି କହିଲେ–ଠାକୁର! ମୋତେ କ୍ଷମା କରନ୍ତୁ। ମୁଁ ଭୁଲ କରିଛି। ମୁଁ ଯାଉଛି ସମସ୍ତଙ୍କୁ ନେଇ ଖାଇବି। ଆଉ ପ୍ରୟୋଜନୀୟ ଯାହା କିଛି ବ୍ୟବସ୍ଥା କରିବି। ଶ୍ରୀଶ୍ରୀ ଠାକୁର କହିଲେ– ଯା, ଜଲଦି ଯା। ପରମ ପିତାର ଆଶୀର୍ବାଦ ଏହି ଆନନ୍ଦ ବଜାର, କଦାପି ତାକୁ ଡାଲି ଭାତ ମନେ କରିବୁ ନାହିଁ। ପରମପିତା ଦୟାରେ ଯାହା ମିଳିବ ତାକୁ ମୁଣ୍ଡରେ ଲାଗାଇ ଗ୍ରହଣ କରିବୁ ଆନନ୍ଦ ସହକାରେ। ଦେବେନ୍ଦ୍ରଦା' ସାଙ୍ଗରେ ବହୁତ ଲୋକ ଆସି ଠାକୁରଙ୍କ ଘରର ଚତୁର୍ଦ୍ଦିଗରେ ଠିଆ ହୋଇଥିଲେ। ସମସ୍ତେ ଠାକୁରଙ୍କର ଏ କଥା ଶୁଣି ଆନନ୍ଦିତ ହୋଇ ଉଠିଲେ। ଦେବେନ୍ଦ୍ରଦା' ଠାକୁରଙ୍କର ଏ କଥା ଶୁଣି ଆନନ୍ଦିତ ହୋଇ ଉଠିଲେ। ଦେବେନ୍ଦ୍ରଦା' ଠାକୁରଙ୍କର ଘରୁ ବାହାରି ଉପସ୍ଥିତ ଭାଇମାନଙ୍କୁ କହିଲେ– ଦାଦା, ଚାଲନ୍ତୁ ଆମ୍ଭେ ଆନନ୍ଦ ବଜାରକୁ ଯିବା, ପ୍ରସାଦ ପାଇବା। ଏହା କହି ସମସ୍ତେ ଆନନ୍ଦବଜାରକୁ ଆନନ୍ଦସହକାରେ ଚାଲିଗଲେ ପ୍ରସାଦ ପାଇବା ପାଇଁ। ଶ୍ରୀଶ୍ରୀ ଠାକୁର ସେଠାରେ ଉପସ୍ଥିତ ଜଣେ ଭାଇକୁ ଡାକି କହିଲେ– କେଷ୍ଟଦା' (ପ୍ରେସିଡେଣ୍ଟ, ସତ୍‌ସଙ୍ଗ,) ଓ ଆନନ୍ଦବଜାରର ନଗେନକୁ ଡାକି ଆଣ। ଠାକୁରଙ୍କର ଡାକରା ପାଇ ସର୍ବ ପ୍ରଥମ ଯେ ଆସି ଉପସ୍ଥିତ ହେଲେ ସେ ଆନନ୍ଦବଜାରର ତତ୍କାଳୀନ ମ୍ୟାନେଜର ନଗେନ୍ଦ୍ରଦା'। ଶ୍ରୀଶ୍ରୀ ଠାକୁର ତାଙ୍କୁ କହିଲେ, ଆନନ୍ଦବଜାରରେ ଏପରି ପରିସ୍ଥିତି ସୃଷ୍ଟି ହେଲା କାହିଁକି? ନଗେନ୍ଦ୍ରଦା' କହିଲେ ଆଜ୍ଞା, ମୁଁ ହୁକୁମ ତାଲିମ୍ କରିଛି ମାତ୍ର। ଶ୍ରୀଶ୍ରୀ ଠାକୁର ଆଉ କିଛି କହିଲେ ନାହିଁ। ଇତିମଧ୍ୟେ କ୍ରୀଷ୍ଟଦା' ଆସି

ଉପସ୍ଥିତ ହେଲେ। ଶ୍ରୀଶ୍ରୀ ଠାକୁର ତାଙ୍କୁ ପଚାରିଲେ– ଆନନ୍ଦବଜାରରେ ଭାତ ମାପ କରି ଖାଇବାକୁ ଦେବାର ଆଦେଶ ଦିଆ ହୋଇଛି କାହିଁକି? କ୍ରିଷ୍ଟଦା ଶ୍ରୀଶ୍ରୀ ଠାକୁରଙ୍କୁ କହିଲେ– ବର୍ତ୍ତମାନ ବଜାରର ପରିସ୍ଥିତି କଥା ଚାଉଳ କେଉଁଠି ହେଲେ ମିଳୁ ନାହିଁ। ଗୋଟିଏ ପ୍ରଦେଶରୁ ଆଉ ଗୋଟିଏ ପ୍ରଦେଶକୁ ଚାଉଳ ଯିବା ଆସିବା ନିଷେଧ। ଏପରି ଅବସ୍ଥାରେ ହାତରେ କିଛି ଚାଉଳ ରହୁଁ ରହୁଁ ପୁନରାୟ ଚାଉଳ ସଂଗ୍ରହ ନ ହେବା ପର୍ଯ୍ୟନ୍ତ ଆମ୍ଭେ ବାଧ୍ୟ ହୋଇ ଜଣେ ଲୋକର ସାଧାରଣତଃ ଯାହା ଲାଗେ ହିସାବ କରି ସେତେ ପରିମାଣ ଭାତଦେବା କଥା କହିଛୁ। ପ୍ରତିଜଣ ପଛରେ ପାଏ ଚାଉଳର ଭାତ ବ୍ୟବସ୍ଥା କରା ହୋଇଛି। ଶ୍ରୀଶ୍ରୀ ଠାକୁର ଏକଥା ଶୁଣି ବ୍ୟଥିତ ଅନ୍ତରରେ କୃଷ୍ଟଦାଙ୍କୁ କହିଲେ, ଚାଉଳର ଅଭାବ, ଆପଣମାନେ ସଂଗ୍ରହ କରି ପାରୁନାହାନ୍ତି, ଏକଥା ମୋତେ କାହିଁକି ଜଣାଇନାହାନ୍ତି? ମୋତେ ସେକଥା ନ ଜଣାଇ ଆନନ୍ଦବଜାରରେ ଭାତ କଣ୍ଟ୍ରୋଲ ବା ସୀମିତ କରିବା ଭଲ ହୋଇନାହିଁ। ଆପଣମାନଙ୍କ ଉପରେ ନିର୍ଭର କରି ବହୁତ କିଛି ମୁଁ ଆପଣମାନଙ୍କ ହାତକୁ ଛାଡ଼ି ଦେଇଛି। ମୁଁ କହି ରଖୁଛି, ଯେତେବେଳେ ଦେଖିବେ ଆପଣମାନଙ୍କର କୌଣସି ଅସୁବିଧା ହେଉଛି, ମୋତେ କହିବେ, ମୁଁ ତାହାର ବ୍ୟବସ୍ଥା କରିବି।

କ୍ରୀଷ୍ଟଦା'ଙ୍କ ଆଡ଼କୁ ଅନାଇ ଶ୍ରୀଶ୍ରୀ ଠାକୁର କହିଲେ, କ୍ରୀଷ୍ଟଦା', ଆପଣ କାହିଁକି ଏକଥା ମୋତେ ପୂର୍ବରୁ ଜଣାଇ ନାହାନ୍ତି? ନଗେନ୍‌କୁ କହି ଦିଅନ୍ତୁ ଆନନ୍ଦବଜାରରେ ସମସ୍ତଙ୍କୁ ପେଟପୁରି ଖାଇବାକୁ ଦେବାକୁ। କ୍ରୀଷ୍ଟଦା' ନଗେନ୍ଦ୍ରଦା'ଙ୍କୁ ସାଙ୍ଗେ ସାଙ୍ଗେ କହିଲେ, ଆନନ୍ଦବଜାରରେ ଯାହାର ଯେତେ ପରିମାଣରେ ଭାତ ଲାଗିବ ସେତେ ଦିଆଯିବ। ଶ୍ରୀଶ୍ରୀ ଠାକୁର ନଗେନ୍‌ଦା'ଙ୍କୁ କହିଲେ, ମନେ ରଖିବୁ ଯେଉଁମାନେ ଆସିଛନ୍ତି ଏବଂ ଆନନ୍ଦବଜାରରେ ଖାଉଛନ୍ତି ସେମାନେ ଆସିଛନ୍ତି ତାଙ୍କର ନିଜ ଘରେ। ତୋ ପାଖରେ ଯେତେବେଳେ ଯାହା ଜୁଟିବ ତାହାହିଁ ଦେବୁ। କାହାରିର ଅନ୍ତରରେ ଯେପରି ଆଘାତ ନ ଲାଗେ ସେ ଦିଗରେ ଲକ୍ଷ୍ୟ ରଖିବୁ। ସେମାନେ ଆନନ୍ଦବଜାରର ସମସ୍ତ ଭାର ତୋ ହାତରେ ଛାଡ଼ିଛନ୍ତି, ତୁ ସେମାନଙ୍କୁ ଦେଖିଶୁଣି ଖୁଆଇବୁ। ନଗେନ୍ଦ୍ରଦା' ଚାଲିଯିବା ପରେ ଶ୍ରୀଶ୍ରୀ ଠାକୁର କୃଷ୍ଟଦା'ଙ୍କୁ କହିଲେ ମୁଁ ଯେତେବେଳେ ପୁରୀ ଯାଇଥିଲି ଜାନକୀଦା (ନେତାଜୀ ସୁଭାଷଚନ୍ଦ୍ରଙ୍କର ପିତା ଶ୍ରୀ ଜାନକୀ ନାଥ ବୋଷ) ମୋତେ ନେଇ ଯାଇଥିଲେ। ମା' ସହିତ ମୁଁ ଯାଇଥିଲି। ମା' ପୁରୀରେ ଶ୍ରୀ ଜଗନ୍ନାଥଙ୍କର

ଆନନ୍ଦବଜାର ଦେଖି ଆସି ମୋତେ କହିଥିଲେ, ଜଗନ୍ନାଥ ମହାପ୍ରଭୁଙ୍କ ଆନନ୍ଦବଜାର, କେତେ କେତେ ଲୋକ ଆସି ସେଠାରେ ଆନନ୍ଦ ସହକାରେ ପ୍ରସାଦ ପାଉଛନ୍ତି। ଯେତେ ଲୋକ ଆସୁନା କାହିଁକି ଅନ୍ନର ଅଭାବ ହେଉନାହିଁ। ଏ ବ୍ୟବସ୍ଥା ମୋର ଖୁବ୍ ଭଲ ଲାଗୁଛି। କିନ୍ତୁ ଏହାରି ସାଙ୍ଗେ ସାଙ୍ଗେ ମା' ମୋତେ କହିଲେ, ତୋ ପାଖରେ ପ୍ରତିଦିନ ବହୁତ ଲୋକ ଆସୁଛନ୍ତି, ଖାଉଛନ୍ତି, ରହୁଛନ୍ତି। ତେଣୁ ମୋର ଇଚ୍ଛା ଏହିପରି ଆନନ୍ଦବଜାର ଆମ୍ଭର ସେଠାରେ ହେଲେ ଭଲ ହୁଅନ୍ତା। ଶ୍ରୀଶ୍ରୀ ଠାକୁର କହିଲେ, ମୁଁ ମା'ଙ୍କର ଏକଥା ଶୁଣି ତାଙ୍କୁ କହିଥିଲି, ମା'! ତୋର ଯେତେବେଳେ ଇଚ୍ଛା ହୋଇଛି, ତୁ ଜଗଜ୍ଜନନୀ, ଆଜିଠାରୁ ଏଠି ଆନନ୍ଦବଜାର ଆରମ୍ଭ କର। ଶ୍ରୀଶ୍ରୀ ମା' କହିଲେ, ଆହୁରି ମୋର ଗୋଟିଏ କଥା। ଶ୍ରୀକ୍ଷେତ୍ରରେ ଆନନ୍ଦବଜାରରେ ସବୁ ମୋର ଭଲ ଲାଗେ, କିନ୍ତୁ ଗୋଟିଏ କଥା ମନେ ହେଲେ ଦୁଃଖ ହୁଏ। ତାହା ହେଉଛି ଏହି ପ୍ରସାଦ କିଣି ଖାଇବାକୁ ହୁଏ। ଯାହାର ପଇସା ନଥାଏ ସେ ମହାପ୍ରଭୁ ଜଗତ୍‌ପିତାର ପ୍ରସାଦ କିଣି ପେଟପୁରି ଖାଇପାରେ ନାହିଁ। ତେଣୁ ମୋର ଇଚ୍ଛା ତୁ ଯେଉଁ ଆନନ୍ଦବଜାର କରିବୁ ସେଥିରେ ଲୋକ ଯେପରି ଆସି ପଇସା ନାହିଁ ବୋଲି ସେ ପ୍ରସାଦରୁ ବଞ୍ଚିତ ନ ହୁଅନ୍ତି, ଏହି ବ୍ୟବସ୍ଥା ରହିଲେ ଭଲ ହୁଏ। ଶ୍ରୀଶ୍ରୀ ଠାକୁର କହିଲେ, ମା'ର ଏହି ଆଦେଶ ସେଦିନଠାରୁ ପାଳନ ହୋଇ ଚାଲିଛି। ପୁରୀରେ ଯେତେଦିନ ଆମ୍ଭେ ରହିଥିଲୁ ଜାନକୀଦା' (ଶ୍ରୀଶ୍ରୀ ଠାକୁରଙ୍କର ଦୀକ୍ଷିତ ଶିଷ୍ୟ) ସେଠାରେ ଏହି ଆନନ୍ଦବଜାରର ବ୍ୟୟଭାର ବହନ କରୁଥିଲେ। ହିମାଇତପୁର (ପାବନା)ରେ ଫେରି ଆନୁଷ୍ଠାନିକ ଭାବରେ ମା' ଏହି ଆନନ୍ଦବଜାର ଆରମ୍ଭ କଲେ ଏବଂ ନିଜ ହାତରେ ଦେଖାଶୁଣା ଏପରିକି ରୋଷେଇ ମଧ୍ୟ କରୁଥିଲେ। ଶ୍ରୀଶ୍ରୀ ଠାକୁର କହିଲେ, ମୁଁ ବୁଝେ ଆନନ୍ଦବଜାର ଅର୍ଥ ତାହାହିଁ ଯେଉଁଠାରେ ଖାଇବାକୁ ବସି ଚିନ୍ତା ଭାବନା ନଥିବ, ପେଟପୁରି ଲୋକ ଆନନ୍ଦସହକାରେ ଖାଇବ। ତୁମ୍ଭେମାନେ କିଛି ସଂଗ୍ରହ ନ କରି ପାରିଲେ କେବଳ ଡାଲି, ଭାତ ଦିଅ। ଲୁଣ ଭାତ ଦିଅ। ଏପରିକି ଖାଲି ଭାତ ଦିଅ। କିନ୍ତୁ ପେଟ ପୁରା ଖାଇବାକୁ ଦିଅ। କୃଷ୍ଣଦା' ଠାକୁରଙ୍କର ସବୁ କଥାରେ ସମ୍ମତି ଜଣାଇଲେ ଏବଂ ସେମାନେ ମଧ୍ୟ ସାଙ୍ଗେ ସାଙ୍ଗେ ଆନନ୍ଦବଜାରରେ ଠାକୁରଙ୍କର ଅଭିପ୍ରାୟ ଅନୁଯାୟୀ ସୁବ୍ୟବସ୍ଥା କରିବେ ବୋଲି କହି ପ୍ରଣାମ କରି ଚାଲିଗଲେ।

ଅଧିକ ରାତ୍ରିରେ ଠାକୁରଙ୍କୁ ଟିକିଏ ନିର୍ଜନରେ ପାଇ ମୁଁ ପୁଣି ଉତ୍ଥାପନ କଲି ଆନନ୍ଦବଜାରର କଥା। କହିଲି–ଠାକୁର! ଆପଣ ସବୁବେଳେ କହୁଥିଲେ ଆନନ୍ଦବଜାରରେ ଲୁଣଭାତ, ଏପରିକି ଖାଲି ଭାତ ଦିଅ ମଧ୍ୟ ସମସ୍ତଙ୍କୁ ପେଟ ପୂରି ଆନନ୍ଦ ସହକାରେ ଖାଇବାକୁ ଦିଅ। କିନ୍ତୁ ଖାଲି ଭାତ ଖାଇ ଲୋକ କ'ଣ ଆନନ୍ଦିତ ହେବେ? ସେମାନେ ତ ମନେ ମନେ ଅତୃପ୍ତ ରହିବେ ଏବଂ ଆନନ୍ଦ ପରିବର୍ତ୍ତେ ଦୁଃଖହିଁ ପାଇବେ। ଶ୍ରୀଶ୍ରୀ ଠାକୁର କହିଲେ, ସୁଖ, ଦୁଃଖ, ତାହା ମନର ଗୋଟିଏ ଅବସ୍ଥା। ଅସଂଯତ ମନ ଯାହା ଚାହେଁ, ତାହା ନ ପାଇଲେ ହିଁ ଦୁଃଖ। ଆଉ ପାଇଲେ ସୁଖୀ ହୁଏ ଏବଂ ସେହି ସୁଖ ମଧ୍ୟ ସାମୟିକ। ପୁଣି ଆହୁରି କିଛି ପାଇବା ଆଶାରେ ଛୁଟିଗଲେ ମରୀଚିକା ପଛରେ ଯାହାର ପରିଣତିରେ ନ ପାଇବା ହିଁ ଶେଷପର୍ଯ୍ୟନ୍ତ ସମ୍ବଳ ହୋଇଉଠେ। ଆନନ୍ଦବଜାରରେ ଯେ ମୁଁ ଖାଲି ଡାଲିଭାତକଥା କହିଲି ତାହା ହେଉଛି ପ୍ରତିଟି ମନୁଷ୍ୟର ସହଜାତ ପ୍ରାପ୍ୟ। ମନୁଷ୍ୟ ସୃଷ୍ଟି କରିବା ପୂର୍ବେ ପରମପିତା ସୃଷ୍ଟି କରିଛନ୍ତି ଏହି ପ୍ରାକୃତିକ ଦ୍ରବ୍ୟ ସମ୍ଭାର ଗଛ, ପତ୍ର, ଫଳ, ଜଳ ଇତ୍ୟାଦି, ଅର୍ଥାତ୍ ଯାହା ଖାଇ ମନୁଷ୍ୟ ବଞ୍ଚିବ। ଏହି ସହଜଲଭ୍ୟ ଜିନିଷଗୁଡ଼ିକ ବିଧାତା ଆଗେ ସୃଷ୍ଟି କରି ସର୍ବଶେଷରେ ସୃଷ୍ଟି କରିଛନ୍ତି ମନୁଷ୍ୟ। ଆଉ ମନୁଷ୍ୟ ଭିତରେ ଅଛି ମନ ଓ ବିବେକ, ଯାହା ମାଧ୍ୟମରେ ସାଧନାକରି ମନୁଷ୍ୟ ଉପଲବ୍ଧି କରିବ ନିଜର ସତ୍ତାକୁ। ଆଗେଇଯିବ ମୁକ୍ତି ଆଡ଼କୁ, ମିଶିଯିବ ମହାଚେତନ ସମୁତ୍ଥାନରେ। କିନ୍ତୁତ ଏହି ସାଧନା କରିବାକୁ ହେଲେ ଶରୀରକୁ ରକ୍ଷା କରି ତାହାରି ମାଧ୍ୟମ (Medium) ରେ ଆଗେଇ ଯିବାକୁ ହେବ।

ଏହି ସ୍ଥୂଳ ଶରୀରକୁ ରକ୍ଷା କରିବାକୁ ହେଲେ ଏଇ ପ୍ରକୃତିର ସୃଷ୍ଟିରୁ କିଛି ନା କିଛି ବସ୍ତୁ ତାକୁ ଦେବାକୁ ହିଁ ହେବ, ଆଉ ତାହାହିଁ ହେଉଛି ଆହାର। ଏହି ଆହାର୍ଯ୍ୟ ବସ୍ତୁ ବହୁତ ପ୍ରକାର ଅଛି ପୃଥିବୀରେ। ଯାହାର ଦେହ ପାଇଁ ଯେଉଁଟା ପ୍ରୟୋଜନ ସେ ତାହା ଗ୍ରହଣ କରିବ, ଏହାହିଁ ବିଧେୟ। କିନ୍ତୁ ଲୋକ ଅସଂଯତ, ଲୋଭଦ୍ୱାରା ପରିଚାଳିତ ହୋଇ ସବୁ କିଛି ଖାଇବାକୁ ଚାହାଁନ୍ତି ଏବଂ ଖାଆନ୍ତି ମଧ୍ଯ ରୁଚିସମ୍ମତ ଭାବେ, ଦେହ ରକ୍ଷାକଥା ଚିନ୍ତା କରନ୍ତି ନାହିଁ। ଆଉ ଏହା କରିବାକୁ ଯାଇ ଶକ୍ତିମାନ ଦୁର୍ବଳକୁ ବଞ୍ଚିତ କରି ପ୍ରଲୋଭନ ଦ୍ୱାରା ପ୍ରଲୋଭିତ ହୋଇ ସବୁକିଛି ଗ୍ରହଣ କରନ୍ତି, ପ୍ରୟୋଜନାତିରିକ୍ତ ଭାବରେ। ପରିଣତିରେ କାହାରିର ଭଲ ହୁଏ ନାହିଁ। ଏହାରି ପାଇଁ ମନୁଷ୍ୟ

ଜାତି ଭିତରେ ସୃଷ୍ଟି ହୋଇଛି ବିଭେଦ, ଧନୀ, ଗରୀବ, ଜାତିପ୍ରଥା। ଅବଶ୍ୟ ଏହା ଠିକ୍, ଇଂରାଜୀରେ ଗୋଟିଏ କଥା ଅଛି Survival of the fittest– ଯେ ସବୁଠାରୁ ଯୋଗ୍ୟ ତାର ବଞ୍ଚିବାର ଅଧିକାର ସବୁଠାରୁ ବେଶୀ। ଏଇ Fittest କହିଲେ ମୁଁ ଏହାହିଁ ବୁଝେ, ସେ ହିଁ ସବୁଠାରୁ ଯୋଗ୍ୟ ବ୍ୟକ୍ତି ଯେ କି ଅନ୍ୟକୁ ବଞ୍ଚାଏ ଏବଂ ସେମାନଙ୍କୁ ବଞ୍ଚାଇବା ପାଇଁ ନିଜର ଯୋଗ୍ୟତାକୁ ବଢ଼ାଇ ଆହାରଣ ପଟୁ ହୋଇ ଉଠନ୍ତି, ଆହରଣ କରିବାର କ୍ଷମତା ବଢ଼ାନ୍ତି ଏବଂ ସମସ୍ତଙ୍କୁ ତାହାର ଅଂଶ ଦେଇ ବଞ୍ଚାଇ ତାହା ସଙ୍ଗରେ ନିଜେ ବଞ୍ଚି ରହି ଆନନ୍ଦ ପାଆନ୍ତି। ଏଇ ଯେ fittest person ବା ଯୋଗ୍ୟବ୍ୟକ୍ତି, ସେମାନେ ଯେଉଁ ସମାଜରେ ଯେତେ ରହିଛନ୍ତି ସେ ସମାଜ ସେତେ ଉନ୍ନତ।

ଶ୍ରୀଶ୍ରୀ ଠାକୁର ପୁଣି କହିଲେ, ତେଣୁ ପରମପିତା ପ୍ରତି ମନୁଷ୍ୟକୁ ଜନ୍ମଦେବା ସାଙ୍ଗେ ସାଙ୍ଗେ ତାଙ୍କ ଆହାରର ବ୍ୟବସ୍ଥା ରଖିଛନ୍ତି ସହଜାତ ଓ ସହଜଲଭ୍ୟ ଭାବରେ। ମାତୃ ବକ୍ଷରେ କ୍ଷୀର ଦେଇଛନ୍ତି ଯେପରି ଅଯାଚିତରେ, ପରବର୍ତ୍ତୀ ଅବସ୍ଥାରେ ପୃଥିବୀରେ ମଧ୍ୟ ସେହିପରି ରଖିଛନ୍ତି ବହୁତ ଆହାର୍ଯ୍ୟ ଯାହାକି ସହଜ ଲଭ୍ୟ। ତାହା ଭିତରେ ମନୁଷ୍ୟ ବହୁତ କିଛି ବ୍ୟବସାୟିକ ବୁଦ୍ଧି ଖଟାଇ କୃତ୍ରିମ ଅଭାବ ସୃଷ୍ଟି କରୁଛନ୍ତି। କିନ୍ତୁ କୃତ୍ରିମ କୃତ୍ରିମ ହିଁ।

ପରମପିତା କିନ୍ତୁ ଚାହାଁନ୍ତି ତାର ସନ୍ତାନମାନେ ତାଙ୍କରି ସୃଷ୍ଟ ଏଇ ପୃଥିବୀରେ ସହଜଲଭ୍ୟ ବସ୍ତୁ– ତା' ଯାହାକିଛି ହେଉନା କାହିଁକି, ଆହାର କରି କ୍ଷୁତ୍ ପିପାସାରୁ ମୁକ୍ତ ରହି ନିଜର ଦେହ ଭିତରେ ରହିଥିବା ମନ ନେଇ ନିଶ୍ଚିନ୍ତଭାବରେ ତପସ୍ୟା କରୁ ସେଇ ପରମ ସ୍ରଷ୍ଟାର, ଯେ କି ପ୍ରତିମୁହୂର୍ତ୍ତରେ ରହିଛନ୍ତି ଆମ୍ଭର ଅନ୍ତରରେ, ସର୍ବତ୍ର, ବ୍ୟାପ୍ତଂ ଯେନ ଚରାଚରମ୍ ହୋଇ। ଦେହରକ୍ଷା କରିବା ପାଇଁ ସର୍ବନିମ୍ନ ଅଥଚ ଶକ୍ତିଦାୟକ ଆହାର ଭାତ ଓ ମୁଗୁରଡାଲି ଯାହାକି ଆମ୍ଭର ଏଇ ଅଞ୍ଚଳର ଲୋକମାନଙ୍କର Bare–necessity (ନ୍ୟୁନତମ ପ୍ରୟୋଜନ), ଯାହା ନହେଲେ ଜୀବନ ରହିବ ନାହିଁ, ପରମପିତା ଦୟାରେ ତାହାର ବ୍ୟବସ୍ଥା ମୁଁ ରଖିବାକୁ କହିଛି। ସର୍ବଶକ୍ତିମାନ ପରମପିତା, ତାର ସମସ୍ତ ସନ୍ତାନମାନଙ୍କୁ ବଞ୍ଚାଇ ରଖିବାର ସମ୍ପୂର୍ଣ୍ଣ ଦାୟିତ୍ୱ ତାଙ୍କର ଏବଂ ସେହି ସନ୍ତାନମାନେ ଯେପରି ତାଙ୍କୁ ଉପଲବ୍ଧି କରି ପାରିବ, ଜୀବନର ସବୁ ଜଟିଳତାରୁ ମୁକ୍ତ ରହି ସହଜ ଭାବରେ ତାଙ୍କର ଧ୍ୟାନରେ ରହିପାରିବ ତାହାର ମଧ୍ୟ ବ୍ୟବସ୍ଥା ସେ ରଖିଛନ୍ତି। ଆଉ ଏହାହିଁ ହେଉଛି ଆନନ୍ଦର ସହଜତମ ଉତ୍ସ।

ଅନାୟାସଲବ୍‌ଧ ଏହି ଆହାର ଯାହାକି ପରମପିତାର ସହଜାତ ଦାନ ଯେଉଁଠାରେ ସମସ୍ତେ ସମବେତ ହୋଇ ଗ୍ରହଣ କରନ୍ତି ତାହାହିଁ ତ ପରମପିତାର ଆନନ୍ଦବଜାର। ସତ୍ୟକାର ଆନନ୍ଦ ଏହାରି ଭିତରେ, ଏହି ଆନନ୍ଦବଜାରର ପ୍ରସାଦ ଗ୍ରହଣ କରି ସାଧନାଦ୍ୱାରା ସତ୍ୟକୁ ଉପଲବ୍‌ଧି କଲେ କ୍ରମାଗତ ଆନନ୍ଦ ଠାରୁ ଆନନ୍ଦରହିଁ ସୃଷ୍ଟି ହେବ। ତାହାରି ପାଇଁ ତ ମୁଁ କହେ, ଆନନ୍ଦବଜାର ଖାଲି ଡାଲି ଭାତ ନୁହେଁ, ସେ ମହାପ୍ରସାଦ। ଦିନେ ଶ୍ରୀଶ୍ରୀ ଠାକୁର ମୋତେ ଡାକି ଯାଚି କହିଥିଲେ– ତୁ ମୋର ଆନନ୍ଦବଜାରରେ ଖାଇବୁ ନାହିଁ? ସେ ଦିନର ସେହି ଛୋଟ କଥାଟି ଆଜି ବିରାଟ ଭାବେର ମୋ ସମ୍ମୁଖରେ ଆସି ଉପସ୍ଥିତ ହେଲା। ଆଜି ଆନନ୍ଦବଜାର ସମ୍ବନ୍ଧରେ ଠାକୁର ଯାହା କହିଲେ ଯାହାରକି ପ୍ରତିଟି ଅକ୍ଷର ଅତି ସତ୍ୟ, ତାହାହେଲେ ଯିଏ ତାହାର ପ୍ରବର୍ତ୍ତା ବା ସ୍ରଷ୍ଟା ସେ କଅଣ ସେହି ବିଶ୍ୱନିୟନ୍ତା ନୁହେଁ କି? ଭଗବାନ ଆଉ କାହାକୁ କୁହାଯାଏ? କିନ୍ତୁ ଦିନେ ଠାକୁର ନିଜ ମୁହଁରେ କହିଥିଲେ, ତୁ ମୋର ଆନନ୍ଦବଜାରରେ ଖାଇବୁ ନାହିଁ କି? ସେଦିନ ସେ "ମୋର" ଆନନ୍ଦବଜାର ବୋଲି ଯେଉଁ ସ୍ୱୀକୃତି ଦେଇଥିଲେ ଆଜି ଠାକୁରଙ୍କର ସେଇ ମୁଁ' କୁ ନୂଆକରି ଦେଖିଲି, ଠାକୁର ସେଇ କ୍ଷୁଦ୍ରଗଣ୍ଡି ଆବଦ୍ଧ "ମୁଁ" ନହେଁ, ସମସ୍ତ ବିଶ୍ୱର ସବୁ "ମୁଁ" ର ସମଷ୍ଟି। ଅର୍ଥାତ୍– Universal I, who is one। ଏକମେ ବା ଦ୍ୱିତୀୟମ୍। ଠାକୁରଙ୍କର ଛୋଟ ଛୋଟ ଗୋଟିଏ ଗୋଟିଏ କଥା, ତାକୁ ବୁଝିବାକୁ ହେଲେ କେତେ ସାଧନା କରିବାକୁ ହୁଏ। ବହୁ ବହୁ କାଳ ପରେ ସେଇ ଗୋଟିଏ କଥାରୁ ବହୁତ ରୂପ, ବହୁତ ରସ, ବହୁତ ଭାବ, ଯେତେବେଳେ ବିଚ୍ଛୁରିତ ହେବାକୁ ଆରମ୍ଭ କରି ନିଜ ପାଖରେ ଧରା ଦେବାକୁ ଆରମ୍ଭ କରେ ସେତେବେଳେ ମନେହୁଏ ସେହି ଅନାଦି ଅନନ୍ତର ଦୟାମୟ ରୂପ। ତାଙ୍କର ଦୟାର ଟିକିଏ ମାତ୍ର କଣିକା ଜୀବନରେ ଉପଲବ୍‌ଧି କରି ପାରିଲେ ଏଇ ପାର୍ଥିବଜଗତର ଆଉ କିଛି ଭଲ ଲାଗେ ନାହିଁ, ଜୀବନ ସାମ୍ନାରେ କୌଣସି ବସ୍ତୁ ଆକାଙ୍‌କ୍ଷିତ ହୋଇ ଉଠିପାରେ ନାହିଁ। କିନ୍ତୁ ତାହାବୋଲି ଅବହେଳା ମଧ୍ୟ କାହାକୁ କରି ହୁଏ ନାହିଁ। ଯେପରି ପୁଷ୍ପ, ବିଲ୍ୱପତ୍ର ଦେଇ ଦେବତାର ପୂଜା ହୁଏ, ଦେବତାହିଁ ଧ୍ୟେୟ ଜ୍ଞେୟ ତାଙ୍କର ପୂଜାପାଇଁ ପୁଷ୍ପାଦିର ପ୍ରୟୋଜନ ଅନସ୍ୱୀକାର୍ଯ୍ୟ ହେଲେ ମଧ୍ୟ ପୁଷ୍ପ ଉପରେ ରହେନା କୌଣସି ଆକର୍ଷଣ।

ମନ ରହେ ସେହି ମୂଳ ଇଷ୍ଟ ଦେବତା ଉପରେ। ଏହାହିଁ କି ପରମ ପୁରୁଷ ଶ୍ରୀରାମକୃଷ୍ଣଙ୍କର ସେହି କଥା, ସଂସାରରେ ରହିବାକୁ ପଡ଼େ ପାକାଲ୍ ମାଛ ପରି (ତୋଡ଼ିମାଛ), କାଦରେ ରହି ମଧ୍ୟ ତା ଦେହରେ କାଦୁଅ ଲାଗେ ନାହିଁ। ଅଥବା ପଦ୍ମପତ୍ର ପରି, ପାଣିରେ ରହି ମଧ୍ୟ ତା ଦେହରେ ପାଣି ଲାଗେ ନାହିଁ। ଏହି ସଂସାରରେ ସବୁକିଛି ମଧ୍ୟେ ରହି ସବୁ କିଛି ସୁଚାରୁରୂପେ କରିବାକୁ ହେବ ସେହି ତାଙ୍କରି ପାଇଁ, ଅଞ୍ଜଳି ଦେବାକୁ ହେବ ତାଙ୍କରି ଶ୍ରୀ ଚରଣ କମଳରେ, ଯେ କି ମୋର ମହାନ୍ ଦେବତା ପରମ ପୁରୁଷ ବର୍ତ୍ତମାନ, ନରଦେହଧାରୀ ଶ୍ରୀଶ୍ରୀ ଠାକୁର, ମୋ ସାମୁଖରେ ଇଷ୍ଟ ପ୍ରତୀକ ଆବିର୍ଭୂତ।

## ॥ ଅଠର ॥

ଅନ୍ଧାରରୁ ଆସି ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ବସିଛି। ଅଳ୍ପ ଅଳ୍ପ ଶୀତ ଅଛି। ଧୀରେ ଧୀରେ ପୂର୍ବାକାଶରେ ସୂର୍ଯ୍ୟଦେବତା ଉଦିତ ହେଉଛନ୍ତି। ଶ୍ରୀଶ୍ରୀ ଠାକୁର ବାହାରି ପଡ଼ିଲେ ନିରାଲା ନିବାସ ଠାରୁ। ସମ୍ମୁଖସ୍ଥ ପ୍ରାଙ୍ଗଣରେ ଆସି ବସିଲେ। ଧୀରେ ଧୀରେ ଭକ୍ତମଣ୍ଡଳୀ ଆସି ଉପସ୍ଥିତ ହେଲେ। ଠାକୁରଙ୍କୁ ପ୍ରଣାମ ହୋଇ ବହୁତ ଲୋକ ତାଙ୍କ ଚାରିପାଖେ ବସିଛନ୍ତି, କେହିବା ଠିଆ ହୋଇଛନ୍ତି। ଶ୍ରୀଶ୍ରୀ ଠାକୁର ଯେଉଁଠାରେ ବସିଛନ୍ତି ସେଠାରୁ ଆଠଦଶଫୁଟ ଦୂରରୁ ସାମୟିକ ଭାବରେ କାଠବାଡ଼ ଦିଆ ହୋଇଛି। ଲୋକମାନେ ତା'ର ବାହାରେ ବସିଛନ୍ତି। ବାଡ଼ ମଧ୍ୟରେ ମଧ୍ୟ ସ୍ୱଳ୍ପ ସଂଖ୍ୟକ କେତେକ ଲୋକ ଅଛନ୍ତି ଯେଉଁମାନେ କି ଶ୍ରୀଶ୍ରୀ ଠାକୁରଙ୍କର ପ୍ରୟୋଜନରେ ପାଖେ ପାଖେ ରହନ୍ତି ଓ ଯାହାର ଯାହାର ପ୍ରଶ୍ନ ଥାଏ ସେ ପ୍ରଶ୍ନ ପାଖରେ ଆସି ପଚାରନ୍ତି। ଏହି ଭାବରେ ବହୁତ ଲୋକ ଆସି ତାଙ୍କ ଜୀବନର ବହୁକିଛି ଜାଣି ଯାଉଛନ୍ତି ଶ୍ରୀଶ୍ରୀ ଠାକୁରଙ୍କ ନିକଟରୁ। ଇତି ମଧ୍ୟେ ଏକ ମୌଲାନା ସାହେବ ପୂର୍ବପାକିସ୍ଥାନ (ବର୍ତ୍ତମାନ ବାଂଲାଦେଶ)ରୁ ଆସି ଉପସ୍ଥିତ ହେଲେ। କାଠ ଘେରାଉ ମଧ୍ୟରେ ବସି ଶ୍ରୀଶ୍ରୀ ଠାକୁରଙ୍କୁ ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରିବାକୁ ଲାଗିଲେ। ହଜରତ୍ ମହମ୍ମଦଙ୍କ ସମ୍ବନ୍ଧରେ ବହୁତ କଥା ଠାକୁରଙ୍କୁ ପଚାରିଲେ। କୋରାନ—ସରିଫ, ହାଦିସ ଇତ୍ୟାଦି ଇସଲାମ୍ ଧର୍ମର ବିଭିନ୍ନ ପୁଣ୍ୟଗ୍ରନ୍ଥାଦି ସମ୍ବନ୍ଧରେ ବିସ୍ତାରିତ ଆଲୋଚନା କରିବାକୁ ଲାଗିଲେ। ଉକ୍ତ ମୌଲାନା ସାହେବ ଶ୍ରୀଶ୍ରୀ ଠାକୁରଙ୍କ ଜାବାବରେ ଖୁବ୍ ଉତ୍‌ଫୁଲ୍ଲ ହୋଇ ଉଠିଲେ ଏବଂ ଇସ୍‌ଲାମ ଧର୍ମର ବିଭିନ୍ନ ଜଟିଳ ପ୍ରଶ୍ନଗୁଡ଼ିକୁ ଗୋଟିକ ପରେ ଗୋଟିଏ ଠାକୁରଙ୍କ ପାଖରୁ ସମାଧାନ କରିବାକୁ ଲାଗିଲେ। ମୌଲାନାସାହେବଙ୍କ ବୁଦ୍ଧିଦୀପ୍ତ ଏବଂ ଭକ୍ତିରସାପ୍ଲୁତ ବିଭିନ୍ନ ପ୍ରଶ୍ନର ଜବାବ ଦେବାକୁ ଯାଇ ଶ୍ରୀଶ୍ରୀ ଠାକୁରଙ୍କୁ ଦେଖିଲି ସେ ଖୁବ୍ ଉତ୍ସାହିତ ଓ ଆନନ୍ଦିତ ସହକାରେ ସବୁପ୍ରଶ୍ନର ଉତ୍ତର ଦେଉଛନ୍ତି। ଗୋଟିଏ ଜାଗାରେ ମୌଲାନା ସାହେବ ପ୍ରଶ୍ନକଲେ, ଠାକୁର! ଆମ୍ଭ ଶାସ୍ତ୍ରରେ ଅଛି, ହଜରତ୍ କହିଛନ୍ତି, ମୁଁ ହିଁ ଶେଷନବୀ, ଅର୍ଥାତ୍ ମୁଁ ହିଁ ଶେଷ ଅବତାର, ଅବତରଣ କରିଛି। ହଜରତ୍‌ଙ୍କର ଏହି କଥା ମାନିନେଲେ ତାଙ୍କ ପରେ ଆଉ କୌଣସି ଅବତାର ପୁରଷଙ୍କର ଆସିବା କଥା ନୁହେଁ। ତାହାରିପାଇଁ ଆମ୍ଭେ

ଇସଲାମଧର୍ମାବଲମ୍ବୀମାନେ ହଜରତ୍ ମହମ୍ମଦଙ୍କ ପରେ ଆଉ କାହାକୁ ଅବତାର ବା ନବୀରୂପେ ସ୍ୱୀକାର କରୁ ନାହୁଁ। କିନ୍ତୁ ବିଭିନ୍ନ ଧର୍ମ ଶାସ୍ତ୍ର ଗ୍ରନ୍ଥରେ (ଯଥା ଗୀତା) ଇତ୍ୟାଦିରେ ଅଛି ଯେ ଧର୍ମରେ ଗ୍ଲାନି ଯେତେବେଳେ ହୁଏ, ସେତେବେଳେ ନବୀ ବା ଅବତାର ପୁରୁଷ ଧରା ଧାମରେ ଅବତୀର୍ଣ୍ଣ ହୁଅନ୍ତି ପୃଥିବୀର ଲୋକଙ୍କୁ ପଥ ଦେଖାଇବା ପାଇଁ। ଆପଣ କହୁଛନ୍ତି ସମସ୍ତ ଅବତାର ପୁରୁଷହିଁ ଏକ, ତାଙ୍କର କଥା ବାଣୀ ଭିତରେ କିଛି ପ୍ରଭେଦ ନାହିଁ ଏବଂ ଆପଣଙ୍କ ପାଖକୁ ଆସି ଆପଣଙ୍କୁ ଦେଖି ଆପଣଙ୍କର ପ୍ରତିଟି କଥା ଯେ ସତ୍ୟ ତାହା ମୁଁ ଅନ୍ତର ଦେଇ ଉପଲବ୍ଧି କରୁଛି। କିନ୍ତୁ ହଜରତ୍ ଯେ କହିଗଲେ, ‘‘ମୁଁ ଶେଷ ନବୀ’’, ଏ କଥାର କିଛି ସମାଧାନ କରିପାରୁନାହିଁ। ଆପଣ କୁହନ୍ତୁ, ସେ କ'ଣ ଭୁଲ କହିଗଲେ? ଶ୍ରୀଶ୍ରୀ ଠାକୁର କହିଲେ, ହଜରତ୍‌ଙ୍କ କଥା କେତେବେଳେ ହେଲେ ଭୁଲ ହୋଇ ପାରେନା। ସେ ଯାହା କହିଛନ୍ତି ସେ ସମୟ ପାଇଁ ତାହାହିଁ ଠିକ୍। ଅର୍ଥାତ୍ ସେହି ଯୁଗ ସନ୍ଧିକ୍ଷଣରେ ପୃଥିବୀରେ ଯେଉଁ ବିଭ୍ରାନ୍ତ ଚାଲିଥିଲା, ଯୀଶୁଖ୍ରୀଷ୍ଟଙ୍କ ହତ୍ୟାକରି, ବୁଦ୍ଧ, ଯୀଶୁ, ଏହିପରି ଅନ୍ୟାନ୍ୟ ଅବତାର ପୁରୁଷଙ୍କର କଥାର ବିକୃତ ଅର୍ଥ କରି ଧର୍ମ ନାମରେ ଯେଉଁ ଅଶାନ୍ତି ଓ ବିଭେଦ ସୃଷ୍ଟି ହେଉଥିଲା, ସେତେବେଳେ ଅବତରଣ କଲେ ହଜରତ୍ ମହମ୍ମଦ ସ୍ୱୟଂ, ନିଜକୁ କହିଲେ, ‘‘ଖୋଦାର ବାନ୍ଦା’’। ତାଙ୍କ ମୁହଁରୁ ଯେଉଁ ବାଣୀ ବାହାରିଲା ତାହା ଦେଖାଇଲା ପ୍ରତିଟି ମନୁଷ୍ୟଙ୍କୁ ସେହି ଚିରନ୍ତନ ଶାଶ୍ୱତ ପଥ ଯାହାକି ଯୁଗେ ଯୁଗେ ସବୁ ଅବତାର ପୁରୁଷମାନେ କହି ଯାଇଛନ୍ତି। ଅବଶ୍ୟ ଯୁଗ ଏବଂ କାଳ ଭେଦରେ ତାର ପ୍ରୟୋଗରେ କିଛି ନୂତନତ୍ୱ ଥାଇ ପାରେ, କିନ୍ତୁ ମୂଳ କଥା ଏକ। ହଜରତ ସାହେବ ଯେତେବେଳେ ଆସିଥିଲେ ସେ ହିଁ ଥିଲେ ସେତେବେଳର ଶେଷ ଅବତାର ଯେ କି ବିଶୃଙ୍ଖଳିତ ପୃଥିବୀର ସବୁ କିଛି ସମାଧାନ ଦେଇଯାଇଥିଲେ।

ସେ ନିଜକୁ ଶେଷ ଅବତାର ବା ଶେଷନବୀ କହିଥିଲେ, କିନ୍ତୁ ଏକଥା କହି ନଥିଲେ ଯେ ସେ ଆଉ କେବେହେଲେ ଆସିବେ ନାହିଁ। ଆଉ ଏହା ଅତି ସତ୍ୟକଥା ଯେତେବେଳେ କୌଣସି ଅବତାର ବା ପ୍ରେରିତ ପୁରୁଷ ଆସନ୍ତି, ସେହିଁ ଆନ୍ତି ସେ ସମୟର ଶେଷ ଅବତାର ବା ଶେଷନବୀ। ଅର୍ଥାତ୍ ଈଶ୍ୱରଙ୍କର ନବଦେହ ଧାରଣକାରୀ। ପୃଥିବୀର ସୃଷ୍ଟିର ଯେତେବେଳେ ଶେଷ ନାହିଁ, ଆଉ ଯେତେଦିନ ଯାଏ ଏହି ସୃଷ୍ଟି ଚାଲିଥିବ, ଅବତାର

ପୁରୁଷଙ୍କର ଆସିବା ମଧ୍ୟ କେବେବେଳେ ହେଲେ ଶେଷ ହେବ ନାହିଁ। ତେବେ ଏକଥା ସତ୍ୟ ଯେ ଏକା ସାଙ୍ଗରେ ଦୁଇ ଅବତାର ଆସନ୍ତି ନାହିଁ। ସେ ହିଁ "ଏକମେ ବା ଦ୍ୱିତୀୟମ"। ତେଣୁ ହଜରତଙ୍କର କଥା ଖୁବ୍ ଖାଣ୍ଟି। ତାହା ସାଙ୍ଗରେ ଅନ୍ୟାନ୍ୟ କଥା ପରେ ଆମ୍ଭେ ମନୁଷ୍ୟ ସମାଜ ଯୋଡ଼ି ଦେଇଛୁ। ଗୀତାରେ ଶ୍ରୀକୃଷ୍ଣଙ୍କର କଥାର ମଧ୍ୟ ଏପରି ବିକୃତ ଅର୍ଥ କରାହୋଇଛି ବହୁତ ଜାଗାରେ। ଆଉ ତାଙ୍କ କଥାର ବିକୃତି ହୁଏ ବୋଲି ପୁଣି ପରମପୁରୁଷ ଧରାଧାମରେ ଆସି ସବୁ ଠିକ୍ କରି ଆଚାର ଆଚରଣ ଦ୍ୱାରା ଲୋକ ସମକ୍ଷରେ ଉପସ୍ଥିତ ହୁଅନ୍ତି ପଥ ଦେଖାଇବା ପାଇଁ। ଶ୍ରୀଶ୍ରୀ ଠାକୁରଙ୍କର କଥା ଶୁଣି ମୌଲାନା ସାହେବ କହି ଉଠିଲେ, ମୁଁ ସାଧନା କରି ଚାଲିଛି, ସମସ୍ତଙ୍କୁ ଧର୍ମଶିକ୍ଷା ମଧ୍ୟ ଦେଉଛି କିନ୍ତୁ ସର୍ବଶକ୍ତିମାନ ରସୁଲର ଏହି କଥାର ସମାଧାନ କରିପାରୁ ନଥିଲି। ଆଜି ମୋର ସବୁ କିଛିର ସମାଧାନ ହୋଇଗଲା। ମୋର ବିଶ୍ୱାସ ଆପଣହିଁ ସ୍ୱୟଂ ରସୁଲ। ଶ୍ରୀଶ୍ରୀ ଠାକୁର ଚୁପ୍ କରି ରହିଲେ। ଆହୁରି କିଛି ଆଲୋଚନା ହେବାପରେ ମୌଲନା ସାହେବ ଠାକୁରଙ୍କୁ କହିଲେ– ମୋତେ ଦୟାକରି ଆପଣଙ୍କ ଚରଣରେ ଆଶ୍ରୟ ଦିଅନ୍ତୁ। କିନ୍ତୁ ଦୀକ୍ଷାପରେ ମୁଁ ମୋର ପୂର୍ବଦିନର ସାଧନ ଭଜନ (ଯଥା–ଦିନକୁ ପାଞ୍ଚଥର ନାମାଜ ପାଠ କରିବା ଓ ଆମ୍ଭର ଇସ୍‌ଲାମ ଧର୍ମରେ ଯାହା ଯାହା ଅଛି) ତାହା କରି ପାରିବି ତ? ଶ୍ରୀଶ୍ରୀ ଠାକୁର କହିଲେ, ନିଶ୍ଚୟ କରିପାରିବ, ଖାଲି କରିବା ନୁହେଁ ସବୁ କିଛି ଠିକ୍ ଠିକ୍ କରି କରିବାକୁ ହେବ। ମନେ ରଖିବ ତୁମ୍ଭେ 'ମୌଲାନା' ସମସ୍ତ ଲୋକଙ୍କୁ ଧର୍ମ ଶିକ୍ଷା ଦେବ ଏବଂ ପଥ ଦେଖାଇବ ନିଜ ଜୀବନରେ ଆଚରଣ କରି। ଏଠାରେ ଦୀକ୍ଷା ନେବା ଅର୍ଥ ଧର୍ମାନ୍ତର ଗ୍ରହଣ ନୁହେଁ, ବରଂ ଯିଏ ଯେଉଁଠି ରହିଛି ସେଇଠାରେ ରହି, ଭୁଲଭ୍ରାନ୍ତି ଯଦି କିଛି ଥାଏ ତାକୁ ସଂଶୋଧନ କରି ଠିକ୍ ଠିକ୍ ପଥରେ ଆଗେଇ ଯିବା।

ପରମପିତା ଯେପରି ଜଣେ, ଧର୍ମ ମଧ୍ୟ ସେହିପରି ଏକ। ତାହା ଦୁଇଟା, ତିନିଟା କଦାପି ହୋଇ ପାରେ ନାହିଁ ବୋଲି ମୋର ବିଶ୍ୱାସ। ଯେ ଯେଉଁ ଭାବରେ ଯେଉଁ ପଥରେ ଡାକୁନା କାହିଁକି ମୂଳତଃ ସେହି ସର୍ବଶକ୍ତିମାନଙ୍କୁ ହିଁ ଡାକିବ ଏବଂ ଶେଷ ଗନ୍ତବ୍ୟ ମଧ୍ୟ ସମସ୍ତଙ୍କର ଏକ ସ୍ଥାନରେ। ଶ୍ରୀଶ୍ରୀ ଠାକୁର ତାଙ୍କୁ ଋତ୍ୱିକ ମାଧ୍ୟମରେ ଦୀକ୍ଷା ଦେବାପାଇଁ ଅନୁମତି ଦେଲେ।

ଏହି ସବୁ ଆଳାପ ଆଲୋଚନା ଚାଲୁଁ ଚାଲୁଁ ଦିନ ୯ଟା ବାଜି ଯାଇଛି। ମୌଲାନା ସାହେବ ଉଠି ଠାକୁରଙ୍କୁ ପ୍ରଣାମ କରି ଚାଲିଗଲେ। ସେଠାରେ ଉପସ୍ଥିତ ଲୋକମାନଙ୍କ ମଧ୍ୟରୁ ଅନେକେ ଚାଲିଗଲେ। ଶ୍ରୀଶ୍ରୀ ଠାକୁର ବାହାରୁ ଉଠି ଘରକୁ ଯାଇ ବସିବାପାଇଁ ଚାହିଁଲେ। ଆମ୍ଭେ ପାଞ୍ଚ ସାତଜଣ ସେଠାରେ ରହିଛୁଁ। ମୁଁ ମଧ୍ୟ ସେଠାରୁ ବାହାରି ଆସିବି ବୋଲି ଭାବି ଠାକୁରଙ୍କୁ ପ୍ରଣାମ କରିବାପାଇଁ ଭୂମିରେ ମୁଣ୍ଡ ଲାଗାଇଛି। ସେତେବେଳେ ହଠାତ୍ ଗୋଟିଏ ଅଘଟନ ଘଟିଗଲା। ଜଣେ ଲୋକ ଯେ କି ସକାଳୁ ଆସି କାଠବାଡ଼ ବାହାରେ ବସି ସବୁ କିଛି କଥୋପକଥନ ଶୁଣୁଥିଲା, ସେ ହଠାତ୍ ଉଠି ଭିତରକୁ ଆସି ଶ୍ରୀଶ୍ରୀ ଠାକୁରଙ୍କୁ ମାରିବାକୁ ଆରମ୍ଭ କଲା। ଠାକୁରଙ୍କ ଦେହରେ ବିଧା, ଭୁଷି ଦେଲା ଓ ଗାଲରେ ଥାପଡ଼ ମାରିବାକୁ ଆରମ୍ଭ କଲା। ଏହି ଅପ୍ରତ୍ୟାଶିତ ଘଟଣାରେ ଉପସ୍ଥିତ ସମସ୍ତେ ହତଚକିତ ହୋଇ ପଡ଼ିଲେ। କିନ୍ତୁ ମୁହୂର୍ତ୍ତ ମଧ୍ୟେ ସମସ୍ତେ ଝାମ୍ପି ପଡ଼ିଲେ ସେହି ଆଗନ୍ତୁକ ଲୋକଟି ଉପରକୁ। ତାକୁ ଜୋର କରି ସେଠାରୁ ଧରି ଠାକୁରଙ୍କ ପାଖରୁ ଟିକେ ଦୂରକୁ ଆଣି କେହି କେହି ପିଟିବାକୁ ଆରମ୍ଭ କଲେ। ସମସ୍ତଙ୍କର ପ୍ରାଣମଣି ଶ୍ରୀଶ୍ରୀ ଠାକୁରଙ୍କର ଦେହଉପରେ ଏହି ଅତ୍ୟାଚାର ଉପସ୍ଥିତ କେହି ସହ୍ୟ କରି ପାରିଲେ ନାହିଁ। ମୋର ମନରେ ମଧ୍ୟ ନିଆଁ ଜଳି ଉଠିଛି। ଏ କି ସର୍ବନାଶ ! ଯେ କି ସର୍ବମଙ୍ଗଳମୟ, ସ୍ୱପ୍ନରେ ମଧ୍ୟ କାହାରିର କେବେ କ୍ଷତି କରି ନାହାନ୍ତି, ତାଙ୍କ ଉପରେ ମାନବ ଦେହଧାରୀ ଏହି ପଶୁର ଏ କି ଅତ୍ୟାଚାର! ଠାକୁରଙ୍କ ଗାଲ ଲାଲ ହୋଇ ଫୁଲି ଉଠିଛି। ତାଙ୍କୁ ଅନାଇଲେ କାନ୍ଦ ମାଡୁଛି। ଶ୍ରୀଶ୍ରୀ ଠାକୁର କିନ୍ତୁ ବ୍ୟସ୍ତ ହୋଇ ଉଠିଲେ, ସମସ୍ତଙ୍କୁ କହିଲେ, ତାଙ୍କୁ ମାରନା, ମାରନା। ସମ୍ମୁଖରେ ଛିଡ଼ା ହୋଇଥିବା ମୋତେ କହିଲେ, ଦେଖ, ସମସ୍ତେ ଏହାଙ୍କୁ ମାରି ପକାଇବେ। ସମସ୍ତଙ୍କୁ କହ, ଯେପରି ଏହାଙ୍କୁ ନ ମାରନ୍ତି। ତାଙ୍କୁ ସାଥିରେ ନେଇଯା'। ଭଲ ଭାବରେ ଶୁଣ୍ ସେ କ'ଣ କହୁଛି। ଆଉ ତାଙ୍କର ଭୋକ ଲାଗିଥିବ, କିଛି ମିଠାକିଣି ତାଙ୍କୁ ଖାଇବାକୁ ଦେ। ପଛରେ ଆନନ୍ଦବଜାରରେ ରୋଷେଇ ହେଲେ ସେଠାରେ ନେଇ ଖୁଆଇବୁ। ମୋତେ ଏକଥା କହିବା ସାଙ୍ଗେ ସାଙ୍ଗେ ଠାକୁର ନିଜେ ସମସ୍ତଙ୍କୁ କହିଲେ, ତାକୁ ମାରନା, ମାରନା। ଠାକୁରଙ୍କ ନିର୍ଦ୍ଦେଶରେ ଲୋମାନେ ମାରିବାରୁ ବିରତ ହେଲେ ମଧ୍ୟ ଅନ୍ତରଭିତରୁ ଆକ୍ରୋଶରେ ଫୁଲି ଉଠୁଥାନ୍ତି। ମୁଁ ଦୁଇ ତିନିଜଣ ଲୋକ ସାହାଯ୍ୟରେ ଉକ୍ତ ଯୁବକ ଲୋକଟିକୁ

ନେଇ ଭଗୀରଥଦା' ଡାକ୍ତରଖାନାର ଏକ ପ୍ରକୋଷ୍ଠରେ ବସିଲି। ତତ୍କାଳୀନ ସତ୍ସଙ୍ଗ ସେକ୍ରେଟାରୀ ଶ୍ରୀଯୁକ୍ତ ଜ୍ଞାନବିକାଶ ଗୋସ୍ୱାମୀ ଆସି ଉପସ୍ଥିତ ହେଲେ। ଘରର କବାଟ ବନ୍ଦ କରି ଦେଇ ଜ୍ଞାନଦା' ସହ ଆମ୍ଭେ ଦୁଇ ତିନିଜଣ ସେଠାରେ ରହିଲୁଁ। ଉକ୍ତ ଲୋକଟିକୁ ପଚାରିଲୁ, ତୁମ୍ଭେ ଏ କାମ କାହିଁକି କଲ? ଶ୍ରୀଶ୍ରୀ ଠାକୁର ତୁମ୍ଭର କ'ଣ କ୍ଷତି କରିଛନ୍ତି? ଲୋକଟି ପ୍ରଥମ କୌଣସି କଥାର ଉତ୍ତର ଦେଲେ ନାହିଁ। ଉଦ୍‌ଭ୍ରାନ୍ତ ଦୃଷ୍ଟିରେ ଆମ୍ଭ ଆଡ଼କୁ ଅନାଇ ରହିଲେ। କିଛି ସମୟ ପରେ ଦେଖାଗଲା ଯେପରି ଟିକି, ଆତ୍ମସ୍ଥ ହେଲେ। ପୁଣି ଆମ୍ଭେ ସେହ ପ୍ରଶ୍ନ କଲୁଁ– କାହିଁକି ତୁମ୍ଭେ ଠାକୁରଙ୍କୁ ମାରିଲ? କ୍ରମାଗତ ପ୍ରଶ୍ନ କରୁ କରୁ ଧୀରେ ଧୀରେ ସେ କହିବାକୁ ଲାଗିଲା– ମୁଁ ଆସାନ୍‌ସୋଲରେ ରେଲୱେରେ ଚାକିରୀ କରୁଛି। ସେଠାରେ ଠାକୁରଙ୍କର ବହୁତ ଶିଷ୍ୟ ଅଛନ୍ତି। ସେମାନେ ତାଙ୍କୁ ଭଗବାନ ବୋଲି କହନ୍ତି। ବହୁତଥର ଅନେକ ଲୋକଙ୍କ ପାଖରୁ ଏହି କଥା ଶୁଣି ଗତ ରାତ୍ରିରେ ଆସାନ୍‌ସୋଲରୁ ବାହାରି ଏଠାକୁ ଆସିଛି ଭଗବାନଙ୍କୁ ଦର୍ଶନ କରିବା ପାଇଁ।

ସକାଳୁ ଠାକୁରଙ୍କ ସାମ୍ନାରେ ବସି ବସି ଯେତେ ତାଙ୍କୁ ଦେଖୁଥିଲି ସେତିକି ମନ ଭିତରଟା କିପରି ଉଦ୍‌ବେଳିତ ହୋଇ ଉଠୁଥିଲା। ବିଭିନ୍ନ ଲୋକ ବିଭିନ୍ନ ପ୍ରଶ୍ନ କରୁଛନ୍ତି ଏବଂ ଠାକୁର ଯାହା ଉତ୍ତର ଦେଉଛନ୍ତି ତାହା ଶୁଣି ଅନ୍ତର ଭିତରୁ କିଏ କହି ଉଠିଲା– ହଁ ହଁ, ଏହି ସେହି ଭଗବାନ। ତାପରେ ମୌଲାନା ସାହେବ ଯେତେବେଳେ ଠାକୁରଙ୍କୁ କହିଗଲେ– ଆପଣହିଁ ହଜରତ୍ ରସୁଲ, ସେତେବେଳେ ମୋର ମନ ଭିତରଟା କିପରି ହୋଇଗଲା। ମନେ ମନେ ଭାବି ଉଠିଲି, ଠାକୁର ତ ଭଗବାନ, ମୁଁ ତ ତାହାର କିଛି ପରୀକ୍ଷା କରି ନାହିଁ। ମୁଁ ତାଙ୍କୁ ପିଟି ଦେଖେ ସେ କ'ଣ କରୁଛନ୍ତି। ଏହି ଚିନ୍ତା ଆସିବା ମାତ୍ରେ ମୁହୂର୍ତ୍ତ ମାତ୍ର ବିଳମ୍ବ ନ କରି ମୁଁ ଯାଇ ଠାକୁରଙ୍କୁ ମାରିବାକୁ ଲାଗିଲି। ମୋର ବୁଦ୍ଧି ଶୁଦ୍ଧି ସବୁ ଲୁପ୍ତ ହୋଇଗଲା। ମୁଁ ଯେଉଁ ଅପରାଧ କରିଛି, ତାହାପାଇଁ ଆପଣମାନେ ମୋତେ ଯାହା ଖୁସି ଶାସ୍ତି ଦିଅନ୍ତୁ, ଯେ କୌଣସି ଶାସ୍ତି ମୁଁ ମୁଣ୍ଡାଡି ନେବି। ଆପଣମାନେ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ଶ୍ରୀଶ୍ରୀ ଠାକୁର ଯେ ଭଗବାନ ସେ ସମ୍ବନ୍ଧରେ ମୋର ଆଉ କିଛି ବୁଝିବାର ଭୁଲ ନାହିଁ। ଆମ୍ଭେମାନେ ସ୍ତମ୍ଭିତ ହୋଇ ତାହାର କଥା ଶୁଣିଲୁ। ଲୋକଟିର କଥା ହୁଏତ ମିଥ୍ୟା ନୁହେଁ, କିନ୍ତୁ କି ସାଙ୍ଘାତିକ ପରୀକ୍ଷା!

ଠାକୁରଙ୍କୁ ହାତରେ ନମାରି ଯଦି ତାଙ୍କୁ ଗୁଳି ମାରି ହତ୍ୟା କରିଦେଇ ଥାନ୍ତେ, କିମ୍ବା ବେକଚିପି ମାରି ପକାଇଥାନ୍ତେ, ତାହାହେଲେ ସେହି ଭଗବାନ ଯୀଶୁର ପୁନଃ ଇତିହାସ ସୃଷ୍ଟି ହୋଇଥାନ୍ତା। ଆମ ପରି ଭଣ୍ଡ ଭକ୍ତର ଦଳ ଛିଡ଼ାହୋଇ ଦେଖୁଥାନ୍ତୁ ଈଶ୍ୱରଙ୍କର ଈଶ୍ୱରତ୍ୱ। ପଛରେ ଲୋକସମକ୍ଷେ କେହି କେହିବା ଆମ୍ଭେ ଭକ୍ତ ବୋଲି ପୂଜିତ ହୋଇଥାନ୍ତୁ। ଅନ୍ତରଟା ଭାରାକ୍ରାନ୍ତ ହୋଇଉଠିଲା। ପୂର୍ବରୁ ଜଳଖିଆ ଦୋକାନରୁ ମିଠା ଇତ୍ୟାଦି ଆଣି ଦିଆ ହୋଇଥିଲା ପୂର୍ବୋକ୍ତ ଲୋକଟିଙ୍କୁ ଖୁଆଇବା ପାଇଁ। ସମ୍ମୁଖରେ ସେହି ସବୁ ମିଷ୍ଟାନ୍ନ ଦେଖି ଲୋକଟି କାନ୍ଦି ପକାଇଲା, କହିଲା, ଠାକୁର ଦୟାଲ, କରୁଣାମୟ, ମୋ ପରି ପାଷାଣ୍ଡ ଯେ କି ତାଙ୍କୁ ଜୀବନରେ ହତ୍ୟା କରିବା ପାଇଁ ଯାଇଥିଲା, ଆଉ ଠାକୁର ସେହି ମୋତେ ହିଁ ଖାଇବାକୁ ଦେଉଛନ୍ତି ମିଠା, ଏ ସ୍ୱୟଂ ପରମପିତା ନହେଲେ ପୁତ୍ରର ଏ ଅପରାଧ ଆଉ କିଏ କ୍ଷମା କରିବେ? ସେ କହିଲେ— ପୂର୍ବରୁ ମୋର ଭୋକ ଲାଗିଥିଲା। ଏବେ ଆଉ ଭୋକ ନାହିଁ। କିନ୍ତୁ ଶୋଷ ଲାଗିଛି; ମୋତେ ପାଣି ଦିଅନ୍ତୁ, ପାଣି ପିଇବି। ଆମ୍ଭେମାନେ କହିଲୁ— ଶ୍ରୀଶ୍ରୀ ଠାକୁର ଆଦେଶ କରିଛନ୍ତି ତୁମ୍ଭଙ୍କୁ ଖୁଆଇବା ପାଇଁ, ତୁମ୍ଭେ ତାଙ୍କ ଆଦେଶ ପାଳନ କରି ଯାହା କିଛି ଆସିଛି ଖାଇନିଅ। ସେ ଆହୁରି କାନ୍ଦିବାକୁ ଲାଗିଲେ ଏବଂ ମୁହଁରେ କହିଲେ— ଠାକୁର! ଆପଣ ଦୟାଲ, ଆପଣଙ୍କ ଆଦେଶ ମୁଁ ପାଳନ କରୁଛି। ଏହା କହି ଖାଇବାକୁ ଆରମ୍ଭ କଲେ। ମୁଁ ଠାକୁରଙ୍କ ପାଖକୁ ଫେରି ଆସିଲି।

ଶ୍ରୀଶ୍ରୀ ଠାକୁର ବ୍ୟସ୍ତ ଭାବରେ ପଚାରିଲେ— ତାଙ୍କୁ ଆଉ କେହି ପିଟି ନାହିଁ ତ? ମୁଁ 'ନା କହି' ବିସ୍ତାରିତ ସବୁ ଘଟଣା ଠାକୁରଙ୍କ ପାଖରେ କହିଲି। ଠାକୁର ସବୁ କଥା ଶୁଣି କହିଲେ— ସେ ଏଠି ରହିଲେ ଦେଖିବୁ ତାଙ୍କୁ ଯେପରି ଲୋକ ମରାପିଟା ନ କରେ। ଆଉ ଯଦି ଚାଲିଯିବାକୁ ଚାହେଁ ତାହାହେଲେ ଆନନ୍ଦବଜାରରେ ଭାତ ହେଲେ ତାଙ୍କୁ ଖୁଆଇଦେବୁ ଯିବା ପୂର୍ବରୁ। ମୁଁ ସମ୍ବିତ ହୋଇ ଅନାଇ ରହିଲି ଠାକୁରଙ୍କ ଆଡ଼କୁ। କିଏ ତୁମ୍ଭେ ଠାକୁର! ମୋର କି ସାଧ୍ୟ ଅଛି ତୁମ୍ଭଙ୍କୁ ଚିହ୍ନିବାକୁ! ଲୋକଟି ଯେଉଁ ଇତିହାସ କହିଲା ତାହା ସତ୍ୟ କି ମିଥ୍ୟା ଜାଣେନାହିଁ, ହୁଏତ ନିଜକୁ ବଞ୍ଚାଇବା ପାଇଁ ଏ ମିଥ୍ୟା କାହାଣୀ ବୁଦ୍ଧି କରି ଆମ୍ଭ ଆଗରେ କହିଲେ, କିମ୍ବା ହୁଏତ ତାଙ୍କର ଅନ୍ତର୍ନିହିତ ସତ୍ୟ ଘଟଣା ବ୍ୟକ୍ତ କରିଛନ୍ତି। ଅନ୍ତର୍ଯ୍ୟାମୀ ତୁମ୍ଭେ,

[୧୭୪]

ତୁମ୍ଭେ ହିଁ ଜାଣିଛ ସବୁ, କିନ୍ତୁ ଜୀବନ ମରଣର ଏଇ ସନ୍ଧିକ୍ଷଣରେ କାହିଁ ତୁମେ ତ ନିଜକୁ ରକ୍ଷା କରିବା ପାଇଁ କିଛିମାତ୍ର ଚେଷ୍ଟା କଲ ନାହିଁ! ଆକ୍ରମଣକାରୀକୁ ମଧ୍ୟ ପ୍ରତିହତ କଲ ନାହିଁ! ତା ପରିବର୍ତ୍ତରେ ତୁମ୍ଭେ ଅନ୍ତରରୁ ଉତ୍କଣ୍ଠିତ ହୋଇ ଉଠିଲ ତୁମ୍ଭର ଆତତାୟୀ ଦେହରେ କେହି ପିଟିଲେ କିପରି ତାକୁ ବାଧିବ, ସେହି ବେଦନା ଉପଲବ୍ଧି କରି ସମସ୍ତଙ୍କୁ ନିରସ୍ତ କରିଦେଲ ଯେପରି ତାଙ୍କୁ କେହି ନମାରେ, ତା ଦେହରେ କେହି ଯେପରି ହାତ ନଦିଏ। ତାହା ସାଙ୍ଗେ ସାଙ୍ଗେ ଖବର ରଖିଛ ତାଙ୍କର କ୍ଷୁଧାତୁର ଦେହର କଥା ମଧ୍ୟ। ଏହିପରି ସମସ୍ତଙ୍କ ଭଲରେ ହିଁ ତୁମ୍ଭେ ବାସ କରୁଛ। ଆମ୍ଭେ ଦେଖି ମଧ୍ୟ ତୁମ୍ଭଙ୍କୁ ଦେଖି ପାରନାହୁଁ, ଚିହ୍ନାଇ ଦେଲେ ମଧ୍ୟ ଚିହ୍ନି ପାରୁନାହୁଁ, ପ୍ରବୃତ୍ତିତାଡ଼ିତ ମନ ଦେଇ ଯେ ଯେପରି ଖୁସି ତୁମ୍ଭଙ୍କୁ ବିଚାର କରି ଚାଲିଛି ଏବଂ ତୁମ୍ଭଙ୍କୁ ବୁଝିଛି ବୋଲି ଗର୍ବ କରୁଛି।

## ॥ ଉଣେଇଶ ॥

ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ଆସି ସମାଜ ସଂସାରରେ ଚାଲିଥିବା ରୀତିନୀତିରେ ଅଭ୍ୟସ୍ତ ମୁଁ ଯାହାକିଛି ଦେଖୁଛି, ଶ୍ରୀଶ୍ରୀ ଠାକୁର ଦୟାକରି ଯାହାକିଛି ଦେଖାଉଛନ୍ତି ତାହା ଏକ ନୂତନ ପୃଥିବୀ, ନୂତନ ସମାଜ ବୋଲି ମୋ ପାଖରେ ପ୍ରତିଭାତ ହେଉଛି। ଦୟାକରି ମୋର ଦୟାଲ ଇଷ୍ଟଦେବତା ମୋତେ ରଖିଛନ୍ତି ତାଙ୍କ ନିକଟରେ। ଆଶ୍ରମ ଭିତରେ ଭଗୀରଥଦା' ଡିସପେନ୍‌ସାରୀ ପାଖ ପକ୍କା କାନ୍ଥ ଦିଆ ଟିଣ୍ଟା ଘରେ ମୁଁ ରହୁଛି ତାଙ୍କରି ନିର୍ଦ୍ଦେଶରେ। ସେତେବେଳେ ଆଶ୍ରମରେ କୌଣସି ପାଣିର ବ୍ୟବସ୍ଥା ନାହିଁ। ଗୋଟିଏ କୂଅ, ସେଥିରେ ବହୁ ଲୋକର ସମାବେଶ। ମୋର ରାତ୍ରି ୪ଟାବେଳେ ଗାଧୋଇବାର ଅଭ୍ୟାସ। ଆଶ୍ରମରେ ପାଣିର ବ୍ୟବସ୍ଥା ନ ଥିବାରୁ ପ୍ରତିଦିନ ରାତ୍ରି ୩.୩୦ଟାରେ ମୁଁ ବାହାରିଯାଏ ଆଶ୍ରମଠାରୁ ୧ ମାଇଲ ଦୂର ପୁରନ୍ଦାସ୍ଥିତ ପ୍ରକାଶନା ଘରକୁ। ସେଠାରେ କୂଅରେ ଗାଧୋଇ ଫେରି ଆସି ଶ୍ରୀଶ୍ରୀ ଠାକୁରଙ୍କ ସମ୍ମୁଖରେ ଧ୍ୟାନରେ ବସିଯାଏ। ମୁଁ ଯେଉଁ ଘରେ ରହୁଛି ସେଠାରେ ଆସାମରୁ ଆଗତ କେତେକ ଗୁରୁଭ୍ରାତ୍ରା ମଧ୍ୟ ରହୁଛନ୍ତି। ସେମାନେ ପ୍ରାୟ ସବୁବେଳେ ଆଶ୍ରମରେ ରହନ୍ତି। ତାଙ୍କ ଭିତରେ ଜଣକର ଗୋଟିଏ ସାଇକେଲ ଥିଲା। ସେ ସାଇକେଲଟି ଆଶ୍ରମର ସାଇକେଲ। ପୂଜ୍ୟପାଦ ବଡ଼ଦା' ତାଙ୍କୁ ଦେଇଛନ୍ତି ଆଶ୍ରମର କର୍ମ ଓ ହାଟବଜାର ଇତ୍ୟାଦି କରିବାପାଇଁ, ଦିନେ ସେହି ସାଇକେଲ ମାଲିକଙ୍କୁ ମୁଁ କହିଲି– ମୁଁ ଶେଷ ରାତ୍ରିରେ ଗୋଧୋଇବା ପାଇଁ ଟିକିଏ ଦୂରକୁ ଯାଉଛି, ଶୀତରାତ୍ରି ୩.୩୦–୪ଟାରେ। ତେଣୁ ମୁଁ ଆପଣଙ୍କ ସାଇକେଲଟି ନେଇଯାଇ ଟିକିଏ ଗାଧୋଇ ଆସିବି। ସେ ରାଜି ହେଲେ, ଏହିପରି ପ୍ରତିଦିନ ମୁଁ ସେହି ସାଇକେଲ ନେଇ ଗାଧୋଇବାକୁ ଯାଉଛି ଏବଂ ଫେରିଆସି ଦେଖେ ସେମାନେ ସମସ୍ତେ ନିଦ୍ରିତ। ମୁଁ ସାଇକେଲଟି ଯଥାସ୍ଥାନେ ରଖି ଲୁଗାପଟା ପାଲଟି ଚାଲିଯାଏ ଶ୍ରୀଶ୍ରୀ ଠାକୁର ଯେଉଁଠି ରାତ୍ରିରେ ରହିନ୍ତି।

ଏହିପରି ପ୍ରାୟ ଦଶବାର ଦିନ ଚାଲିବା ପରେ କେଉଁଠୁ କ'ଣ ହେଲା ଜାଣି ପାରିଲି ନାହିଁ। ହଠାତ୍ ସାଇକେଲର ମାଲିକ ମୋତେ କହିଲେ– ସୁଶୀଲଦା', ଆପଣ ସାଇକେଲ ନେଇ ଗାଧୋଇ ଯିବେ ନାହିଁ। ମୁଁ ପଚାରିଲି, କାହିଁକି? କ'ଣ କଥା? ମୁଁ ରାତ୍ରିରେ ଯେତେବେଳେ ସାଇକେଲ ନେଇ ଯାଉଛି ସେତେବେଳେ

ତ ସାଇକେଲର କୌଣସି କାମ ନଥାଏ। ଉକ୍ତ ଦାଦା କହିଲେ, ବଡ଼ଦା' ମନା କରିଛନ୍ତି ଆପଣଙ୍କୁ ସାଇକେଲ ଦେବାପାଇଁ। ଦାଦାଟିର ମୁହଁରୁ ଏକଥା ଶୁଣି ମୋର ମନ ପ୍ରତ୍ୟୟ ମାନିଲା ନାହିଁ। ବିଶ୍ୱାସ କରି ପାରିଲି ନାହିଁ ତାଙ୍କର କଥା, ମୁଁ କହିଲି– ସାଇକେଲ ଯଦି ଆପଣଙ୍କର ଦେବାର ଇଚ୍ଛା ନଥାଏ, ସେ କଥା କହିବେ ଯେ ମୋର ଦେବାର ଇଚ୍ଛା ନାହିଁ। ମିଛଟାରେ କାହିଁକି ବଡ଼ଦା'ର ନାମ କହୁଛନ୍ତି? ବଡ଼ଦା' କଦାପି ଏକଥା କହି ନଥିବେ। ସେ ଜୋର କରି କହିଲେ, ହଁ, ବଡ଼ଦା' ଏକଥା କହିଛନ୍ତି। ମୋତେ ଡାକି କହିଛନ୍ତି, ସୁଶୀଲଦା' ପ୍ରତିଦିନ ସାଇକେଲ ନେଇ ଯାଉଛି। ମୁଁ ପସନ୍ଦ କରେ ନାହିଁ ଯେ ତାଙ୍କୁ ସାଇକେଲ ଦିଆଯାଉ। ତୁମକୁ ମୁଁ ସାଇକେଲ ଦେଇଛି ଆଶ୍ରମ କର୍ମ ପାଇଁ, ସେ ସାଇକେଲ ଆଉ କାହାକୁ ଦେବା ମୁଁ ପସନ୍ଦ କରେ ନାହିଁ। ସେ ଦାଦାଙ୍କ ମୁହଁରୁ ଏକଥା ଶୁଣି ମଧ୍ୟ ମୋର ବିଶ୍ୱାସ ହେଲାନାହିଁ ଯେ ବଡ଼ଦା' ସତ୍ୟ ସତ୍ୟ ଏପରି କଥା କହିପାରନ୍ତି। ମୁଁ ତାଙ୍କୁ କହିଲି, ବାରମ୍ବାର କାହିଁକି ବଡ଼ଦା'ଙ୍କର ନାମ ଉଲ୍ଲେଖ କରୁଛନ୍ତି? ଶ୍ରୀଶ୍ରୀ ଠାକୁର ବା ବଡ଼ଦା', ଛୋଟଦା', ଏମାନଙ୍କର କାହାରି ନାମ କ୍ଷୁଦ୍ର ସ୍ୱାର୍ଥ ପଛରେ ବ୍ୟବହାର ନ କରିବା ହିଁ ଭଲ। ଶ୍ରୀଶ୍ରୀ ଠାକୁରଙ୍କ କଥା ବାଦ୍ ଦେଲେ ବଡ଼ଦା', ଛୋଟଦା' ଏମାନଙ୍କୁ ଯେତେଦୂର ମୁଁ ଜାଣିଛି, ସେମାନେ ଏପରି କଥା କହିବେ ନାହିଁ।

ବିଶେଷ କରି ବଡ଼ଦା'ଙ୍କୁ ମୁଁ ଦେଖିଛି ଲୋକଙ୍କର ସେବା କରିବାପାଇଁ, ଲୋକଙ୍କର ଦୁଃଖମୋଚନ କରିବା ପାଇଁ ସେ ଆପ୍ରାଣ ଚେଷ୍ଟା କରନ୍ତି। କାହାର ପ୍ରୟୋଜନ ହେଲେ ସାମାନ୍ୟ ବାଇସାଇକେଲ ତ ଦୂରରେ ଥାଉ, ମଟରକାର୍ ପର୍ଯ୍ୟନ୍ତ ଆଗେଇ ଦିଅନ୍ତି, ଯାହା ପଛରେ ବହୁତ ଖର୍ଚ୍ଚ। ପେଟ୍ରୋଲ, ମୋବିଲ୍ ଡ୍ରାଇଭର୍ ଏସବୁ ଖର୍ଚ୍ଚ କରି ମଧ୍ୟ ମନୁଷ୍ୟର ମଙ୍ଗଳପାଇଁ ବଡ଼ଦା' ଗାଡ଼ି ଦେଇ ଦିଅନ୍ତି। ଆଉ ସେହି ବଡ଼ଦା' ଗୋଟିଏ ସାଇକେଲ ପାଇଁ, ଯାହାକୁ ମୁଁ ଦିନ ଭିତରେ ଥରେ ମାତ୍ର ଚଢ଼ୁଛି, ମୋତେ ମନା କରିଛନ୍ତି, ଏହା ମୋର ବିଶ୍ୱାସ ହୁଏନା। କିନ୍ତୁ ଯାହାହେଉ, ଏହି ସାଇକେଲ ବଡ଼ଦା' ଆପଣଙ୍କୁ ଦେଇଛନ୍ତି ଆଶ୍ରମର କର୍ମ ନିମନ୍ତେ। ଆଜିଠାରୁ ଏହି ସାଇକେଲ ଆଉ ମୁଁ ଧରିବି ନାହିଁ। କିନ୍ତୁ ଗୋଟିଏ ଅନୁରୋଧ କରୁଛି, କୌଣସି ସାମାନ୍ୟ କଥାରେ ଇଷ୍ଟପୁତ୍ରମାନଙ୍କର ନାମବ୍ୟବହାର ନକରିବାହିଁ ବୋଧହୁଏ ଆମ୍ଭମାନଙ୍କର କର୍ତ୍ତବ୍ୟ। ଏହା କହି ମୁଁ ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଚାଲିଗଲି।

ଦିନ ୮ଟାବେଳେ ଠାକୁର ଘରୁ ବାହାରିବା ସାଥେ ସାଥେ ଜଣେ ଲୋକ ଆସି ମୋତେ କହିଲେ, ସୁଶୀଲଦା' ଆପଣ ଶର୍ମାଦା'ଙ୍କୁ କ'ଣ କହିଛନ୍ତି, ସେ ଯାଇ ଆପଣଙ୍କ ବିରୁଦ୍ଧରେ ବଡ଼ଦା' ଆଗରେ ନାଲିଶ୍ ଜଣାଇଛନ୍ତି। ମୁଁ ତାଙ୍କୁ କହିଲି, ନା, ସେପରି ବିଶେଷ କିଛି କଥା ହୋଇନାହିଁ। ସାଇକେଲ ସମ୍ବନ୍ଧରେ ସାମାନ୍ୟ କିଛି କଥା ହୋଇଛି। କିନ୍ତୁ ମୁଁ ତ କହିଦେଇଛି ମୁଁ ଆଉ ସାଇକେଲ ନେବି ନାହିଁ। ଏହା ଭିତରେ ବଡ଼ଦା' ପାଖରେ ନାଲିଶ୍ ଜଣାଇବାର କ'ଣ ଅଛି? ଉକ୍ତ ଦାଦାଟି କହିଲେ– ନା, ନା, ସେ କଥା ନୁହେଁ। ଆପଣ ଏହି ସାଇକେଲ ଉପଲକ୍ଷ କରି ବଡ଼ଦା'ଙ୍କୁ କୁଆଡ଼େ ଯାହା ଇଚ୍ଛା ତାହା ଗାଳି ଦେଇଛନ୍ତି, ଆପଣ ତାଙ୍କୁ କହିଛନ୍ତି, ମୁଁ ସାଇକେଲ ଚଢୁଛି ବୋଲି ବଡ଼ଦା'ଙ୍କ ଛାତିରେ ଏତେ ବାଧୁଛି, ଆଉ ଆମ୍ଭମାନଙ୍କର ଦଶଜଣଙ୍କର ପଇସାରେ ସେ ବଡ଼ଲୋକି କରି ମଟରଗାଡ଼ି ଚଢ଼ି ବୁଲୁଛନ୍ତି। ସେ କ'ଣ ବୁଝିବ ମନୁଷ୍ୟର ଅସୁବିଧା ଓ ଦୁଃଖର କଥା, ମୁଁ ଏକଥା ଶୁଣି ସ୍ତମ୍ଭିତ ହୋଇଗଲି। ଯାହାର ମୂଳରୁ କିଛି ନାହିଁ, ସେପରି କଥା ବନେଇ ଚୁନେଇ ଶର୍ମାଦା' କିପରି ଇଷ୍ଟପୁତ୍ର ତଥା ପୂଜ୍ୟପାଦ ବଡ଼ଦା' ଆଗରେ କହିଲେ? ଯେଉଁ ଲୋକ ମୋତେ ଆସି ଏକଥା କହିଲେ, ସେ ଆହୁରି କହିଲେ, ମୋ ସାମ୍ନାରେ ଶର୍ମାଦା' ଯାଇ ବଡ଼ଦା'ଙ୍କୁ ଏକଥା କହିବା ପରେ ବଡ଼ଦା' ମନରେ ବ୍ୟଥା ପାଇଲେ। ସାଙ୍ଗେ ସାଙ୍ଗେ କହିଲେ, ସୁଶୀଲଦା' ଠିକ୍ କହିଛନ୍ତି। ଆମ୍ଭେ ଦଶଜଣର ପଇସାରେ ଚାଲୁଛୁ। ପାଣିପରି ପେଟ୍ରୋଲ ଖର୍ଚ୍ଚ କରୁଛୁ। ଫୁର୍ତ୍ତି କରି ବୁଲୁଛୁ। ଏହାତ ମିଛ ନୁହେଁ। ସୁଶୀଲଦା' ଯାହା କହିଛନ୍ତି ତାହା ଖାଲି ତାଙ୍କର ମୁହଁର କଥା ନୁହେଁ, ବହୁ ଲୋକ ଏପରି କହନ୍ତି। ସେଥିରେ ଆମ୍ଭର ଦୁଃଖ କରିବାର କିଛି ନାହିଁ। ଆଗନ୍ତୁକ ଦାଦାଟି ବଡ଼ଦା'ଙ୍କୁ କୁଆଡ଼େ କହିଲେ, ନା, ନା ସୁଶୀଲଦା' ଏକଥା କହି ନଥିବେ। ମୋର ବିଶ୍ୱାସ ହେଉନାହିଁ।

ସାଙ୍ଗେ ସାଙ୍ଗେ ବଡ଼ଦା' କହିଲେ– ସୁଶୀଲଦା' ନ କହିଲେ ଶର୍ମା ଆସି କଦାପି ମୋ ପାଖରେ ମିଛ କହି ନଥାନ୍ତା। ସେ ଆଶ୍ରମରେ ବହୁତ ଦିନ ଅଛି। ମୋ ପାଖରେ ମିଛ କହିବ ନାହିଁ। ବଡ଼ଦା' ମୁହଁରୁ ଏକଥା ଶୁଣି ଦାଦାଟି ମୋ ପାଖକୁ ଦୌଡ଼ି ଆସିଛନ୍ତି ବୋଲି ସେ କହିଲେ, ମୋର ମନଟା ଖରାପ ହୋଇଗଲା,. ସାଧନା କରିବାକୁ ଆସି ଏ କି ଭୁଲ ବୁଝାମଣା

ମଧ୍ୟରେ ଆସି ପଶିଲି? ଆଶ୍ରମରେ ଯେଉଁମାନେ ସବୁ ବାହାରୁ ଆସିଛନ୍ତି ସାଧନା କରିବାପାଇଁ, ଶର୍ମାଦା' ମଧ୍ୟ ତାଙ୍କ ପରି ଜଣେ। ସେ କିପରି ଏତେ ମିଛ କଥା ସେହି ଗୁରୁପୁତ୍ର ତଥା ବଡ଼ଦା' ଆଗରେ କହିଲେ? ମୁଁ କାଳବିଳମ୍ବ ନକରି ପୂଜ୍ୟପାଦ ବଡ଼ଦା' ଘରେ ଯାଇ ଉପସ୍ଥିତ ହେଲି। ବଡ଼ଦା' ବାରନ୍ଦାରେ ଖଟ ପକାଇ ତା ଉପରେ ବସିଛନ୍ତି। ମୁଁ ପ୍ରଣାମ କରି ଉଠିବା ସାଙ୍ଗେ ସାଙ୍ଗେ ବଡ଼ଦା' ପଚାରିଲେ, କି ଖବର ସୁଶୀଳଦା'? ମୁଁ କହିଲି, ବଡ଼ଦା', ମୁଁ ଶୁଣି ପାରିଲି ଆପଣ ମୋର ବ୍ୟବହାରରେ ଦୁଃଖ ପାଇଛନ୍ତି, ଶମାଦା' କୁଆଡ଼େ ଆସି ଆପଣଙ୍କ ପାଖରେ କହିଛନ୍ତି ଯେ, ମୁଁ ଆପଣଙ୍କ ବିରୁଦ୍ଧରେ ବହୁତ କଥା କହିଛି, କିନ୍ତୁ ତାହା ସତ୍ୟ ନୁହେଁ। ପ୍ରକୃତ ଘଟଣା କ'ଣ ହୋଇଥିଲା ତାହା ଜଣାଇବା ପାଇଁ ମୁଁ ଆସିଛି, ବଡ଼ଦା' କହିଲେ— ମୋର ଶୁଣିବାର କିଛି ପ୍ରାୟୋଜନ ନାହିଁ, ମୁଁ ସେଥିରେ କିଛି ମନେ କରି ନାହିଁ। ମୁଁ କହିଲି, ଜଣେ ଲୋକ ଯାଇ ମୋତେ କହିଲେ ଆପଣ କୁଆଡ଼େ ଦୁଃଖ ବା ଆକ୍ଷେପ କରିଛନ୍ତି ଏହା କହି ଯେ, ସୁଶୀଳଦା' ଯଦି କହିଥାଏ ମୁଁ ସତ୍‌ସଙ୍ଗର ଗାଡ଼ି, ପେଟ୍ରୋଲ ଏବଂ ସବୁ କିଛି ଅପବ୍ୟବହାର କରୁଛି, ପାଣି ପରି ଟଙ୍କା ଖର୍ଚ୍ଚ କରୁଛି, ପେଟ୍ରୋଲ ପୋଡୁଛି ତେବେ ସେ ଠିକ୍ କହିଛନ୍ତି, କିନ୍ତୁ ବାସ୍ତବରେ ମୁଁ ତାହା କହିନାହିଁ। ପ୍ରକୃତ ଯାହାଯାହା ଘଟିଥିଲା, ମୁଁ ବିସ୍ତାରିତ ଭାବରେ ତାହା ବଡ଼ଦା' ଆଗରେ କହିଲି, ବଡ଼ଦା' ସବୁ ଶୁଣି କହିଲେ— ଆପଣ ଠିକ୍ କହିଛନ୍ତି, ମୁଁ ସାଇକେଲ ଆପଣଙ୍କୁ ଦେବାକୁ ମନା କରିନାହିଁ ବା ମୁଁ ଜାଣେ ନାହିଁ ଯେ ଆପଣ ସାଇକେଲ ନେଇ ଗାଧୋଇବାକୁ ଯାଉଛନ୍ତି।

ମୁଁ ବେଦନାହତ ଅନ୍ତରରେ ବଡ଼ଦା'ଙ୍କୁ କହିଲି— ବଡ଼ଦା', ଯାହା ସତ୍ୟ ତାହା ଆପଣଙ୍କ ପାଖରେ ମୁଁ ସବୁ କହିଗଲି। ଦୟାକରି ବିଶ୍ୱାସ କରନ୍ତୁ। ଏହା କହି ମୁଁ ବଡ଼ଦା'ଙ୍କୁ ପ୍ରଣାମ କରି ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଚାଲି ଆସିଲି। ମନଟା ଖୁବ୍ ଖରାପ, ଭାବି ଚାଲିଛି, କେଉଁଠି ମୁଁ ଭୁଲ କଲି? କାହିଁକି ଏପରି ପରିସ୍ଥିତି ସୃଷ୍ଟି ହେଲା? ଅନେକ ଭାବି ଭାବି ମନକୁ ସାନ୍ତ୍ୱନା ଦେଲି ଏହା କହି— ପ୍ରଥମ ଭୁଲ ହେଉଛି ସାଧନା ଜୀବନରେ ଗୁରୁଙ୍କ ନିକଟରେ ଆସି ନିଜର ଶ୍ରମଲାଘବ କରିବା ପାଇଁ ଶମାଦା'ଙ୍କୁ ସାଇକେଲ ମାଗି। ପୁଣି ୨ୟ ଥର ଭୁଲ କଲି, ଶମାଦା' ମନା କରିବା ସାଥେ ସାଥେ ନିର୍ବିଚାରରେ

ସେ କଥା ନ ମାନି ତାଙ୍କ ସାଙ୍ଗରେ ଯୁକ୍ତିତ କରିଛି। ତାଙ୍କୁ ବୁଝାଇବାକୁ ଚେଷ୍ଟା କରିଛି ଇଷ୍ଟପୁତ୍ରମାନେ ଆମ ଜୀବନରେ କେତେବଡ଼ ବୋଲି। ଶର୍ମାଦା' ମୋ ପରି ନବାଗତ ଠାରୁ ଏହି ତତ୍ତ୍ୱ କଥାଶୁଣି ଅନ୍ତର ଭିତରେ ମୋ ଉପରେ ରାଗିଛନ୍ତି। ସେ ଭାବିଛନ୍ତି–ତୁମେ ଛୁଆଲୋକ, ଆସି ମୋତେ ଶିଖାଉଛ ଯେ ଶ୍ରୀଶ୍ରୀ ଠାକୁର ଓ ତାଙ୍କର ପୁତ୍ର ବଡ଼ଦା', ଛୋଟଦା' ଏମାନଙ୍କୁ ନେଇ କିପରି ଚାଲିବାକୁ ହେବ ଏବଂ ତାଙ୍କ ସମ୍ବନ୍ଧରେ କିପରି କଥା କହିବାକୁ ହେବ।

ତାଙ୍କର ଆହତ ଅହଂର ପ୍ରତିଶୋଧ ନେବାପାଇଁ ବଡ଼ଦା' ଆଗରେ ଯାଇ ଏପରି ମିଥ୍ୟା କାହାଣୀ କହି ନାଲିଶ ଜଣାଇଛନ୍ତି। ମୂଳତଃ ଏହାପାଇଁ ମୁଁ ଦାୟୀ। ମୂଳରୁ ତାଙ୍କୁ କିଛି ନକହି ସେ ଯାହା କହିଥିଲେ ତାହାହିଁ ମୋର ବିନା ବାକ୍ୟବ୍ୟୟରେ ପାଳନ କରିବା ଉଚିତ୍ ଥିଲା। ଶ୍ରୀଶ୍ରୀ ଠାକୁର ଗାଧୋଇବାକୁ ଗଲେ। ମୁଁ ମ୍ରିୟମାଣ ଅନ୍ତଃକରଣରେ ଫେରି ଆସିଲି ମୋର ରହିବା ଘରକୁ। ମନେ ମନେ ସଂକଳ୍ପ କଲି– ମୋର ଏହି ଅବାଞ୍ଛିତ ବ୍ୟବହାର ପାଇଁ ଆତ୍ମଶୁଦ୍ଧି ନିମନ୍ତେ ଉପବାସ ରହିବା ଉଚିତ। ମୁଁ ଆଜି ଜଳସ୍ପର୍ଶ କରିବିନାହିଁ। ମୋ ପାଇଁ ମୋର ଅଗ୍ରଜ ଗୁରୁପୁତ୍ର ଅନ୍ତରରେ ଆଘାତ ପାଇଛନ୍ତି। ଏହି ଦୋଷର କ୍ଷମା ନାହିଁ। ଏହାକୁ ଉପେକ୍ଷା କରିଲେ ମୋର ସାଧନା ଜୀବନ କଳଙ୍କିତ ହେବ। ମନେ ମନେ ଏକଥା ଆସିବା ସଙ୍ଗେ ସଙ୍ଗେ ମୁଁ ଉପବାସ କରିବାର ସଂକଳ୍ପ ନେଲି। ଆନନ୍ଦବଜାରକୁ ଖାଇବାକୁ ଗଲି ନାହିଁ। ପ୍ରତିଦିନ ଠାକୁର ଭୋଗ ପରେ ମୁଁ ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ ଯାଏ। ସେଦିନ ସେଠାକୁ ମଧ୍ୟ ଗଲି ନାହିଁ। ଚୁପ୍ ହୋଇ ଘରେ ବସି ନାମ କରିବାକୁ ଲାଗିଲି ଓ ଅନ୍ତରର କଥା ଠାକୁରଙ୍କୁ ଜଣାଇଲି, ଠାକୁର! ଆପଣ ଏହି ଦୁର୍ବଳ ସନ୍ତାନକୁ ସାହାଯ୍ୟ କରନ୍ତୁ। ମୁଁ ଯେପରି ଏପରି ଭୁଲ ଆଉ ନକରେ। ଦିନ ୩ଟା ବାଜି ଯାଇଛି। ଶ୍ରୀଶ୍ରୀ ଠାକୁର ଉଠି ଗୋଲତାମ୍ବୁରେ ବସିଛନ୍ତି। ମୁଁ ଧିରେ ଧିରେ ଯାଇ ଠାକୁରଙ୍କ ପାଖରେ ଉପସ୍ଥିତ ହେଲି। ଠାକୁରଙ୍କୁ ପ୍ରଣାମ କଲି। ଠାକୁର ଆଜି ଆଉ ମୋତେ କିଛି କହିଲେ ନାହିଁ। ଠାକୁର ସମ୍ମୁଖସ୍ଥ ବୃଦ୍ଧା ମାୟା ମାସୀମା'କୁ କହିଲେ, ଭେଲକୁଲମା! ସୁଶୀଲକୁ ତୁମର ରୋଷେଇ କରିଥିବା ଇଞ୍ଚଡ଼ (କଞ୍ଚା ପଣସ) ତରକାରୀ ଦେଇ ଥିଲ ତ? ମାୟା ମାସୀମା' ଠାକୁରଙ୍କୁ କହିଲେ, ହଁ ହଁ ଗୋପାଳ ତୁମ କଥାରେ ମୁଁ

ଆନନ୍ଦ ବଜାରରେ ସୁଶୀଲପାଇଁ ଗୋଟିଏ ବାଟିରେ ଭର୍ତ୍ତିକରି ଇଞ୍ଚଡ଼ ତରକାରୀ ନିଜେ ଦେଇ ଆସିଛି। ଏହାପରେ ମାୟା ମାସୀମା' ମୋ ଆଡ଼କୁ ଅନାଇ ମୋତେ ପଚାରିଲେ ସୁଶୀଲ, ତୁ କୁଆଡ଼େ ଥିଲୁ ? ଆଜି ଦ୍ୱିପ୍ରହରରେ ଆନନ୍ଦବଜାରକୁ ଖାଇବାକୁ ଯାଇନାହୁଁ ? ମୁଁ ଏବେ ଆସିଲାବେଳେ ମଧ୍ୟ ଖବର ନେଇ ଆସିଲି ତୁ ଆନନ୍ଦବଜାରକୁ ଯାଇନାହୁଁ। ଶ୍ରୀଶ୍ରୀ ଠାକୁର ମୋ ଆଡ଼କୁ ଅନାଇ ସଙ୍ଗେ ସଙ୍ଗେ କହିଲେ, ତୁ ଆଜି ଖାଇନୁ ? ମୁଁ ମୁଣ୍ଡନତ କରି ଠାକୁରଙ୍କୁ କହିଲି, ନା, ଆଜି ମୋର ଖାଇବାର ଇଚ୍ଛା ନାହିଁ। ଶ୍ରୀଶ୍ରୀ ଠାକୁର କହିଲେ, ଇଚ୍ଛା ନାହିଁ କାହିଁକି ? ଦେହ ଖରାପ ହୋଇ ନାହିଁତ ? ମୋର ଗାଧୋଇବା ଆଗରୁ ଉଠି ଚାଲିଗଲୁ। ଆଉ ତୋତେ ଦେଖି ପାରିଲି ନାହିଁ। ଦେହ ଭଲ ଅଛି ତ ? ମୁଁ ଶ୍ରୀଶ୍ରୀ ଠାକୁରଙ୍କୁ କହିଲି, ଆପଣଙ୍କ ଦୟାରେ ମୋ ଦେହ ସୁସ୍ଥହିଁ ଅଛି। କିନ୍ତୁ ମୁଁ ଆଜି ଖାଇବି ନାହିଁ ବୋଲି ମନେ ମନେ ଭାବିଛି।

ପୁଣି ଠାକୁର କହିଲେ, କାହିଁକି ମନେ ମନେ ଏକଥା ଭାବୁଛ ? ଏଠାରେ ରହି ଇଷ୍ଟ ଆଦେଶ ବିନା ଉପବାସ କରିବା ଭଲ ନୁହେଁ। ତୋର କ'ଣ ହୋଇଛି କହ ? ମୁଁ ଅତି ଦୁଃଖିତ ଅନ୍ତରରେ ଠାକୁରଙ୍କ ପାଖରେ ସବୁ କଥା ବିସ୍ତାରିତ ଭାବରେ କହିଲି। ଦୟାଲ ଠାକୁର ମୋର, ମୋର ସବୁ କଥା ଧିରସ୍ଥିର ଭାବରେ ଶୁଣି ମୋତେ କହିଲେ ଯାଓ, ଆନନ୍ଦବଜାରରେ ତୁମ ପାଇଁ ଭାତରଖା ହୋଇଛି, ଖାଇ ଆସ, ମୁଁ ଶ୍ରୀଶ୍ରୀ ଠାକୁରଙ୍କୁ କହିଲି, ଠାକୁର ! ମୋର ଆତ୍ମଶୁଦ୍ଧି ପାଇଁ କ'ଣ ଏ ଉପବାସର ପ୍ରୟୋଜନ ନାହିଁ ? ଶ୍ରୀଶ୍ରୀ ଠାକୁର କହିଲେ, ତୁ ତ କିଛି ଦୋଷ କରିନୁ। ତେବେ ଆଉ ପ୍ରାୟଶ୍ଚିତ କ'ଣ ପାଇଁ ? ବଡ଼ଖୋକାକୁ ତୁ ତ କିଛି ଆଘାତ କରିନୁ, ତାଙ୍କ ବିରୁଦ୍ଧରେ କିଛି କହିନୁ ଏବଂ ତାହାପରେ ତୁ ନିଜେ ଯାଇ ତାଙ୍କ ପାଖରେ ସବୁ ସତ୍ୟକଥା କହିଛୁ, ତୁ କାହିଁକି ପ୍ରାୟଶ୍ଚିତ କରିବୁ ? ଯା, ଆନନ୍ଦବଜାରରେ ଯାଇ ଖାଇଆ, ଖାଇସାରି ଏଠାକୁ ଆସିବୁ। ଆଉ କେଉଁଠି ଯିବୁନାହିଁ।

ମୁଁ ଠାକୁରଙ୍କୁ ପ୍ରଣାମ କରି ଆନନ୍ଦବଜାର ଉଦ୍ଦେଶ୍ୟରେ ବାହାରି ଗଲି। ଯିବା ସମୟରେ ଭାବୁଛି, ଠାକୁର ! ତୁମେ ନିଜକୁ ଲୁଚାଇ ରଖୁଛ। ଜାଣିଛ ସବୁ, କିନ୍ତୁ ରହୁଛ ଏପରି ଯେପରି କିଛି ଜାଣି ନାହଁ। ମୁଁ ତ ତୁମକୁ କିଛି କହିନାହିଁ, ଆଉ ଏକଥା ତୁମ ଆଗରେ କହିବିନାହିଁ ବୋଲି ମନେ

ମନେ ସଂକଳ୍ପବଦ୍ଧ ହୋଇଥିଲି। କିନ୍ତୁ ଯାହା କେବେ ଘଟିନାହିଁ ଅର୍ଥାତ୍—ପ୍ରତିଦିନ ମୁଁ ଆନନ୍ଦ ବଜାରରେ ଖାଉଛି, କାହିଁ କେବେ ତ ମୋ ପାଇଁ କିଛି ଆନନ୍ଦ ବଜାରକୁ ପଠାଇ ନାହିଁ। ଆଜି କାହିଁକି ମାୟା ମାସୀମା'ଙ୍କୁ ନିର୍ଦ୍ଦେଶ କରିଛ ମୋ ପାଇଁ ତରକାରୀ ରୋଷେଇ କରି ଆନନ୍ଦବଜାରରେ ଦେବାପାଇଁ, ମୁଁ ଯେଉଁ କଥା ଲୁଚାଇ ଅଭିମାନରେ ନିଜର କ୍ଷୁଦ୍ର ବୁଦ୍ଧି ଦ୍ୱାରା ଶୁଭ ବିବେଚନା କରି ସେଇ ପଥରେ ଚାଲିବାର ସଂକଳ୍ପ ନେଇଥିଲି, ତୁମେ ଅନ୍ତର୍ଯ୍ୟାମୀ, ମୋର ସେଇ ସଂକଳ୍ପ କରିବାର ସଙ୍ଗେ ସଙ୍ଗେ ତୁମେ ଜାଣି ନେଇଛ ସେହି କଥା। ଆଉ ତାହାରି ସଙ୍ଗେ ସଙ୍ଗେ ଏପରି ବ୍ୟବସ୍ଥା କରି ରଖିଛ ଯେପରିକି ମୁଁ ସେକଥା ଗୋପନ କରି ରଖି ପାରିବି ନାହିଁ। ଏପରି ମୋର ମନ ଭିତରେ ଜମି ଥିବା ଜଞ୍ଜାଳକୁ ତୁମେ ଟାଣି ବାହାର କରି ସଫା କରିଦେଉଛ। ମୁଁ ବୃତ୍ତି ପ୍ରବୃତ୍ତି ପଛରେ ବୁଲିବାର ଚେଷ୍ଟା କରୁଛି ଆଉ ତୁମେ ସେଉଠୁ ଧରି ଟାଣି ଆଣି ମୋତେ ରକ୍ଷା କରିବାକୁ ଲାଗିଛ ପ୍ରତି ମୁହୂର୍ତ୍ତରେ।

ଆନନ୍ଦ ବଜାରରେ ଖାଇବାକୁ ବସି ମାୟା ମାସୀମା'ର ରୋଷେଇ କରିଥିବା ସେହି ଇଞ୍ଚୁଡ଼ ତରକାରୀ ଏତେ ଭଲ ଲାଗିଲା ଯେ କହିବାର ନୁହେଁ। ଏତେ ଭଲ ରୋଷେଇ, ଏହା କ'ଣ ରୋଷେଇର ଗୁଣ, ନା ଶ୍ରୀଶ୍ରୀ ଠାକୁରଙ୍କର ଆଶୀର୍ବାଦର ଅମୃତ ଧାରା। ଆକଣ୍ଠ ଭୋଜନ କରିବା ପରେ ମଧ୍ୟ ଇଚ୍ଛା ହେଉଥିଲା ଆହୁରି ଖାଇବା ପାଇଁ। ଆହାରାନ୍ତେ ଯଥାରୀତି ଫେରି ଆସିଲି ଶ୍ରୀଶ୍ରୀ ଠାକୁରଙ୍କ ପାଖକୁ। ଠାକୁର ପଚାରିଲେ— କେମିତି ଖାଇଲୁ ? ମୁଁ କହିଲି— ଠାକୁର ! ଅପୂର୍ବ ଏତେ ସୁନ୍ଦର, ଏତେ ଭଲ ତରକାରୀ ମୁଁ କେବେ ଖାଇନାହିଁ। ଶ୍ରୀଶ୍ରୀ ଠାକୁର ଇସାରାରେ ମାୟା ମାସୀମା'ଙ୍କୁ ଦେଖାଇ କହିଲେ— ଭେଲକୁଲ ମା'ର ରୋଷେଇ ଯେ ଥରେ ଖାଇଛି ସେ ଆଉ ଭୁଲି ପାରିବ ନାହିଁ। ମାୟା ମାସୀମା' ମୋତେ କହିଲେ, ଆଜିକାର ତରକାରୀ ମୋର ରୋଷେଇ କହିଲେ ଭୁଲ ହେବ। ସକାଳ ୮ଟା ବେଳେ ମୁଁ ଏଠାରୁ ଉଠି ଯେତେବେଳେ ଘରକୁ ଯାଉଛି ଠାକୁର ମୋତେ ଡାକି କହିଲେ, ଭେଲକୁଲ ମା' ମୋର ଆଜି ଇଞ୍ଚୁଡ଼ ଖାଇବାର ଇଚ୍ଛା ହେଉଛି। ଆଉ ସେହି ଇଞ୍ଚୁଡ଼ ତରକାରୀ ତୁମେ ରୋଷେଇ କରିଦେବ ଖୁବ୍ ଭଲ କରି, ଦହି ଇତ୍ୟାଦି ପକାଇ ଯେପରି ଥରେ ଖାଇଲେ କେହି ଭୁଲି ପାରିବେ ନାହିଁ। ମାୟା ମାସୀମା' ମୋତେ କହିଲେ, ଠାକୁରଙ୍କର ଏକଥା ଶୁଣି ମୁଁ ଇଞ୍ଚୁଡ଼ ତରକାରୀ

ରୋଷେଇ କରିଲି ଯଥାରୀତି ଯେ ଭାବରେ ମୁଁ ରୋଷେଇ କରେ। ମନେ ମନେ ଭାବୁଥାଏ, ଠାକୁରଙ୍କୁ ଏହା ଭଲ ଲାଗିବତ ? ସେହି ଇଞ୍ଚୁଡ଼ ତରକାରୀ ଆଣି ଠାକୁରଙ୍କର ଭୋଗ ସମୟରେ ଦେଲି। ଠାକୁର ତରକାରୀ ଖାଇ ଖୁବ୍ ଖୁସି ହୋଇ ଉଠିଲେ ଓ କହିଲେ ଏହି ତରକାରୀରୁ ଗୋଟିଏ ବାଟି ତରକାରୀ ସୁଶୀଲ ପାଇଁ ଆନନ୍ଦବଜାରରେ ଦେଇଆସ। ଆଉ ନଗେନକୁ କହିଦେଇ ଆସ, ସୁଶୀଲ ଖାଇବାକୁ ଆସିଲେ ତାଙ୍କୁ ଏହି ତରକାରୀ ଦେବ। ମୁଁ ମାସୀମା'ର ପ୍ରତିଟି କଥା କାନପାତି ଶୁଣୁଛି। ଆଖି ରହିଛି ସମ୍ମୁଖରେ ବସିଥିବା ମୋର ଗୁରୁ ଶ୍ରୀଶ୍ରୀ ଠାକୁରଙ୍କ ଉପରେ। ଠାକୁର ସବୁ କଥା ଶୁଣୁଛନ୍ତି କି ନାହିଁ ବୁଝି ପାରୁ ନାହିଁ। ତାଙ୍କର ଦେହଟି ସେଠି ପଡ଼ି ରହିଲେ ମଧ୍ୟ ସେ ଦେହ ଭିତରେ ତ ତାଙ୍କର ଉପସ୍ଥିତି ମୁଁ ଜାଣିପାରୁ ନାହିଁ, ଧରି ପାରୁ ନାହିଁ। ଖାଇବାକୁ ଯିବା ସମୟରେ ଯେଉଁ କଥା ଚିନ୍ତା କରି ଯାଇଥିଲି ଯେ ଆଜି କାହିଁକି ମୋ ପାଇଁ ତରକାରୀ ପଠାହେଲା ଆନନ୍ଦବଜାରରେ। ଏବେ ଏହି ମୁହୂର୍ତ୍ତରେ ତାହା ମୋ ପାଖରେ ଧରା ପଡ଼ିଲା। ଆଜିର ସବୁ ଘଟଣା ଠାକୁର ପୂର୍ବରୁ ଜାଣିଛନ୍ତି। ସେଥିପାଇଁ ବଡ଼ଦା'ଙ୍କ ପାଖକୁ ଯିବାପାଇଁ ମୁଁ ଯେଉଁ ମୁହୂର୍ତ୍ତରେ ଘରୁ ବାହାରି ଯାଇଛି ଠିକ୍ ସେହି ସମୟରେ ଠାକୁର କ'ଣ ଘଟିବ ବା ନଘଟିବ ଜାଣିପାରି ମୁଁ ଅଭୁକ୍ତ ରହିବି ବୁଝି ମାସୀମା'ଙ୍କୁ ସେଇ ସକାଳ ସାଢ଼େ ଆଠଟା ବେଳେ ତରକାରୀ ରୋଷେଇ କରିବାକୁ କହିଲେ, ଆଉ ତାହା ଆନନ୍ଦବଜାରରେ ଦେଇ ଆସିବାକୁ କହିଲେ, ଯେପରି ମୁଁ ଚୋରଙ୍କ ପରି ନିଜର ଅନ୍ତରକୁ ଦୂରେଇ ରଖି ନପାରେ ଠାକୁରଙ୍କ ପାଖରୁ। ପୂର୍ବେ, ଦିନେ ଠାକୁର ମୋତେ କହିଥିଲେ, ମୋ ପାଖରେ ସବୁକଥା କହିବୁ, କିଛି ଲୁଚାଇବୁ ନାହିଁ। ଆଉ ଜାଣି ରଖିଥିବୁ ଏଠି ଯାହା କିଛି ଦେଖୁଛି ସବୁ ତୋର ଓ ତୋ ଘରେ ଯେଉଁଠି ଯାହା କିଛି ଅଛି ବା ଥିବ ସେ ସବୁ ମୋର। ସେଇ କଥା ଠାକୁର ମୋତେ ଖାଲି ଉପଦେଶ ଦେଇ ବସି ରହିଲେ ନାହିଁ। ଆଜି ପ୍ରମାଣ କରିଦେଲେ।

ଠାକୁର ମୋତେ ଲୁଚାଇବାକୁ ମନା କରିଥିଲେ, ଆଉ ମୁଁ ଯେତେବେଳେ ଲୁଚାଇବାକୁ ଚେଷ୍ଟା କରୁଥିଲି ଠାକୁର ତାହା ବାହାର କରି ଆଣି ପ୍ରକାଶ କରି ଦେଲେ ସର୍ବ ସମ୍ମୁଖରେ। ନିଜେ ସବୁ ଶୁଣିଲେ ବାସ୍ତବ ଭାବେ, ଆଉ ତାହାର ସମାଧାନ ମଧ୍ୟ କଲେ ବାସ୍ତବ ଭାବରେ। ଠାକୁର ମାସୀମା' କଥା

ସରିବା ପରେ ମୋତେ କହିଲେ, ପୁଣି ତୋତେ କହୁଛି, ମୋ ପାଖରେ କିଛି ଗୋପନ କରିବୁ ନାହିଁ। ଗୋପନ କଲେ ସେଠି ପାପ ଆସି ବସା ବାନ୍ଧିବ। ମୋର ବଡ଼ଖୋକା, ମନି, କାଜଲ୍ ଏମାନେ ଯେପରି ତୁ ମଧ୍ୟ ସେହିପରି। ଆଉ ସେହି କଥା ମନେ ରଖି ସେହି ଭାବରେ ଚାଲିବୁ। ମନ ଭିତରେ କାହାରି ବିରୁଦ୍ଧରେ ଅଭିଯୋଗ ରଖିବୁ ନାହିଁ। କିନ୍ତୁ କୌଣସି କିଛି ସମାଧାନ କରି ନ ପାରିଲେ ମନ ଭିତରେ ଅଭିଯୋଗ ନ ରଖି ମୋ ପାଖରେ କହିବାକୁ ଭଲିବୁ ନାହିଁ। ପୁନର୍ବାର ମୁଁ ତୋତେ ଏହି କଥା କହି ରଖୁଛି, ଆଜିକା ପରି ଏପରି ଭୁଲ ଆଉ କେବେହେଲେ କରିବୁ ନାହିଁ। ସକାଳୁ ମୋର ଛାତିରେ ଯେଉଁ ଗୁରୁଭାର ଚାପି ବସିଥିଲା କର୍ପୂର ପରି ତାହା ଉଡ଼ିଗଲା, ହାଲୁକା ହୋଇଗଲା ମୋର ଦେହ ଓ ମନ। ସାଧନାର କଣ୍ଟକମୟ ବନରୁ କଣ୍ଟା ଘୁଞ୍ଚାଇ ଦେଇ ଠାକୁର ବାଟ କାଢ଼ି ଦେଲେ ଓ ସେହ ବାଟରେ ହାତ ଧରି ଧରି ନେଇ ଚାଲିଲେ ମୋତେ।

# ।। କୋଡ଼ିଏ ।।

ପ୍ରତିଦିନ ସକାଳେ ରାତ୍ରି ରହୁ ରହୁ ଠାକୁରଙ୍କ ପାଖରେ ଆସି ବସୁଛି। ଅନ୍ଧାର ପୂରା କଟି ନାହିଁ। ଶ୍ରୀ ଶ୍ରୀ ଠାକୁର ଦୂରରୁ ଦେଖି କହିଲେ– କିଏ ରେ, ସୁଶୀଲ ନା କି? ମୁଁ ଆଜ୍ଞା କହି ଜବାବ ଦେଇ ନିକଟରେ ଯାଇ ଉପସ୍ଥିତ ହେଲି। ଠାକୁର ମୋତେ ବସିବାକୁ କହିଲେ। ଇଙ୍ଗିତରେ ଦେଖାଇ ଦେଲେ ଗୋଟିଏ ପିଢ଼ା (ବାସସ୍ଥାନ)। ମୃଦୁ ଆଲୋକରେ ଆଲୋକିତ ହୋଇଛି ସ୍ଥାନଟି। ମୁଁ ଗାଧୋଇ ଆସିଛି। ଠାକୁର କହିଲେ– ତୋର ଗାଧୋଇବା ସରିଛିକି? ମୁଁ ସମ୍ମତି ଜଣାଇଲି। ଠାକୁର କହିଲେ– ପ୍ରତିଦିନ ଏହିପରି ଗାଧୋଇ ପାରିଲେ ଭଲ। ଦେଖିବୁ ଦେହ ଯେପରି ସୁସ୍ଥ ଥିବ, ନଜର ରଖିବୁ। କ୍ରମେ ଆସି ଲୋକ ଜମା ହେଉଛନ୍ତି ପ୍ରଭାତେ ଇଷ୍ଟମୁଖ ଦର୍ଶନ କରିବାର ବାସନାରେ। ମୋ ପୂର୍ବରୁ ସେଠାରେ ଯେଉଁମାନେ ରହିଥିଲେ ସେମାନେ ହେଉଛନ୍ତି ପ୍ୟାରୀଦା', ସରୋଜିନୀ ମା', ଇତ୍ୟାଦି ଆହୁରି ୨/୩ ଜଣ, ଯେଉଁମାନେ କି ରାତ୍ରିସାରା ଠାକୁରଙ୍କ ପାଖରେ ରହିଥିଲେ। ମୁଁ ଯାଇ ପହଞ୍ଚିବାର ପ୍ରାୟ ୪୫ ମିନିଟ୍ ପରେ ଜଣେ ଲୋକ ଆସି ଠାକୁରଙ୍କୁ ପ୍ରଣାମ ହେଲେ। ଶ୍ରୀଶ୍ରୀ ଠାକୁର ତାଙ୍କୁ ଦେଖି କହିଲେ– ଏଇ ନଗେନ୍, ମୋତେ ୪୦ ଟଙ୍କା ଦେବୁ? ଦିବା ପ୍ରାରମ୍ଭେ ଇଷ୍ଟଙ୍କର ଏହି ଆଶୀର୍ବାଦ ପାଇ ନଗେନ୍ ଦା' ଉତ୍‌ଫୁଲ୍ଲ ହୋଇ ଉଠିଲେ– କହିଲେ–ମୁଁ ଯାଉଛି, ଆଣିଦେବି। କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି, ଏହାପରେ ଯେ ଆସିଲେ ତାଙ୍କୁ ମଧ୍ୟ ଠାକୁର କହିଲେ– ମୋତେ ୪୦ ଟଙ୍କା ଦେବୁ କି? ସେ ସେହି ଆଶୀର୍ବାଦ ମୁଣ୍ଡରେ ନେଇ ଯେତେବେଳେ ଯିବାପାଇଁ ଉଦ୍ୟତ ହେଲେ ଶ୍ରୀଶ୍ରୀ ଠାକୁର ତାଙ୍କୁ ପୁଣି ଡାକି କହିଲେ– ଖାଲି ତୋର ୪୦ ଟଙ୍କା ଦେଲେ ହେବ ନାହିଁ। ତୋର ସ୍ତ୍ରୀ ପାଇଁ ଆହୁରି ୪୦, ମୋଟ ୮୦ ଟଙ୍କା ଦେଲେ ଭଲ ହେବ। ଭାଇଟି ପ୍ରଫୁଲ୍ଲ ବଦନରେ ଆନନ୍ଦିତ ଚିତ୍ତେ ଠାକୁରଙ୍କର ଏହି ଆଶୀର୍ବାଦ ଗ୍ରହଣ କରି ତ୍ରସ୍ତ ପଦରେ ବାହାରିଗଲେ ଟଙ୍କା ଆଣିବାପାଇଁ। ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି, ଏହାପରେ ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଯେ ଆସିଲେ ତାଙ୍କୁ ହିଁ ଶ୍ରୀଶ୍ରୀ ଠାକୁର ୪୦ ଟଙ୍କା ଲେଖାଏଁ ଆଣିବାକୁ କହିଲେ ଏବଂ ପ୍ରତି ପରିବାରରେ ମୁଣ୍ଡପିଛା ୪୦ ଟଙ୍କା କରି ଆଣିବାକୁ ଆଦେଶ କଲେ। ମୁଁ ଏହି ଅଦ୍‌ଭୁତ ଦୃଶ୍ୟ ବସି ବସି ଦେଖୁଛି। ସେଦିନ ଯେପରି ଠାକୁରଙ୍କର ଗୋଟିଏ ନୂଆ ଖେଳ ଆରମ୍ଭ

ହୋଇଛି। ଅତି ଆନନ୍ଦ ସହକାରେ ଉତ୍ଫୁଲ୍ଲ ଚିତ୍ତେ ଠାକୁର ମାଗି ଚାଲିଛନ୍ତି ତାଙ୍କର ଭିକ୍ଷା, ଜଣ ପରେ ଜଣକୁ ଯେ ଆସୁଛନ୍ତି ତାଙ୍କ ସମ୍ମୁଖରେ। ଠାକୁରଙ୍କର ଏହି ଭାବାନ୍ତର ମୋର ଖୁବ୍ ଭଲ ଲାଗୁଛି, ମୁଁ ଦେଖିଲି ଠାକୁରଙ୍କ ସାମ୍ନାରେ ଯେତେଲୋକ ଆସିଥିଲେ, ଏହି ମହାଯଜ୍ଞର ଅଂଶୀଦାର ହେବାପାଇଁ ଠାକୁର ସମସ୍ତଙ୍କୁ କହିଲେ। ଠାକୁର ଜଣ–ଜଣକୁ ୪୦ ଟଙ୍କା ଅର୍ଘ୍ୟ ପାଇଁ କହୁଛନ୍ତି, ଆଉ ପ୍ରତିଥର ମୋ ଆଡ଼କୁ ଅନାଇ ହସି ଉଠୁଛନ୍ତି ଅର୍ଥପୂର୍ଣ୍ଣ ଭାବରେ। ମୁଁ ତାଙ୍କର ସେହି ଅର୍ଥ କିଛି ବୁଝିପାରୁ ନାହିଁ। କିନ୍ତୁ ଭଲତ ଲାଗୁଛି ତାଙ୍କର ସେହି ଇଙ୍ଗିତପୂର୍ଣ୍ଣ ପ୍ରାଣଖୋଲା ମଧୁର ହସ ଦେଖି। ଏହିପରି ଦିନ ଘ.୮-୩୦ ବାଜିଗଲା। ହଠାତ୍ ଠାକୁର ମୋତେ କହିଲେ–ତୁ ଦେବୁନାହିଁ ମୋତେ ୪୦ ଟଙ୍କା? ମୁଁ କହିଲି– ଠାକୁର! ଦେବି, ନିଶ୍ଚୟ ଦେବି। ଏହା ସାଥେ ସାଥେ ଠାକୁର କହି ଉଠିଲେ– କେବଳ ୪୦ ଟଙ୍କା ଦେଲେ ହେବନାହିଁ, ତୋ ପାଇଁ ୪୦ ଟଙ୍କା, ତୋ ମା' ପାଇଁ ୪୦ ଟଙ୍କା, ଦୁଇ ବୋହୂ ମା' ପାଇଁ ୪୦ ଟଙ୍କା କରି ୮୦ ଟଙ୍କା, ଏବଂ ଦୁଇ ଝିଅ ପାଇଁ ୪୦ ଟଙ୍କା କରି ୮୦ ଟଙ୍କା। ଏହିପରି ୨୪୦ ଟଙ୍କାର ଆଶୀର୍ବାଦ ଠାକୁର ମୋ ଉପରେ ଦେଲେ। ମୁଁ 'ହୃଷ୍ଟଚିତ୍ତେ' ତାକୁ 'ଅନ୍ତର'ରେ ଗ୍ରହଣ କରି ଭୂତଳେ ଠାକୁରଙ୍କୁ ପ୍ରଣତ ହୋଇ ବାହାରି ଆସିଲି ଅର୍ଥ ସଂଗ୍ରହ କରିବା ଲାଗି। ଆଜକୁ ଚାରିବର୍ଷ ଆଶ୍ରମରେ ରହିଛି। ନିଃସମ୍ବଳ, ନିଃସ୍ୱ, ଗୋଟିଏ ଟଙ୍କା ମୋ ପାଖରେ ସ୍ୱପ୍ନ ପରି। ସେ ଅବସ୍ଥାରେ ୨୪୦ ଟଙ୍କା କିପରି ସଂଗ୍ରହ ହେବ ଭାବି ବାଟ ପାଉ ନାହିଁ। ସର୍ବପ୍ରଥମ ଭୋର ହେବା ପୂର୍ବରୁ ରାତ୍ରି ଥାଉଁ ଥାଉଁ ମୁଁ ଆସି ଉପସ୍ଥିତ ହୋଇଥିଲି ଠାକୁରଙ୍କ ପାଖରେ। ସେତେବେଳେ ଠାକୁର କିଛି କହିଲେ ନାହିଁ। ମୋତେ ଆଦେଶ କରିଲେ ସେତେବେଳେ ଯାହାର ପୂର୍ବେ ଠାକୁର ସମସ୍ତଙ୍କୁ ଦେଇ ସାରିଛନ୍ତି ଆଶୀର୍ବାଦ, ମୁଣ୍ଡପିଛା ୪୦ ଟଙ୍କା ଆଣିବା ପାଇଁ। ଆଶ୍ରମବାସୀ କାହାରି ପାଖରେ ଯଥେଷ୍ଟ ପଇସା ନ ଥାଏ। କୌଣସି ପ୍ରକାରେ ଦିନ ଗୁଜରାଣ କରନ୍ତି। ସଂସାରରେ ବଞ୍ଚିରହିବାକୁ ହେଲେ ଯେତିକି ନ ହେଲେ ନ ହେବ ସେତିକି ସଂଗ୍ରହ କରି ଦିନାତିପାତ କରି ଚାଲିଛନ୍ତି ସମସ୍ତେ। ଶ୍ରୀଶ୍ରୀ ଠାକୁରଙ୍କର ଏହି ଆଦେଶ ପରିପାଳନ କରିବାପାଇଁ ସମସ୍ତେ ଆପ୍ରାଣ ଲାଗି ପଡ଼ିଛନ୍ତି। ଶ୍ରୀଶ୍ରୀ ଠାକୁର ପ୍ରଥମେ ଯେଉଁମାନଙ୍କୁ ଏହି ଆଦେଶ ଦେଇଥିଲେ ସେମାନେ ଅଧଘଣ୍ଟା–ଘଣ୍ଟାକ ଭିତରେ ଟଙ୍କା ଆଣି ପ୍ରଣତ ହୋଇଛନ୍ତି ଠାକୁରଙ୍କ ସମ୍ମୁଖରେ। ଠାକୁର ଟଙ୍କା ଛୁଉଁ ନଥିଲେ। ଉପସ୍ଥିତ ଜଣକୁ ଟଙ୍କା ରଖିବା ପାଇଁ ସେ ଆଦେଶ ଦେଲେ। ତାଙ୍କ ପାଖରେ ଆସି ବହୁତ ଟଙ୍କା

ଜମା ହେବାକୁ ଲାଗିଲା। ଆଶ୍ରମରେ ଚାରିଆଡ଼େ ଚହଳ ପଡ଼ି ଯାଇଛି। ୪୦ ଟଙ୍କା, ୪୦ ଟଙ୍କା, 40 rupees unit, ପ୍ରତି ମୁଣ୍ଡପିଛା ସଂଗ୍ରହ କରିବାକୁ ହେବ। କାହାରି ମୁହଁରେ କୌଣସି କଥା ନାହିଁ ସେହି ଗୋଟିଏ କଥା। ସମସ୍ତେ ସମସ୍ତଙ୍କ ପାଖରେ ଭିକ୍ଷାମାଗି ଚାଲିଛନ୍ତି ଟଙ୍କା ସଂଗ୍ରହ ନିମନ୍ତେ। ମୁଁ ମନେ ମନେ ଭାବିଲି– ଠାକୁରଙ୍କ ପାଖରେ ମୁଁ ସର୍ବପ୍ରଥମ ଆସିଥିଲି। ସେତେବେଳେ ଯଦି ଠାକୁର ଏହି ୪୦ ଟଙ୍କାର ଆଶୀର୍ବାଦ ଦେଇଥା'ନ୍ତେ ମୋତେ ତାହାହେଲେ ଭିକ୍ଷାମାଗି ସର୍ବ ପୂର୍ବରୁ ଆଣି ଏହି ବ୍ରତରେ ସିଦ୍ଧିଲାଭ କରି ଠାକୁରଙ୍କ ଚରଣପ୍ରାନ୍ତେ ଆସି ଅର୍ଘ୍ୟ ନିବେଦନ କରିଥା'ନ୍ତି। କିନ୍ତୁ ନା, ଠାକୁର ମୋତେ ସେ ସୁଯୋଗ ଦେଲେ ନାହିଁ। ମୋହରି ଆଖି ସାମ୍ନାରେ ଆଶ୍ରମର ସମସ୍ତଙ୍କୁ ମାଗିଲେ, ଏବଂ ସର୍ବ ଶେଷେ ମାଗିଲେ ମୋତେ। ବାରମ୍ବାର ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଅନାଇଥିଲେ ମୋ ଆଡ଼କୁ। ଏ କି ଖେଳ ତୁମର ଲୀଳାମୟ ପ୍ରଭୁ, ତୁମେ ତ ଜାଣିଛ ମୋ ପାଖରେ କିଛି ନାହିଁ! ଆଶ୍ରମସ୍ଥ ସମସ୍ତ ଲୋକଙ୍କର ଯାହା ପାଖରେ ଯାହାକିଛି ଥିଲା ସବୁ କିଛି ମାଗି ନେଇ ମୋ ଆଡ଼କୁ ହାତ ବଢ଼ାଇଲ। ଆଶୀର୍ବାଦ କଲ ମୋ ଜୀବନ ଉପରେ, ସାଧନା ପଥରେ ଚାଲିବାର ଗତି ଅବ୍ୟାହତ ରଖିବା ପାଇଁ। ଏହି କଠିନ ପରୀକ୍ଷା! କିନ୍ତୁ ଠାକୁର! ତୁମେ ତ ଜାଣିଛ ମୁଁ ଦୁର୍ବଳ। ତୁମ ଛଡ଼ା ମୋର କୌଣସି ସମ୍ବଳ ନାହିଁ। ତେଣୁ ହେ ସର୍ବମଙ୍ଗଳମୟ, ମୋର ଇଷ୍ଟ ତଥା ମନର ମନୁଷ୍ୟ ମୋତେ ପଥ ଦେଖାଅ। ଶ୍ରୀଶ୍ରୀ ଠାକୁରଙ୍କ ଘରୁ ବାହାରି ସର୍ବପ୍ରଥମ ଯାହାକୁ ଦେଖିଲି, ହାତ ବଢ଼ାଇ ତାଙ୍କ ପାଖରେ ମାଗିଲି ଭିକ୍ଷା, ସେ ଆନନ୍ଦିତ ହୃଦୟରେ ମୋତେ କୁଣ୍ଢାଇ ପକାଇ କହିଲେ– ସୁଶୀଲଦା'! ଆପଣ ଜାଣିଛନ୍ତି ଆପଣଙ୍କ ସମ୍ମୁଖରେ ଠାକୁର ମୋତେ ଆଦେଶ ଦେଇଛନ୍ତି, ଏହି ମହାବ୍ରତରେ ଅଂଶୀଦାର କରିଛନ୍ତି, ମୁଁ ନିଜେ ଭିକ୍ଷା ମାଗି ଚାଲିଛି, ମୋ ପାଖରେ କିଛି ନାହିଁ– ଯେ ଆପଣଙ୍କୁ ଦେବି। ତେବେ ଏହା ଜାଣିଛି, ଠାକୁର ଯେତେବେଳେ କହିଛନ୍ତି ଏହା ନିଶ୍ଚିତ ସଂଗ୍ରହ ହେବ, ଆପଣଙ୍କର ଓ ମୋର ମଧ୍ୟ। ପ୍ରଥମ ଭିକ୍ଷା ମାଗିବା ମୋର ବ୍ୟର୍ଥ ହେଲା, ମନେହେଲା ବୃଥା ଚେଷ୍ଟା। ଏଠାରେ କିଛି ପାଇବାର ପଥ ପୂର୍ବରୁ ମାଲିକ ସ୍ୱହସ୍ତରେ ବନ୍ଦ କରି ରଖିଛନ୍ତି। ତେଣୁ ଖୋଜିବାକୁ ହେବ ଅନ୍ୟପଥ। ଏପରି ଜାଗାକୁ ଯିବି, ଯେଉଁ ସ୍ଥାନକୁ ଏଠାକାର କେହି ଯାଇ ନାହାନ୍ତି। ସମସ୍ତେ ଆଶ୍ରମର ମାଇଲିଏ ଦେଢ଼ମାଇଲ ମଧ୍ୟରେ ଅର୍ଥ ସଂଗ୍ରହ ନିମନ୍ତେ ବୁଲୁଛନ୍ତି ଦ୍ୱାରେ ଦ୍ୱାରେ, ଇଷ୍ଟଭ୍ରାତାମାନଙ୍କ ମଧ୍ୟରେ। ମୁଁ ଯିବି ସୀମା ବାହାରେ। ବାହାରିପଡ଼ିଲି ଦେଓଘର ସହର ଉଦ୍ଦେଶ୍ୟରେ, ଅଚିହ୍ନା ଅଜଣା ଲୋକଙ୍କ ଦ୍ୱାରେ।

ପ୍ରଥମେ ଲଜ୍ଜା ଓ ଅହମିକା ଆସି ବାଧାସ୍ୱରୂପ ଛିଡ଼ା ହେଲା ସମ୍ମୁଖେ। ସଙ୍ଗେ ସଙ୍ଗେ ମନେ ପଡ଼ିଲା ଛତ୍ରପତି ଶିବାଜୀଙ୍କର କଥା। ରାଜା ହୋଇ ଗୁରୁ ରାମଦାସଙ୍କ ଆଦେଶରେ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲିଥିଲେ। ମୁଁ କିବା ଛାର! ଯେଉଁ ପଥରେ ଯାଉଥିଲି ତାହାରି ସମ୍ମୁଖସ୍ଥ ଏକବିରାଟ ଅଟ୍ଟାଳିକା ସମ୍ମୁଖରେ ଯାଇ ଡାକିଲି ଗୃହସ୍ୱାମୀଙ୍କୁ। ଗୃହସ୍ୱାମୀ ଆସିବା ସଙ୍ଗେ ସଙ୍ଗେ କହିଲି-- ମୋର ସାଧନା ଜୀବନରେ ଗୁରୁଙ୍କର ଆଦେଶ ପାଳନ ପାଇଁ ନିଜର ଅକ୍ଷମତା ହେତୁ ଆପଣଙ୍କ ଦ୍ୱାରରେ ଉପସ୍ଥିତ ହୋଇଛି କିଛି ଅର୍ଥ ଲାଗି, ଦୟାପୂର୍ବକ ସେହି ଅର୍ଥ ଦେଲେ ମୁଁ ଆଗେଇ ଯିବି ସାଧନାର ଗୋଟିଏ ସୋପାନ ଅତିକ୍ରମ କରି, ମୋତେ ସାହାଯ୍ୟ କରନ୍ତୁ ଭିକ୍ଷାଂ ଦେହି। ଉପସ୍ଥିତ ଭଦ୍ରଲୋକ, ତୀକ୍ଷ୍ଣ ଦୃଷ୍ଟିରେ ମୋର ଆପାଦ ମସ୍ତକ ଅନାଇ କହିଲେ ଆପଣତ ସନ୍ନ୍ୟାସୀ ବୋଲି ଜଣାପଡୁ ନାହିଁ; ଶୁଭ୍ର ଧୋତି, ଚାଦର, ଜାମା, ହାତରେ ଘଡ଼ି ବନ୍ଧା ହୋଇଛି, ଦେଖିଲେ ଜଣାପଡୁଛି, କୌଣସି ବଡ଼ଘରର ଲୋକ ଆପଣ। ତା'ଛଡ଼ା ଆପଣଙ୍କର ଗୁରୁ ଶ୍ରୀ ଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ର, ତାଙ୍କରତ କୌଣସି ଅର୍ଥର ପ୍ରୟୋଜନ ନାହିଁ। ପ୍ରଚୁର ଅର୍ଥ ସମ୍ପଦ ତାଙ୍କର। ତେଣୁ ମୋତେ କ୍ଷମା କରନ୍ତୁ, ମୁଁ ଏଥିରେ ଆପଣଙ୍କୁ କିଛି ମାତ୍ର ସାହାଯ୍ୟ କରି ପାରିବି ନାହିଁ। ଏହିପରି ବହୁତ ଦ୍ୱାରେ ବହୁ ପ୍ରକାରରେ ଭିକ୍ଷାମାଗି ନିରାଶାରେ ପ୍ରତ୍ୟାବର୍ତ୍ତନ କଲି ସବୁ ଦରଜାରୁ। ଦେଓଘରଠାରୁ ଜସିଡ଼ି ପର୍ଯ୍ୟନ୍ତ ତିନିମାଇଲ ବାଟ ଚାଲି ଚାଲି ପ୍ରତିଦ୍ୱାରେ ଧକ୍କା ଦେଇ ଏବଂ ପ୍ରତିଦାନେ ମଧ୍ୟ ଧକ୍କା ପାଇ ପାଇ ଆସି ଉପସ୍ଥିତ ହେଲି ଜସିଡ଼ି ରେଲ ଷ୍ଟେସନରେ। ସେତେବେଳେ ଦିନ ୧୧ଟା ବାଜି ଯାଇଛି। କଲିକତାଗାମୀ ତୋଫାନ ଏକ୍ସପ୍ରେସ ଆସିବା ଉପରେ। ପୂର୍ବଦିନ ଭିକ୍ଷାକରି ଗୋଟିଏ ଟଙ୍କା ମୋ ପାଖରେ ରଖିଛି ଇଶ୍ୱରଙ୍କୁ ଭୋଗ ଦେବା ତଥା ଇଷ୍ଟଭୃତି କରିବା ନିମନ୍ତେ। ସେ ଟଙ୍କାରୁ ୧୦ ଅଣା ଦେଇ ଖଣ୍ଡେ ଟିକଟ କାଟି ତୋଫାନ ଏକ୍ସପ୍ରେସ୍‌ରେ ଉଠିଲି। ଜସିଡ଼ି ପରବର୍ତ୍ତୀ ଷ୍ଟେସନ ମଧୁପୁରରେ ଆସି ଓହ୍ଲାଇଲି ଦିନ ଘ. ୧୨.୧୫ ମିନିଟ୍‌ରେ। ଦେଓଘର ଜସିଡ଼ି ଲୋକ ମୋତେ ହତାଶ କରିଲେ ମଧ୍ୟ ଏହି ମଧୁପୁରର୍ ପୁରବାସୀଗଣ କ'ଣ ମୋତେ ହତାଶ କରିବେ ?

ଷ୍ଟେସନ ବାହାରେ ଆସି ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିବାକୁ ଲାଗିଲି। କେତେ ଲୋକ କେତେ କଥା କହିଲେ, କେହି ବା ଆଦର ଶ୍ରଦ୍ଧାଭରେ ଡାକି ଘରେ ବସାଇଲେ, ଶୁଣିବାକୁ ଚାହିଁଲେ ଶ୍ରୀ ଶ୍ରୀ ଠାକୁରଙ୍କର କଥା। ମୁଁ ମଧ୍ୟ ଇଷ୍ଟା ଲୋଚନା କରିବାର ସୁଯୋଗ ପାଇ ନିଜେ କୃତାର୍ଥ ହୋଇଲି। କେହି କିଛି କିଛି, ଆଠଣା, ଟଙ୍କାଏ ମଧ୍ୟ ଦେଲେ। ଏହିପରି ଦିନସାରା ବିତିଗଲା। ସନ୍ଧ୍ୟା, ରାତ୍ରି ମଧ୍ୟ ଗୋଟିଏ ପ୍ରହର କଟିଗଲା। ଶ୍ରାନ୍ତ, କ୍ଳାନ୍ତ ପଦରେ ଯେତେବେଳେ ପୁଣି ମଧୁପୁର ଷ୍ଟେସନକୁ ଫେରି ଆସିଲି, ସେତେବେଳେ ରାତ୍ରି ୯ଟା। ପ୍ଲାଟଫର୍ମ ଉପର ଗୋଟିଏ ପକ୍କା ଉପରେ ବସି ବସି କେତେବେଳେ ନିଦ ଆସିଯାଇଛି ଜାଣେ ନାହିଁ। କର୍କଶ ଶବ୍ଦରେ ନିଦ ଭାଙ୍ଗିଗଲା। ଦେଖିଲି ଦାନବ ପରି ହୁସ୍ ହୁସ୍ ଶବ୍ଦ କରି ଗୋଟିଏ ଦୈତ୍ୟାକାର ଇଞ୍ଜିନ ପଶିଲା ଷ୍ଟେସନ ପ୍ଲାଟଫର୍ମରେ। ତା' ପଛରେ ଯୋଡ଼ା ହୋଇଛି ବହୁ ଯାତ୍ରୀ ପୂର୍ଣ୍ଣ ରେଲଡ଼ବା। ମୋର କୌଣସି କଥା ଭାବିବାର ବେଳ ନାହିଁ। ଏହି ଦିଲ୍ଲୀ ଏକସ୍‌ପ୍ରେସ ଧରି ମୋତେ ଯବାକୁ ହେବ କଲିକତା। ଦିନସାରା ବୁଲି ବୁଲି ଯାହା କିଛି ଆହରଣ ହୋଇଛି, ତାହା ଅତି ସାମାନ୍ୟ— ଦଶଟଙ୍କା କେତେ ଅଣା। ୨୪୦ ଟଙ୍କା ଏ ପର୍ଯ୍ୟନ୍ତ ବହୁ ଦୂର। ଶ୍ରୀଶ୍ରୀ ଠାକୁରଙ୍କ ପାଖରୁ ମୁଁ ଯେତେବେଳେ ପ୍ରଣାମ କରି ବାହାରି ଆସିଥିଲି ଠାକୁର ମୋତେ କହିଲେ— ଜଲ୍‌ଦି ନେଇ ଆସିବୁ, ଡେରି କରିବୁ ନାହିଁ। ମୁଁ ମନେ ମନେ ସଂକଳ୍ପ କରିଥିଲି ଭାତ ଖାଇବା ପୂର୍ବରୁ ଏହି ଟଙ୍କା ଆଣି ଠାକୁରଙ୍କ ଶ୍ରୀ ଚରଣରେ ନିବେଦନ କରିବି। କିନ୍ତୁ ଦିନ ବଢ଼ି ଯାଇ ରାତ୍ରି ୧୨ଟା ହେଲାଣି, ନାମ ମାତ୍ର ଅର୍ଥ ସଂଗ୍ରହ ହୋଇଛି। ପୂର୍ଣ୍ଣ ଅର୍ଘ୍ୟ ସଂଗ୍ରହ କରିବା ବହୁତ ଦୂର। ସକାଳରୁ କିଛି ଖାଇ ନାହିଁ, ଭୋକ ମଧ୍ୟ ନାହିଁ। ମନ ଭିତରେ ସେଇ ଏକମାତ୍ର ଚିନ୍ତା କିପରି ପାଳନ କରି ପାରିବି ଠାକୁରଙ୍କର ସେହି ଆଦେଶ, ଯାହାର ଆଦେଶ ପାଳନ କରିବା ପାଇଁ ସାଗ୍ରହରେ ଆନନ୍ଦିତ ଚିତ୍ତରେ ଗୁରୁପଦରେ ତାଙ୍କୁ ବରଣ କରିଥିଲି। ହାତରେ ଟଙ୍କା ନାହିଁ, ଲୋକମାନେ ଯେଉଁ ଟଙ୍କା ମୋତେ ଦେଇଛନ୍ତି ତାହା ମୋର ଖର୍ଚ୍ଚ ପାଇଁ ନୁହେଁ, ଶ୍ରୀଶ୍ରୀ ଠାକୁରଙ୍କ ପାଇଁ। ସେଥିରୁ ମୁଁ ହାତ ଦେଇ ପାରୁନାହିଁ, ୧୦ ଅଣା ପଇସା ଯାଇ ୬ ଅଣା ମୋର ପାଖରେ ସମ୍ବଳ।

କିନ୍ତୁ ଆଜି ଏ ରାତ୍ରିର ଅବସାନ ସଙ୍ଗେ ସଙ୍ଗେ ଅତି ପ୍ରତ୍ୟୁଷରେ ମୋତେ କରିବାକୁ ହେବ ଇଷ୍ଟଭୃତି ସହକାରେ ନାମଧ୍ୟାନ ଇତ୍ୟାଦି। ତେଣୁ

ଏହି ସାମାନ୍ୟ ପଇସା ଖର୍ଚ୍ଚ କରି ପାରିବି ନାହିଁ। ଏହା ରଖିବାକୁ ହେବ ଅତି ପ୍ରତ୍ୟୁଷରେ ପୂଜା ନିମନ୍ତେ। କିନ୍ତୁ ଯାହା କିଛି ହେଉନା କାହିଁକି ଏହି ଗାଡ଼ିରେ ମୋତେ ଯିବାକୁ ହେବ କଲିକତା। ବହୁ ଲୋକ ଭିଡ଼ ଭିତରେ ବିନା ପଇସାରେ ହୁଏତ ଯାଇ ପାରିବି, କିନ୍ତୁ ନା ମନ ମାନୁ ନାହିଁ, ସାଧନା କରିବାକୁ ଆସି ଧର୍ମ ଜୀବନର ସଂକଳ୍ପ ନେଇ କାହାକୁ ତ ଫାଙ୍କି ଦେଇ ହେବ ନାହିଁ, ଯେଉଁଠି ଯାହାକୁ ଫାଙ୍କି ଦେବି ସେହି ବାଟରେ ମୋର ଜୀବନ–ସାଧନା ଭିତରେ ଫାଙ୍କି ଆସିଯିବ ତା'ଠାରୁ ବହୁଗୁଣରେ। ସଙ୍ଗେ ସଙ୍ଗେ ମନ ପଡ଼ିଗଲା ଠାକୁରଙ୍କର ଗୋଟିଏ କଥା। ଠାକୁର ଦିନେ ମୋତେ କହୁଥିଲେ–ପାବନାରୁ କତିପୟ ଭକ୍ତ ଶ୍ରୀଶ୍ରୀ ଠାକୁରଙ୍କୁ ଟ୍ରେନ୍‌ରେ First class (ପ୍ରଥମ ଶ୍ରେଣୀ) ରେ ଉଠାଇ ନେଇ ଚାଲିଛନ୍ତି କୁଷ୍ଟିୟା ଉଦ୍ଦେଶ୍ୟରେ। ଶ୍ରୀଶ୍ରୀ ଠାକୁର କହିଲେ– ଗାଡ଼ି ଛାଡ଼ି ଦେବା ପରେ କିଛି ଦୂରରେ ଆସି ମୋର ମନେ ହେଲା, ଏମାନେ ବୋଧହୁଏ ଟ୍ରେନ୍‌ରେ ଟିକଟ କାଟି ନାହାନ୍ତି, ରେଳକୋମ୍ପାନୀକୁ ଫାଙ୍କି ଦେଇ ମୋତେ ନେଇ ଚାଲିଛନ୍ତି ବିନା ପଇସାରେ। ମୋ ସାଙ୍ଗରେ ଉପସ୍ଥିତ ଲୋକମାନଙ୍କ ଭିତରେ କେତେ ଜଣ ଥିଲେ ରେଳ କର୍ମଚାରୀ। ସେମାନଙ୍କୁ ଡାକି ମୁଁ ପଚାରିଲି ଗାଡ଼ିର ଟିକଟ କଟା ହୋଇଛି କି ନାହିଁ। ପ୍ରଥମେ ସେମାନେ ମୋ କଥା ଶୁଣି ଚୁପ୍ ହୋଇ ରହିଲେ। କିନ୍ତୁ ମୋର ମନ ଭିତରଟା ଅତ୍ୟନ୍ତ ଅସ୍ଥିର ହୋଇ ଉଠିଲା। ବାରମ୍ବାର ସେମାନଙ୍କୁ ପଚାରିବାକୁ ଲାଗିଲି– କୁହ, ସତ୍ୟ କୁହ, ଟିକଟ କାଟିଛ କି ନାହିଁ? ସେମାନେ ସତ୍ୟ ଘଟଣା ମୋ ପାଖରେ ଫିଟାଇ କହିଲେ– ଗାଡ଼ିରେ ଟିକଟ କାଟିବା ପ୍ରୟୋଜନ ନାହିଁ। କାହିଁକିନା ସେମାନଙ୍କ ଭିତରେ ସେ ଗାଡ଼ିର ଟିକଟ–ଚେକ୍‌ର (Checker) ଏବଂ ଗାର୍ଡ଼ (Guard) ସମସ୍ତେ ଦୀକ୍ଷିତ। ତେଣୁ ଟିକଟ ନ କାଟିଲେ କିଛି ଭୟ ନାହିଁ। ସେମାନେ ଉଦ୍ୟୋକ୍ତା ହୋଇ ସମସ୍ତଙ୍କୁ ନେଇ ଚାଲିଛନ୍ତି ମୋ ସହିତ। ଶ୍ରୀ ଶ୍ରୀ ଠାକୁର କହିଲେ– ଏ କଥା ଶୁଣିବା ସାଙ୍ଗେ ସାଙ୍ଗେ ମୋର କିପରି ମନେ ହେଲା ମୁଁ ନିଜକୁ ନିଜେ ଠକି ଚାଲିଛି। ଅସହ୍ୟ ଯନ୍ତ୍ରଣା ମୋର ଛାତି ଭିତରେ ଜଳନ୍ତା ନିଆଁ ପରି ଜଳିବାକୁ ଲାଗିଲା। ମୁଁ ମୁହୂର୍ତ୍ତେ ଆଉ ସେ ଗାଡ଼ି ଭିତରେ ରହିପାରୁ ନାହିଁ। ଚଳନ୍ତା ଗାଡ଼ିରୁ ଝାମ୍ପି ପଡ଼ିବା ପାଇ ଦ୍ରୁତପାଦରେ ଆଗେଇ ଗଲି କବାଟ ପାଖକୁ। ଗାଡ଼ିରେ ବସି ରହିବା ମୋ ପକ୍ଷେ ଅସମ୍ଭବ ହୋଇ ଉଠିଲା। ଗାଡ଼ି ଭିତରେ ସବୁ ଲୋକ ମୋତେ କୁଣ୍ଢାଇ ପକାଇଲେ, ବାରମ୍ବାର ବିନୀତ ଭାବେ କହିବାକୁ କହିବାକୁ ଲାଗିଲେ, ହେ ଠାକୁର, ଆମମାନଙ୍କୁ କ୍ଷମା କରନ୍ତୁ। ଆମ୍ଭେ ଅନ୍ୟାୟ

କରିଛୁ। ପାପ କରିଛୁ, କିନ୍ତୁ ଆଉ ନୁହେଁ, ଏହି ଥରକ ପାଇଁ ଆମ୍ଭଙ୍କୁ କ୍ଷମା ଦିଅନ୍ତୁ। ମୋତେ ସମସ୍ତେ ଧରି ଅଟକାଇ ରଖିଛନ୍ତି। ଏମିତି ଯେତେ କହୁଛନ୍ତି, ସେତେ ମୋର ମନେ ହେଉଛି ଏମାନେ ଯାହା କିଛି କରିଛନ୍ତି ତାହାର ସବୁ କିଛି ଦୋଷ ମୋର। ମୁଁ ଏମାନଙ୍କୁ ଏପରି ଶିକ୍ଷା ଦେଇ ପାରି ନାହିଁ, ଏପରି ଚରିତ୍ର ଗଠନ କରି ପାରି ନାହିଁ, ଯାହା ପାଇଁ ଆଜି ଏହି ଅନ୍ୟାୟକୁ ସେମାନେ ଅନ୍ୟାୟ ବୋଲି ବୋଧ କରୁ ନାହାନ୍ତି। ଏ କଥା ଯେତିକି ଭାବୁଛି ସେତିକି ଆହାରୁ ବେଶୀ ଅକ୍ଷମ, ଦୋଷୀ ବୋଲି ମନେ କରୁଛି। ଗାଡ଼ି ଭିତରୁ ବାହାରିଯିବା ପାଇଁ ଅନ୍ତର ବ୍ୟାକୁଳ ହୋଇ ଉଠିଲା। କିନ୍ତୁ ମୋର ଦେହଟିକୁ ସମସ୍ତେ ବାନ୍ଧି ରଖିବା ପରି ଧରି ରଖିଛନ୍ତି। ମୁଁ ହଲଚଲ୍ କରି ପାରୁନାହିଁ। ଦେଖୁଁ ଦେଖୁଁ ପରବର୍ତ୍ତୀ ଷ୍ଟେସନ ଚାଲି ଆସିଲା। ଏମାନେ ସବୁ ଯାଇ ଟିକଟ କାଟି ଆଣିଲେ ଏବଂ ଆଣି ମୋତେ ଦେଖାଇ କହିଲେ, ଠାକୁର ! ରେଳ–ଆଇନ ଅନୁଯାୟୀ ଯାହା ଦେବାର ପ୍ରୟୋଜନ ଠିକ୍ ଠିକ୍ ସେହି ଭଡ଼ା ଦେଇ ଆମେ ଟିକଟ କାଟି ଆଣିଛୁ। ତାଙ୍କର କଥା ଶୁଣି ଏବଂ ଟିକଟ ଦେଖି ମୋର ଭିତରଟା ଶାନ୍ତ ହେଲା। କିନ୍ତୁ ମନ ଭିତରେ ଦୁଃଖ ରହିଥାଏ– କାହିଁକି ଏମାନଙ୍କର ଏ ବୁଦ୍ଧି ଆସିଲା ? ଆଜି ଏହି ମଧୁପୁର ଷ୍ଟେସନରେ ନିଃସମ୍ବଳ ମୁଁ। ଗାଡ଼ିରେ ଚଢ଼ିବାର ପୂର୍ବ ମୁହୂର୍ତ୍ତରେ ଶ୍ରୀଶ୍ରୀ ଠାକୁରଙ୍କର ସେହି କଥାଗୁଡ଼ିକ ଏବଂ ତାହା ସହିତ ମୋତେ କହିଲାବେଳେ ତାଙ୍କର ସେହି ବେଦନା ମଣ୍ଡିତ ମୁହଁଟି ମୋ ଆଖି ସାମ୍ନାରେ ଭାସି ଉଠିଲା, କିନ୍ତୁ ମୁଁ କ'ଣ କରିବି? ଯାହା କିଛି ହେଉନା କାହିଁକି ମୋତେ ଏହି ଗାଡ଼ି ଧରି ନିଶ୍ଚୟ କଲିକତା ଯିବାକୁ ହେବ। ଆଉ ସେଠାରୁ ସଂଗ୍ରହ କରିବାକୁ ହେବ ମୋର ଇପ୍‌ସିତ ଅର୍ଥ ଯାହାଦ୍ୱାରା ମୁଁ ଅର୍ଘ୍ୟାଞ୍ଜଳି ଦେବି ଶ୍ରୀଗୁରୁ ପଦେ। ଗାଡ଼ି ଛାଡ଼ିଦେବ, ଆଉ ସମୟ ନାହିଁ, ଛୁଟି ଚାଲିଲି ଗାଡ଼ିର ଗାର୍ଡ଼ (Guard) ଡବା ଆଡ଼କୁ। ତାଙ୍କ ସମ୍ମୁଖରେ ଯାଇ କହିଲି, ମୋ ପାଖରେ ନିଜର କୌଣସି ଟଙ୍କା ନାହିଁ ଗାଡ଼ି ଭଡ଼ା ଦେବା ପାଇଁ। କିନ୍ତୁ ମୋତେ ଏହି ଗାଡ଼ିରେ ଯେପରି ହେଉ କଲିକତା ଯିବାକୁ ହିଁ ହେବ। ତେଣୁ ଆପଣଙ୍କୁ କହି ମୁଁ ଏହି ଗାଡ଼ିରେ ଚଢ଼ି କଲିକତା ଯାଉଛି। ଏବେ ମୋ ପାଖରେ ଭଡ଼ା ନାହିଁ। କିନ୍ତୁ କଲିକତାକୁ ଗଲେ ଟଙ୍କା ସଂଗ୍ରହ କରି ଆଣି ମୁଁ ରେଳଭଡ଼ା ନିଶ୍ଚିତ ଭାବେ ଷ୍ଟେସନରେ ଆସି ଜମା ଦେବି। ଗାର୍ଡ଼ ସାହେବ କହିଲେ– ଗାଡ଼ିରେ ଏପରି କିଛି ଆଇନ ନାହିଁ ଯେ ବିନା ଭଡ଼ାରେ ଆପଣ ଯିବେ ଏବଂ ପଛରେ ଆଣି ପଇସା ଦେବେ। କାହିଁକି ନା ବିନା

ଭଡ଼ାର ଯାତ୍ରୀ, ସେମାନେ କେତେବେଳେ କେଉଁ ଷ୍ଟେସନରେ ଓହ୍ଲାଇଯିବେ କିଏ ତାହାର ଖବର ରଖୁଛି? ଯେଉଁମାନେ ଟିକଟ କାଟି ନାହାନ୍ତି ତାଙ୍କର destination ବା ଗନ୍ତବ୍ୟସ୍ଥଳ ଜାଣିବାର କୌଣସି ସୁସ୍ପଷ୍ଟ ପନ୍ଥା ନାହିଁ। ତାହାଗି ପାଇଁ କହୁଛି, ଆପଣ ଏହି ଗାଡ଼ିରେ ଯାଆନ୍ତୁ ନାହିଁ। ମୁଁ କହିଲି ମୁଁ ଆପଣଙ୍କ ପାଖରୁ ଯିବାର ଅନୁମତି ମାଗୁ ନାହିଁ। ମୁଁ ଯିବି ନିଶ୍ଚୟ ଏବଂ ଯିବାକୁ ହିଁ ହେବ। କେବଳ ଆପଣଙ୍କୁ inform କରୁଛି। କାହିଁକିନା ବର୍ତ୍ତମାନ ଏହି ଗାଡ଼ିରେ କର୍ତ୍ତୃପକ୍ଷର ପ୍ରତିନିଧି ଆପଣ। ଗାର୍ଡ଼ ସାହେବ କ'ଣ ଭାବିଲେ ଜାଣିନାହିଁ, ମୋତେ କହିଲେ ଆପଣ ଅନ୍ୟ କୌଣସି ଡବାରେ ନ ବସି ମୋ ସାଙ୍ଗରେ ମୋ ଡବାରେ ବସନ୍ତୁ। ଗାଡ଼ି ଛାଡ଼ିବାର ଘଣ୍ଟା ହୋଇଯାଇଛି। ଗାର୍ଡ଼ ସାହେବ ସବୁଜ ନିଶାଣ ଦେଖାଉଛନ୍ତି ଏବଂ ମୁହଁରେ ମୋତେ କହୁଛନ୍ତି, ଉଠି ଆସନ୍ତୁ, ଉଠି ଆସନ୍ତୁ, ଆଉ ଡେରି କରନ୍ତୁ ନାହିଁ। ମୁଁ ଉଠି ବସିଲି ତାଙ୍କର କାମରାରେ। ଟ୍ରେନ୍ ଛାଡ଼ିଦେଲା, ଚାଲିବାକୁ ଆରମ୍ଭ କଲା କଲିକତା ଉଦ୍ଦେଶ୍ୟରେ। ଗାର୍ଡ଼ ସାହେବ ତାଙ୍କ କାମ ସାରି ଉତ୍ସୁକ ଭାବରେ ମୋତେ ପଚାରିଲେ, କ'ଣ ଆପଣଙ୍କର ହୋଇଛି? କଲିକତା ଯିବାର କ'ଣ ଏତେ ପ୍ରୟୋଜନ ପଡ଼ିଛି ଯେ ଯେପରି ହେଉ ଆପଣଙ୍କୁ ଯିବାକୁ ହିଁ ହେବ? ମୁଁ ଧୀରେ ଧୀରେ ତାଙ୍କ ପାଖରେ ଶ୍ରୀ ଶ୍ରୀ ଠାକୁରଙ୍କର କଥା କହିବାକୁ ଆରମ୍ଭ କଲି, ଆଉ ତା' ସଙ୍ଗେ ସଙ୍ଗେ ମୋର କ୍ଷୁଦ୍ର ଜୀବନର କ୍ଷୁଦ୍ର ଇତିହାସ ଏବଂ ଆଜି ସକାଳେ ଶ୍ରୀଗୁରୁର ଦେଇଥିବା ମହା ଆଶୀର୍ବାଦ ପୂର୍ଣ୍ଣ ଆଦେଶର କଥା ମଧ୍ୟ କହିଲି। ଏ ସବୁ କଥା ଚାଲୁଁ ଚାଲୁଁ ଟ୍ରେନ୍ ଗୋଟିଏ ପରେ ଗୋଟିଏ ଷ୍ଟେସନରେ ଆସି କ୍ଷଣିକ ପାଇଁ ବନ୍ଦ ରହି ପୁନରାୟ ଲାଗିବାକୁ ଲାଗିଛି। ଗାର୍ଡ଼ ସାହେବ ମଧ୍ୟ ତାଙ୍କର duty ଯଥା– ସତ୍ୱର ସମ୍ପାଦନ କରି ପୁନରାୟ ଆସି ଆଗ୍ରହ ସହକାରେ ଜାଣିବାକୁ ଚାହୁଁଛନ୍ତି, ଶ୍ରୀ ଶ୍ରୀ ଠାକୁରଙ୍କର କଥା। ତାଙ୍କର headquarters ମଧୁପୁର। ବହୁବାର ବହୁଲୋକଙ୍କ ପାଖରୁ ଶ୍ରୀ ଶ୍ରୀ ଠାକୁରଙ୍କ ନାମ ଶୁଣିଛନ୍ତି ବୋଲି କହିଲେ, ତା' ସହ କହିଲେ– କିନ୍ତୁ ଏତେ ନିକଟରେ ରହି ମୁଁ କେତେବେଳେ ହେଲେ କଳ୍ପନା କରିପାରି ନାହିଁ ଯେ ଶ୍ରୀଶ୍ରୀ ଠାକୁର ସ୍ୱୟଂ ଭଗବାନ। କିନ୍ତୁ ଆପଣ ଯାହା କହୁଛନ୍ତି, ତାହା ଯଦି ସତ୍ୟ ହୁଏ ଯାହାକି ମୋର ଅନ୍ତର କହୁଛି ନିଶ୍ଚୟ ସତ୍ୟ, ତାହେଲେ ସେ କି ବିରାଟ! ଏହି ବିରାଟ ମହାପୁରୁଷଙ୍କ ମୋ ଜୀବନରେ କିପରି ପାଇବି ତା'ର ବ୍ୟବସ୍ଥା କରି ଦିଅନ୍ତୁ।

ମୁଁ ପରବର୍ତ୍ତୀ ଗାଡ଼ିରେ ଫେରି ନିଶ୍ଚୟ ବୈଦ୍ୟନାଥ ଦେଓଘର ଯାଇ ଶ୍ରୀ ଶ୍ରୀ ଠାକୁରଙ୍କୁ ଦର୍ଶନ କରିବି। ତାଙ୍କର ଏହି ଉଚ୍ଛ୍ୱସିତ ଭାବ ଦେଖି ମୋର ଖୁବ୍ ଭଲ ଲାଗିଲା। ଇଷ୍ଟ ପ୍ରସଙ୍ଗ ତଥା ଭଗବତ୍ ଆଲୋଚନା କରୁ କରୁ ଅତି ପ୍ରତ୍ୟୁଷରେ ଆସି ପ୍ରାୟ ଭୋର ୫ଟା ହାଓଡ଼ା ଷ୍ଟେସନରେ ଉପସ୍ଥିତ ହେଲି। ଗାର୍ଡ଼ ସାହେବ ମୋତେ କହିଲେ– ଆପଣ ଅପେକ୍ଷା କରନ୍ତୁ, ମୋର କରଣୀୟ କର୍ମଗୁଡ଼ିକ ସାରି ଆପଣଙ୍କୁ ନେଇ ବାହାରେ ଛାଡ଼ି ଦେଇ ଆସିବି। ମୁଁ କିଛିକ୍ଷଣ ଅପେକ୍ଷା କରିବା ପରେ ସବୁ କର୍ମ ସାରି ଗାର୍ଡ଼ ସାହେବ ମୋତେ ଆଣି ପ୍ଲାଟଫର୍ମ ବାହାରେ ଛାଡ଼ି ଦେଇ ପ୍ରଣାମ କଲେ। ମୁଁ ତାଙ୍କୁ କହିଲି– ଏତ ଦୂର ଯେତେବେଳେ ଆସିଛନ୍ତି ଚାଲନ୍ତୁ ଷ୍ଟେସନ ମାଷ୍ଟର ପାଖକୁ ଯିବା। ଗାଡ଼ିରେ ଆପଣ ଥିଲେ ରେଳ ଦାୟିତ୍ୱରେ। ମୋତେ ନେଇଆସିଲେ ଏତେ ଦୂର, କିନ୍ତୁ ଏହି ହାଓଡ଼ା ଷ୍ଟେସନର ସବୁ କିଛି ଭାର ଷ୍ଟେସନମାଷ୍ଟରଙ୍କ ଉପରେ। ତେଣୁ ତାଙ୍କୁ ଦେଖାକରି ମୁଁ କହିଯିବି ମୋର ବିନା ଟିକଟରେ ଟ୍ରେନ୍‌ରେ ଆସିବାର କଥା ଏବଂ ମୋର ଠିକଣା ଦେଇଯିବି। ଆଉ ମୋ ହାତରେ ଟଙ୍କା ଆସିବା ସାଥେ ସାଥେ ମୁଁ ଆସି ରେଳକର୍ତ୍ତୃପକ୍ଷଙ୍କୁ ଟଙ୍କା ଦେଇଦେବି। ଗାର୍ଡ଼ ସାହେବ କହିଲେ– କିଛି ପ୍ରୟୋଜନ ନାହିଁ, ଷ୍ଟେସନମାଷ୍ଟର ପଞ୍ଜାବୀ ଶିଖ୍ ଆପଣଙ୍କର କଥା ଶୁଣିପାରେ, ନ ଶୁଣିପାରେ, ମୁଁ ଅନୁରୋଧ କରୁଛି ଆପଣ ଯା'ନ୍ତୁ, ଆଉ ଏକାନ୍ତ ଆପଣ ଯଦି ଗାଡ଼ି ଭଡ଼ା ଦେବାକୁ ଚାହାଁନ୍ତି ତାହହେଲେ ମୁଁ ସେହି ଟଙ୍କା ଦେଇ ଦେଉଛି। ମୁଁ କହିଲି– ନା, ତା' ହୋଇ ପାରିବ ନାହିଁ। ଅବିକା ମୁଁ ଟ୍ରେନ୍ ଛାଡ଼ି ଷ୍ଟେସନରେ ରହିଛି। ଏହାର କର୍ତ୍ତୃପକ୍ଷ ସାଙ୍ଗରେ ଦେଖା କରିବା ଏକାନ୍ତ ଉଚିତ ବୋଲି ବିବେଚନା କରୁଛି। ଯାହା କିଛି ହେଉନା କାହିଁକି, ମୁଁ ତାଙ୍କ ସାଙ୍ଗରେ ଦେଖା କରିବି। ଗାର୍ଡ଼ ସାହେବ କହିଲେ– ତା' ହେଲେ ଚାଲନ୍ତୁ ମୁଁ ଆପଣଙ୍କ ସାଙ୍ଗରେ ଯିବି ଷ୍ଟେସନମାଷ୍ଟର ପାଖକୁ। ସେ ମୋତେ ସାଙ୍ଗରେ ନେଇ ଉପରେ ଷ୍ଟେସନମାଷ୍ଟରଙ୍କ ଘରକୁ ଗଲେ ଏବଂ ମୋ ପୂର୍ବରୁ ଯାଇ ଷ୍ଟେସନମାଷ୍ଟରଙ୍କ ଯୋଡ଼ି ମୋତେ ନମସ୍କାର ଜଣାଇଲେ। ମୁଁ ମଧ୍ୟ ପ୍ରତ୍ୟାଭିବାଦନ ଜଣାଇ କହିଲି ମୋର ବିନା ଟିକଟରେ ଆସିବାର କାରଣ ସମୂହ। ସେ ଶିଖ ଧର୍ମାବଲମ୍ବୀ ସର୍ଦ୍ଦାର ସାହେବ। ମୋତେ କହିଲେ– ମୁଁ ଆପଣଙ୍କ କଥା ସବୁ ଶୁଣିଛି ଗାର୍ଡ଼ ସାହେବଙ୍କ ପାଖରୁ। ଆପଣ ଯା'ନ୍ତୁ କୌଣସି ଟଙ୍କା ଦେବାକୁ ହେବ ନାହିଁ। ରେଳକମ୍ପାନୀରେ ସନ୍ତ, ସାଧୁମାନଙ୍କତ ପାଇଁ ବିନା ପଇସାରେ ଯିବାର ଗୋଟିଏ ବ୍ୟବସ୍ଥା ରହିଛି। ଅବଶ୍ୟ ସେହି ସୁଯୋଗ ନେଇ ଅନେକ ଦୁଷ୍ଟ

ଲୋକ; ଗେରୁଆ, ଚିଟା ଚୈତନ୍ୟ କାଟି ଝୁଲାଝୁଲି ନେଇ ଚଲାବୁଲା କରନ୍ତି। ସତ୍ୟକାର ସାଧୁଙ୍କୁ ଚିହ୍ନିବା ସାଧାରଣ ଲୋକ ପକ୍ଷରେ କଠିନ। ଆପଣଙ୍କର ସେପରି କିଛି ବେଶଭୂଷା ନ ଥିଲେ ମଧ୍ୟ ଗାର୍ଡ଼ ସାହେବ Mr. Ghose ଙ୍କ ପାଖରୁ ଯାହା ଜାଣିଲି ତାହାର କିଛି ମାତ୍ର ସତ୍ୟ ହେଲେ ଆପଣ ବିନା ଟିକଟରେ ରେଳ ଭ୍ରମଣ କରିବାର ଅଧିକାରୀ ଏବଂ ଆପଣ ଯେ ମୋ ପାଖକୁ ଆସିଛନ୍ତି ତାହାହିଁ ପ୍ରମାଣ କରେ ଆପଣଙ୍କର ସତ୍ୟତା ଓ ସାଧୁତା, ଷ୍ଟେସନମାଷ୍ଟରଙ୍କ ସାଙ୍ଗରେ କିଛି ସମୟ କଥାବାର୍ତ୍ତା କରି ବାହାରି ଆସିଲି। ଷ୍ଟେସନ ବାହାରେ ଆସି ଚିନ୍ତା କରୁଛି– ଆଉ କିଛି ସମୟ ପରେ ୨୪ ଘଣ୍ଟା ପାର ହୋଇଯିବ। ଠାକୁରଙ୍କ ପାଖରୁ ମୁଁ ବହୁ ଦୂରକୁ ଚାଲି ଆସିଛି। କେତେବେଳେ ଓ କେତେ ସମୟ ପରେ ପୂର୍ଣ୍ଣ ହେବ ମୋର ବାସନା ମୁଁ ଜାଣେ ନାହିଁ। ଠାକୁରଙ୍କୁ ସ୍ମରଣ କରି କହିଲି– ହେ ପ୍ରଭୁ! ପଥ ଦେଖାଅ। ହଠାତ୍ ମନକୁ ଭାସି ଆସିଲା ଜଣକର ମୁହଁ, ଶ୍ରୀଯୁକ୍ତ ଦାଶରଥି ମୁଖାର୍ଜୀ। ବର୍ଷକ ପୂର୍ବେ ଶ୍ରୀ ଶ୍ରୀ ଠାକୁରଙ୍କର ସାନିଧ୍ୟରେ ତାଙ୍କ ସାଙ୍ଗରେ ପରିଚୟ ହୋଇଥିଲା ମୋର। ଅପୂର୍ବ ସୌମ୍ୟ ମୂର୍ତ୍ତି, ପକ୍ୱକେଶ, ଦୀର୍ଘକାୟ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ସାଧକ ପୁରୁଷ। ମୋତେ ବାରମ୍ବାର ଅନୁରୋଧ କରିଥିଲେ କଲିକତା ଆସିଲେ ତାଙ୍କ ଘରକୁ ଯାଇ ଦେଖା କରିବା ପାଇଁ। ମନେ ପଡ଼ିଗଲା ସେହି ଠିକଣା– ହାଓଡ଼ା ସହରର ଶିବପୁରରେ ତାଙ୍କ ଘର। ମନ ଭିତରେ ତାଙ୍କରି କଥା ଭାସିଆସିବା ସଙ୍ଗେ ସଙ୍ଗେ କାଳ ବିଳମ୍ବ ନ କରି ଶିବପୁରଗାମୀ ଟ୍ରାମ୍‌ରେ ଉଠିଲି। ପୁରୁଣା ୩ ପଇସା (ବର୍ତ୍ତମାନ ୫ ପଇସା) ର ଗୋଟିଏ ଟିକଟ କାଟି ଶିବପୁର ଟ୍ରାମ ଡିପୋରେ ଓହ୍ଲାଇ ଲୋକଙ୍କୁ ପଚାରି ପଚାରି ଗୋଟିଏ ଛକରେ ଆସି ଛିଡ଼ା ହେଲି। ଏ ଆଡ଼କୁ ମୁଁ କେବେ ଆସି ନାହିଁ। ଚିନ୍ତା କରୁଛି କୈପୁକୁର ଲେନ୍‌ର ଠିକଣା କେଉଁଠି ହେବ। ଏହି ସମୟରେ ଜଣେ ଲୋକ ଆସି ମୋତେ ପଚାରିଲେ ଆପଣ କାହାକୁ ଖୋଜୁଛନ୍ତି? ଦାଶୁରଥି ମୁଖାର୍ଜୀଙ୍କୁ କି? ମୁଁ ହଁ କହିଲି। ସେ ମୋତେ ପଥ ଦେଖାଇ ନେଇ ଉପସ୍ଥିତ କରାଇଲେ ମୁଁ ଯାହାଙ୍କୁ ଖୋଜୁଛି ତାଙ୍କର ସମ୍ମୁଖରେ। ଦାଶୁଦା, (ଦାଶରଥି ମୁଖାର୍ଜୀ) ମୋର ଇଷ୍ଟଭ୍ରାତା ମୋତେ ଦୂରରୁ ଦେଖି ତାଙ୍କର ଚାକରକୁ ପଠାଇ ଦେଇଛନ୍ତି ନେଇ ଆସିବାପାଇଁ। ବହୁଦିନ ପରେ ଦେଖା, ବିଶେଷ କରି ଶ୍ରୀ ଶ୍ରୀ ଠାକୁରଙ୍କ ସମ୍ମୁଖରେ ପରିଚିତ ହୋଇଥିବା ମୋତେ, ତାଙ୍କର ଗୁରୁଭାଇଙ୍କୁ ଦେଖି ସେ ଉତ୍‌ଫୁଲ୍ଲ ହୋଇ ଉଠିଲେ। ଅତି ଯତ୍ନ ସହକାରେ ମୋତେ ବସାଇଲେ। ହାତ ମୁହଁ ଧୋଇବାପାଇଁ ପାଣି

ଇତ୍ୟାଦି ଚାକର ଦ୍ୱାରା ଆଣି ଦେଲେ। ପ୍ରାରମ୍ଭିକ କର୍ମ ସରିବା ପରେ ମୋତେ ପଚାରିଲେ—କୁହନ୍ତୁ, ଆଶ୍ରମ ଛାଡ଼ି ଠାକୁରଙ୍କ ପାଖରୁ କେବେ କଲିକତା ଆସିଛନ୍ତି? ମୁଁ କହିଲି—ଆଜି ଏହି ବର୍ତ୍ତମାନ ମୁଁ ଆସୁଛି ଆଶ୍ରମରୁ, ଟ୍ରେନ୍‌ରୁ ଓହ୍ଲାଇ ପ୍ରଥମେ ଏଇଠି ଆସୁଛି। ଦାଶୁଦା' ବିସ୍ମିତ ହୋଇ କହିଲେ— ଆପଣଙ୍କର ବିଛଣା ଇତ୍ୟାଦି କାହିଁ? ମୁଁ ଆପୂର୍ବକ ସମସ୍ତ ଘଟଣା ତାଙ୍କୁ କହିଲି, ସାଙ୍ଗରେ କିଛି ଆଣିବାର ପ୍ରଶ୍ନ ଉଠିନାହିଁ। ମୁଁ ଯଥାସମ୍ଭବ ସତ୍ୱର ଏହି ୨୪୦ ଟଙ୍କା ନେଇ ଫେରିଯିବି। ମୁଁ ଆହୁରି ମୋର ମନେ ମନେ ସଂକଳ୍ପ କଥା ଜଣାଇଲି, କହିଲି— ମୁଁ ସଂକଳ୍ପ କରିଛି ଭାତଖାଇବା ପୂର୍ବରୁ ଠାକୁରଙ୍କ ନିକଟରେ ଏହା ନେଇ ଉପସ୍ଥିତ କରିବି। ତେଣୁ ଏହି ମୁହୂର୍ତ୍ତରେ ମୋତେ ବାହାରି ଯିବାକୁ ହେବ କଲିକତା, ସଂଗ୍ରହ କରିବାକୁ ହେବ ଏହି ଟଙ୍କା, କିନ୍ତୁ ଟ୍ରାମ୍, ବସ୍ ବା ଟେକ୍‌ସିରେ ଚଲାବୁଲା କରିବା ପାଇଁ ମୋ ପାଖରେ ପଇସା ନାହିଁ। ଶ୍ରୀ ଶ୍ରୀ ଠାକୁରଙ୍କ ଉଦ୍ଦେଶ୍ୟରେ ଭିକ୍ଷା କରି ଯାହା ପାଇଛି ଏବଂ ଗାର୍ଡ଼ ସାହେବ ମଧ୍ୟ କଛି ଟଙ୍କା ଦେଇଛନ୍ତି ଯାହାକି ସବୁ ମିଶି ପନ୍ଦର ଟଙ୍କାରୁ ଅଧିକ ହେବ ନାହିଁ। ଶ୍ରୀ ଶ୍ରୀ ଠାକୁରଙ୍କର ଉଦ୍ଦେଶ୍ୟରେ ଉତ୍ସର୍ଗିତ ସେହି ଟଙ୍କା ମୁଁ ଖର୍ଚ୍ଚ କରି ପାରିବି ନାହିଁ। ଆପଣ ମୋତେ ୫/୭ ଟଙ୍କା ଯାହା ପାରିବେ ସାହାଯ୍ୟ କରନ୍ତୁ। ମୁଁ ସେଇ ଟଙ୍କା ନେଇ କଲିକତାର ଚାରିଆଡ଼େ ବୁଲି ଇଷ୍ଟଭ୍ରାତାମାନଙ୍କ ପାଖରୁ ଭିକ୍ଷାକରି ମୋର ପ୍ରୟୋଜନୀୟ ଅର୍ଘ୍ୟ ସଂଗ୍ରହ କରିବି। ଦାଶୁଦା' କହିଲେ— ହଁ ଦେଉଛି, କିନ୍ତୁ ତା' ପୂର୍ବେ ଆପଣ କିଛି ଜଳଖିଆ କରନ୍ତୁ, କାଲିଠାରୁ ଖାଇ ନାହାନ୍ତି। ମୁଁ କହିଲି—ମୁଁ ତ ପୂର୍ବେ ହିଁ ଆପଣଙ୍କୁ ଜଣାଇଛି ଯେ ମୁଁ ମନେ ମନେ ସଂକଳ୍ପ କରିଛି ଭାତ ଖାଇବା ପୂର୍ବରୁ ଏ ଟଙ୍କା ନେଇ ଠାକୁରଙ୍କୁ ଦେବି। କିନ୍ତୁ ଭାତ ଖାଇବା ସମୟ ଯଥା—କାଲି ଦ୍ୱିପ୍ରହର ବିତି ଯାଇଛି, ରାତ୍ରି ବିତି ଯାଇଛି, ଏ ପର୍ଯ୍ୟନ୍ତ ମୁଁ କିଛି ବ୍ୟବସ୍ଥା କରିପାରିଲି ନାହିଁ। ତେଣୁ କୌଣସି ପ୍ରକାରେ ମୁଁ ଭାତ ଖାଇବି ନାହିଁ, କିଛି ଜଳଖିଆ ମଧ୍ୟ କରିବି ନାହିଁ, ଅର୍ଥ ସଂଗ୍ରହ ନ ହେବା ପର୍ଯ୍ୟନ୍ତ। ଏହା ମୋର ଅନ୍ତରର ବାସନା। ଆପଣଙ୍କର ସଶ୍ରଦ୍ଧ ଖାଇବାପାଇଁ ଅନୁରୋଧ ତାହା ଉପେକ୍ଷା କରିବାକୁ ମୋତେ ବାଧୁଛି। ତଥାପି ମୋତେ ଆପଣ କ୍ଷମା ଦିଅନ୍ତୁ। ମୁଁ କିଛି ଖାଇ ପାରିବି ନାହିଁ। ସମ୍ଭବ ହେଲେ ମୋତେ କଲିକତା ବୁଲିବା ପାଇଁ କିଛି ଅର୍ଥ ସାହାଯ୍ୟ କରନ୍ତୁ। ଦାଶୁଦା' ଆଉ କିଛି ନ କହି ଘର ଭିତରକୁ ଚାଲିଗଲେ। କ୍ଷଣିକତ ପରେ ଫେରି ଆସି ମୋ ହାତରେ ବଢ଼ାଇ ଦେଲେ ବହୁଗୁଡ଼ିଏ ଦଶଟଙ୍କିଆ ନୋଟ। ଗଣତି କରି ଦେଖିଲି ୨୪୦ ଟଙ୍କା। ସ୍ତମ୍ଭିତ ହୋଇ ଅନାଇ ରହିଲି ସେହି ପକ୍ୱକେଶ ସୌମ୍ୟ ମୂର୍ତ୍ତି ଆଡୁକା।

ଦାଶୁଦା' ମୋର ଏହି ଅପ୍ରତ୍ୟାଶିତ ପ୍ରାପ୍ତି ଓ ତା' ସହିତ ଅବାକ୍ ହୋଇଥିବା ଭାବଟିକୁ ଦେଖି କହିଲେ– ରଖନ୍ତୁ, ଶ୍ରୀ ଶ୍ରୀ ଠାକୁର ଦୟାକରି ମୋ ପାଖକୁ ଆପଣଙ୍କୁ ପଠାଇଛନ୍ତି। ଆପଣଙ୍କୁ ନୁହେଁ, ମୋର ମନେ ହେଉଛି ସ୍ୱୟଂ ଶ୍ରୀ ଶ୍ରୀ ଠାକୁର ଦୟାକରି ଆପଣଙ୍କ ମାଧ୍ୟମରେ ମୋତେ ଆଶୀର୍ବାଦ କରୁଛନ୍ତି। ମୋର ଏହି ସାମାନ୍ୟ ଅର୍ଥ ଗ୍ରହଣ କରି ମୋତେ ଧନ୍ୟ କରୁଛନ୍ତି। ଆପଣ ଜାଣି ରଖନ୍ତୁ–ମୁଁ ଆପଣଙ୍କ କଥା ଶୁଣି ଆପଣଙ୍କୁ ଦେଇନାହିଁ, ମୋର ଅନ୍ତର ଭିତରୁ କେହି ଯେପରି କହି ଉଠୁଛି– ଦିଅ, ଦିଅ। ଏଇ ସେହି ଶୁଭକ୍ଷଣ, ଶୁଭ ମୁହୂର୍ତ୍ତ। ଏ ସମୟକୁ ହରାଅ ନାହିଁ। ଇଷ୍ଟ ଆଶୀର୍ବାଦ ଠାରୁ ବଞ୍ଚିତ ହୁଅ ନାହିଁ। ସେଥିପାଇଁ ମୁଁ ଦେଲି। ଦୟାକରି ଆପଣ ଗ୍ରହଣ କରନ୍ତୁ। ଆପଣଙ୍କ ସଂକଳ୍ପ ସିଦ୍ଧି ହେଲା, ଅର୍ଥ ସଂଗ୍ରହ ହେଲା। ଭାତ ନ ଖାଇଲେ ମଧ୍ୟ କିଛି ଛେନାର ଜଳଖିଆ ଗ୍ରହଣ କରନ୍ତୁ। ମୁଁ ସେହି ସାଧକର ଅନୁରୋଧକୁ ଉପେକ୍ଷା କରି ପାରିଲି ନାହିଁ। ମୋତେ ଯଥେଷ୍ଟ ପରିମାଣର ସନ୍ଦେଶ ଆଣି ଦେଲେ। ମୁଁ ତୃପ୍ତି ସହକାରେ ତାକୁ ଖାଇଲି। କିନ୍ତୁ ମନ ଛୁଟି ଚାଲିଛି ଦେଓଘର ଆଶ୍ରମ ଉଦ୍ଦେଶ୍ୟରେ, ଯେଉଁଠି ମୋର ପଥ ଚାହିଁ ବସିଛନ୍ତି ମୋର ଚିରସୁନ୍ଦର ଅନ୍ତର୍ଯ୍ୟାମୀ ଶ୍ରୀ ଶ୍ରୀ ଠାକୁର। ମୁଁ କହିଲି– ଦାଶୁଦା' ମୋ ପାଖରେ ତ ପନ୍ଦର ଟଙ୍କା ଅଛି। ଆଉ ଏହି ୨୪୦ ଟଙ୍କା ମୋର ପ୍ରୟୋଜନ ନାହିଁ, ୨୨୫ ଟଙ୍କା ହେଲେ ହେବ। ଦାଶୁଦା' କହିଲେ– ହଁ, ହଁ, ୨୨୫ ଟଙ୍କା ହେଲେ ହେବ ମୁଁ ଜାଣିଛି। ତଥାପି ମୁଁ ୨୪୦ ଟଙ୍କା ଦେଲି। ଆପଣଙ୍କ ପ୍ରୟୋଜନରେ ଖର୍ଚ୍ଚ କରିବେ। ମୁଁ ହାଓଡ଼ା ଷ୍ଟେସନକୁ ଯାଇ ଦିନ ୧୦ଟା ତୋଫାନ ଏକ୍ସପ୍ରେସ୍ ଧରି ଦେଓଘର ଯିବି, ଏ କଥା ବ୍ୟକ୍ତ କଲି ଦାଶୁଦା' ଆଗରେ। ଦାଶୁଦା' ଏହା ଶୁଣି ପ୍ରସ୍ତୁତ ହୋଇ ତାଙ୍କର office ଉଦ୍ଦେଶ୍ୟରେ ବାହାରି ପଡ଼ିଲେ ଓ ତାଙ୍କର ମଟର ଗାଡ଼ିରେ ଆଣି ମୋତେ ହାଓଡ଼ା ଷ୍ଟେସନରେ ଛାଡ଼ିଦେଲେ ଦିନ ୯ଟା ୩୦ ମିନିଟରେ ଏବଂ ନିଜେ ଯାଇ ମୋର ଟିକଟ କାଟିଆଣି ଦେଲେ ନିଜ ହାତରୁ ପଇସା ଦେଇ। ମୋ ହାତରେ ଟିକଟ ଦେବା ପରେ ମୁଁ ଦେଖିଲି ସେଥିରେ ଦୁଇଖଣ୍ଡ ଟିକଟ ରହିଛି। ଦୁଇଖଣ୍ଡ ଟିକଟ ଦେଖି ମୁଁ ବିସ୍ମିତ ହୋଇ ତାଙ୍କୁ ପଚାରିଲି– ଦୁଇଖଣ୍ଡ କାହିଁକି? ଦାଶୁଦା' କହିଲେ, ଆପଣ ଆସିଲାବେଳେ ବିନା ଟିକଟରେ ଆସିଛନ୍ତି ବୋଲି ଆପଣଙ୍କ ମନରେ ଦୁଃଖ ହୋଇଥିଲା। ସଂକଳ୍ପ କରିଥିଲେ ରେଳକର୍ତ୍ତୃପକ୍ଷଙ୍କୁ ସେ ଟଙ୍କା ଫେରାଇ ଦେବେ। ଗାର୍ଡ଼ ଓ ଷ୍ଟେସନମାଷ୍ଟର ଯାହା କିଛି କୁହନ୍ତୁ ନା କାହିଁକି ଆପଣଙ୍କ ମନର ସେ କଳ୍ପନା ଏକାନ୍ତ ପ୍ରୟୋଜନୀୟ ବୋଲି

ବୋଧ କରି ମୁଁ ଅତିରିକ୍ତ ଆଉ ଖଣ୍ଡିଏ ଟିକଟ କାଟି ରେଲ କର୍ତ୍ତୃପକ୍ଷଙ୍କୁ ଆପଣଙ୍କର ଆସିବାର ଭଡ଼ା ବାବଦ ଟଙ୍କା ଦେଇଦେଲି। ଦାଶୁଦା'ର ଏହି କଥା ଶୁଣି ଶ୍ରଦ୍ଧା ଓ କୃତଜ୍ଞତାରେ ମୋର ଅନ୍ତର ଭରି ଉଠିଲା। ଆଉ ମନେ ପଡ଼ିଲା ଠାକୁରଙ୍କର କଥା। ତାହାରି ସଙ୍ଗେ ସଙ୍ଗେ ଏ କଥା ମଧ୍ୟ ମନେ ପଡ଼ିଲା— ଏ ଦୁନିଆରେ କିଏ କୁଆଡ଼େ ଲୁଚି ନିଷ୍ଠା ସହକାରେ ସାଧନ ଭଜନ କରୁଛି, ଆଉ ଶ୍ରୀ ଶ୍ରୀ ଠାକୁର ସେମାନଙ୍କୁ ସର୍ବାବସ୍ଥାରେ ସାହାଯ୍ୟ କରି ଚାଲିଛନ୍ତି, ଏହା ଜାଣି ନଥିଲି, ବୁଝି ନ ଥିଲି। ଶ୍ରୀ ଶ୍ରୀ ଠାକୁର ଦେଖାଇ ଦେଲେ ଆହୁରି ଗୋଟିଏ ନୂତନ ଦୃଶ୍ୟ ଯାହା ମୋତେ ସାଧନା ପଥରେ ଆଗେଇବାକୁ ସାହାଯ୍ୟ କଲେ। ଠାକୁରଙ୍କୁ ସ୍ମରଣ କରି ଦୁଇଜଣ ପରସ୍ପରଙ୍କୁ 'ଜୟଗୁରୁ' ସମ୍ଭାଷଣ କରି ଆନତ ହୋଇ ପ୍ରଣାମ କଲୁଁ। ଦାଶୁଦା' ମୋତେ କୁଣ୍ଢାଇ ପାକାଇ ଆଲିଙ୍ଗନବଦ୍ଧ ଅବସ୍ଥାରେ କହିଲେ— ଦାଦା', ମୋତେ ଭୁଲିବେ ନାହିଁ। ଘର ସଂସାର ଓ ଜଞ୍ଜାଳ ନେଇ ବୁଡ଼ି ରହିଛି। ଆପଣ ମୁକ୍ତ ପୁରୁଷ। ସବୁ ରହିବା ସତ୍ତ୍ୱେ କେହି ଆପଣଙ୍କୁ ଆବଦ୍ଧ କରି ରଖି ପାରି ନାହିଁ। ମୁଁ ସ୍ତମ୍ଭିତ ହେଲି ଆପଣଙ୍କର ସଂକଳ୍ପ ଓ ନିଷ୍ଠା ଦେଖି। ଅପୂର୍ବ ମାନସିକ ବଳ ଆପଣଙ୍କର। ଆଉ ଏହି ବଳ ପାଇବାର ଅଧିକାର ହୋଇଛନ୍ତି ଶ୍ରୀଶ୍ରୀ ଠାକୁରଙ୍କର ଦୟାରେ। ଦେଓଘରରେ ରହି ନିୟମିତ ଦୟାକରି ମୋତେ ଚିଠି ଦେବେ, ଆଉ ଜଣାଇବେ ଶ୍ରୀ ଶ୍ରୀ ଠାକୁର କେତେବେଳେ କ'ଣ କହୁଛନ୍ତି। ତାଙ୍କର ସେହି ଅମୃତସମ କଥା ଚିଠି ମାଧ୍ୟମରେ ଜଣାଇବାକୁ ଭୁଲିବେ ନାହିଁ। ହଠାତ୍ ଲକ୍ଷ କଲି ଦାଶୁଦା' ଆହୁରି କିଛି ଟଙ୍କା ମୋର ଛାତି ପକେଟରେ ଦେଇଛନ୍ତି ଆଲିଙ୍ଗନ କରିବା ସମୟରେ। ମୁଁ କହିଲି— ଦାଶୁଦା' ଏତେ ଟଙ୍କା କାହିଁକି ଦେଉଛନ୍ତି? ଟଙ୍କା ପାଖରେ ନ ରହିଲେ କିପରି ଚାଲିବାକୁ ହୁଏ ଠାକୁର ତାହା ମୋତେ ଶିଖାଇଛନ୍ତି। ଅବିକା ପାଖରେ ଟଙ୍କା ରହିଲେ ଅଡୁଆ ଲାଗୁଛି। ପୁଣି ପୂର୍ବ ଜୀବନର କଥା ମନକୁ ଆସୁଛି। ମନେହୁଏ ସେ ଯେପରି ହାତ ଠାରି ଡାକୁଛି। ଦାଶୁଦା' କହିଲେ—ନା, ନା, ଏସବୁ ଆଉ ଆପଣଙ୍କୁ କିଛି କରି ପାରିବ ନାହିଁ। ସ୍ୱୟଂ ମାଲିକ ଆପଣଙ୍କ ହାତ ଧରିଛନ୍ତି। ଆଉ ଚିନ୍ତା ନାହିଁ, ଏହି ଟଙ୍କା ମୁଁ ଦେଇ ନାହିଁ, ସକାଳେ ଯେଉଁ କଥା କହିଥିଲି—କିଏ ଯେପରି ମୋର ଭିତରୁ ଜୋର କରି ଟଙ୍କା ଦିଆଁ କରାଉଛନ୍ତି। ଏଥିରେ ମୋର ହାତ ନାହିଁ। ଆଉ ଏହା ଦେବାକୁ ମୋତେ ବହୁତ ଭଲ ଲାଗୁଛି। ଦାଶୁଦା'ଙ୍କୁ ବିଦାୟ ଜଣାଇ ଆସି ଟ୍ରେନ୍‌ରେ ବସିଲି। ସକାଳ ୬ଟା୩୦ରୁ ଦିନ ୯ଟା୩୦, ଏହି ତିନି ଘଣ୍ଟା ଭିତରେ

ଇଷ୍ଟଭ୍ରାତା ଦାଶୁଦା' ପରମ ଆତ୍ମୀୟ ହୋଇ ଉଠିଲେ, ତାଙ୍କୁ ଛାଡ଼ିଯିବା ସମୟରେ ଅନ୍ତର ଭିତରେ ବେଦନା ଲାଗୁଛି। ମନେ ହେଉଛି ଏ ମୋର ପରମ ଆତ୍ମୀୟ। ବହୁ ଦିନର ବହୁ ଜନ୍ମର ଏହି ଆତ୍ମୀୟତା। କିନ୍ତୁ ମନ ଚଞ୍ଚଳ ହୋଇ ଉଠିଛି, କେତେ ଜଲଦି ଯାଇ ପହଞ୍ଚିବି ଠାକୁରଙ୍କ ନିକଟେ। ତୋଫାନ ଏକ୍ସପ୍ରେସ୍ ଛୁଟି ଚାଲିଛି ଝଡ଼ ତୋଫାନ ପରି। କିନ୍ତୁ ମନ ମୋର ଛୁଟି ଚାଲିଛି ତା'ଠାରୁ ଦ୍ରୁତ ବେଗେ। ଅକ୍ଷମ ଦେହର କି ସାଧ୍ୟ ତା' ସାଙ୍ଗରେ ସମତାଳରେ ଚାଲିପାରେ? ମନ ଯାହା ଚାହୁଁନା କାହିଁକି ଦିନ ୪ଟା ବେଳେ ଯାଇ ଜସିଡ଼ିରେ ପହଞ୍ଚିଲି, ରିକ୍ସାକରି ଆଶ୍ରମ ଉଦ୍ଦେଶ୍ୟରେ ଯିବା ବାଟରେ ଗୁରୁଭ୍ରାତା, ଭଗ୍ନୀ ଯାହା ସଙ୍ଗରେ ଦେଖା ହେଉଛି ସମସ୍ତେ ପଚାରୁଛନ୍ତି ସୁଶୀଳଦା' କୁଆଡ଼େ ଯାଇଥିଲେ? କୁଆଡ଼େ ଯାଇଥିଲେ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି— ମୁଁ କୁଆଡ଼େ ଗଲି କିମ୍ବା ଆସିଲି— ଏହା ନେଇ କେହି କେବେ ମୁଣ୍ଡ ଖେଳାନ୍ତି ନାହିଁ। କିନ୍ତୁ ଆଜି ମନେ ହେଉଛି ସମସ୍ତେ ମୋତେ ଦେଖିବା ପାଇଁ ଯେପରି ଉନ୍ମୁଖ ହୋଇ ରହିଛନ୍ତି। କାରଣ କିଛି ବୁଝି ପାରଲି ନାହିଁ। ରିକ୍ସା ଛିଡ଼ାକରି କାହା ସଙ୍ଗରେ କଥା କହି ସମୟ କଟାଇବାକୁ ମନ ଚାହୁଁ ନାହିଁ, ଆଖି ସାମ୍ନାରେ ଭାସି ଉଠୁଛି ସେହି ସୁନ୍ଦର ମୁହଁଟି। କେତେବେଳେ କରିବି ତାଙ୍କ ଦର୍ଶନ। ଆଶ୍ରମରେ ପଶି ଠାକୁରଙ୍କ ଘର ସମ୍ମୁଖୀନ ହେବା ସାଥେ ସାଥେ ଠାକୁର କହି ଉଠିଲେ ଏଇ ତ ଆସିଛି। କି ଅପୂର୍ବ ସେ କଥା। ଯେପରି ଖୋଜି ଖୋଜି ବହୁ ଖୋଜିବା ପରେ ହଜି ଯାଇଥିବା ସନ୍ତାନଙ୍କୁ ଦେଖି ଉତ୍କଣ୍ଠିତ ପିତା ଉଲ୍ଲସିତ ହୋଇ ଉଠିଲେ। ଏହାରି ସାଥେ ସାଥେ ଠାକୁର ପଚାରିଲେ— କାହିଁ? କାହିଁ? ମାଲ କାହିଁ? ଆଣିଛୁ ତ ପରମପିତାର ଆଶୀର୍ବାଦ? ଦେ, ଜଲଦି ଦେ, ମୋର ଆଉ ଡ଼େରି ସହେ ନା। ମୁଁ ଦୂରରୁ ଠାକୁରଙ୍କୁ ପ୍ରଣାମ ହେଲି ଟଙ୍କା ହାତରେ ଧରି। ନିକଟରେ ଠିଆ ହୋଇଥିବା ପୂଜ୍ୟପାଦ ବଡ଼ଦା'ଙ୍କୁ ଦେଖାଇ ଶ୍ରୀଶ୍ରୀ ଠାକୁର କହିଲେ— ଦେ, ବଡ଼ଖୋକା ହାତକୁ ଦେ। ମୁଁ ଯଥାରୀତି ବଡ଼ଦା' ହାତରେ ତୋଳି ଦେଲି ମୋର ଇଷ୍ଟାର୍ଘ୍ୟ। ସାଙ୍ଗେ ସାଙ୍ଗେ ଶ୍ରୀ ଠାକୁର କହିଲେ— ଯା, ଜଲଦି ଯା, ଦେଖ୍ ଆନନ୍ଦବଜାରରେ ଭାତ ଅଛି କି? ଖାଇଆ, ଖାଇ ପିଇ ଆସିଲେ ସବୁ କଥା ଶୁଣିବି। ମୁଁ ଆନନ୍ଦବଜାରରେ ଯାଇ ଦେଖିଲି ଭାତ ଡାଲି ଅଛି। ହାତ, ଗୋଡ଼ ଧୋଇ ଆନନ୍ଦବଜାରର ପ୍ରସାଦ ପାଇବାକୁ ବସିଲି। ସଙ୍ଗେ ସଙ୍ଗେ ଭାବୁଛି—କି ଅପୂର୍ବ ଠାକୁରଙ୍କର ଲୀଳା, କିଛିମାତ୍ର ନ ପଚାରି ଟଙ୍କା ମାଗି ନେଲେ, କହିଲେ— ମୋର

ଡେରି ସହେନା। ଟଙ୍କା ଦେବା ସାଙ୍ଗେ ସାଙ୍ଗେ ଭାତ ଖାଇବାକୁ ପଠାଇଲେ। ଦିନ ସାଢ଼େ ଚାରିଟା– ପାଞ୍ଚଟା ବେଳେ ଆନନ୍ଦବଜାରରେ ଭାତ ରହିବାର କଥା ନୁହେଁ। ସେଠାରେ ମଧ୍ୟ ଭାତ ଥୁଆ ହୋଇଛି। ଠାକୁର ଯେ କହିଲେ "ମୋର ଡେରି ସହେ ନା" ଏ ଡେରି କି ଡେରି? ୪୪ ଘଣ୍ଟା ବିତି ଯାଇଛି, ମୁଁ ଭାତ ଖାଇନି। ଦାଶୁଦା' ଜୋର କରି କିଛି ସନ୍ଦେଶ ଖୁଆଇଥିଲେ। ଭିତରେ ଭିତରେ ଭୋକ ଲାଗିଛି। ଠାକୁରଙ୍କ ଦୟାରେ ସେ ଭୋକ ଉପଲବ୍ଧି ଭିତରେ ଆସୁ ନ ଥିଲା।

ଶ୍ରୀଶ୍ରୀ ଠାକୁର ମୋତେ ଟଙ୍କା ପାଇଁ ଆଦେଶ କରିବା ସାଙ୍ଗେ ସାଙ୍ଗେ ସେହି ଟଙ୍କା ଆହରଣର ଦୁର୍ଗମ ପଥରେ ସବୁବେଳେ ରହିଛନ୍ତି ମୋର ସାଥେ ସାଥେ। ମୋର ସଙ୍ଗେ ସଙ୍ଗେ ଇଷ୍ଟରୂପେ ମୋ ମଧ୍ୟେ ରହି ସେ ମଧ୍ୟ ଶ୍ରାନ୍ତ କ୍ଳାନ୍ତ ଓ ଉପବାସୀ ହୋଇ ରହିଛନ୍ତି। ଅଭୁକ୍ତ ରହିଛି ତାର ସନ୍ତାନ, ଏହା ଠାକୁର ସହି ପାରୁନାହାନ୍ତି। ତାହାରିପାଇଁ ମୋତେ ଦେଖିବା ସାଙ୍ଗେ ସାଙ୍ଗେ ଠାକୁର କହି ଉଠିଲେ, ଦେ, ଜଲଦି ଦେ, ମୋର ଆଉ ଡେରି ସହେନା। ଅର୍ଥାତ୍ ଆଉ ଏକ ମୁହୂର୍ତ୍ତ ମୋତେ ଅଭୁକ୍ତ ରଖିବାକୁ ଠାକୁର ଚାହୁଁନାହାନ୍ତି। ଅଥଚ ଇଷ୍ଟ ତଥା ମଙ୍ଗଳମୟ ଠାକୁର, ଇଷ୍ଟକର୍ମରେ ମୁଁ ଯେଉଁ ସଂକଳ୍ପ କରିଥିଲି, ଠାକୁରଙ୍କ ଚରଣରେ ଅର୍ଘ୍ୟ ନିବେଦନ ପରେ ଭାତ ଖାଇବି, ମୋର ସେହି ସଂକଳ୍ପ ଯେପରି ଭାଙ୍ଗି ନଯାଏ ତାହାପାଇଁ ଯେତେ କଠୋରତା ଓ ଦୃଢ଼ତା ଅବଲମ୍ବନ କରିବାର ପ୍ରୟୋଜନ, ଠାକୁର ସେ ଭୂମିକା ପାଳନ କରିବାକୁ ବଜ୍ରପରି କଠିନ ହୋଇ ରହିଥିଲେ, ଆଉ ସେହି ଶୁଭ ସଂକଳ୍ପ ପରିପୂର୍ଣ୍ଣ ହେବା ପରେ ପରମଦୟାଳ, ପରମବାନ୍ଧବ, ମୋର ଇଷ୍ଟ ତଥା ଗୁରୁ ମନର ମନୁଷ୍ୟ ବ୍ୟାକୁଳ ହୋଇଉଠିଲେ ମୋର ଅଭୁକ୍ତ ଅବସ୍ଥା ଦେଖି। କାଳବିଳମ୍ବ ନ କରି ପଠାଇଦେଲେ ଆହାର କରିବାପାଇଁ। ସତ୍ୟ ସତ୍ୟ ସେ ମୋ ପାଇଁ ଅପେକ୍ଷା କରି ବସିଥିଲେ ମୋର ମଙ୍ଗଳକୁ ଚାହିଁ। ଆନନ୍ଦବଜାରରୁ ପ୍ରସାଦ ପାଇ ଫେରିଗଲି ଠାକୁରଙ୍କ ପାଖକୁ। ସନ୍ଧ୍ୟା ସମାଗତା, ବହୁତ ଲୋକ ଉପସ୍ଥିତ ହୋଇଛନ୍ତି ଶ୍ରୀଶ୍ରୀ ଠାକୁରଙ୍କୁ ସନ୍ଧ୍ୟା ପ୍ରଣାମ କରିବାପାଇଁ। ଠାକୁର ମୋତେ ଦେଖି କହିଲେ, ଖାଇଛୁ? ମୁଁ ସମ୍ମତି ଜଣାଇଲି। ଶ୍ରୀଶ୍ରୀ ଠାକୁର ତାଙ୍କ ସମ୍ମୁଖରେ ଗୋଟିଏ ସ୍ଥାନ ଦେଖାଇ କହିଲେ ବସ୍। ମୁଁ ପ୍ରଣାମ କରି ବସିଲି। ଠାକୁର କହିଲେ– କହ, କିପରି କ'ଣ କଲୁ। ତୋ ପାଖରେ ତ କିଛି ନଥିଲା। ଏତ ଟଙ୍କା ଆଣିଲୁ କିପରି? ମୁଁ ବିସ୍ତାରିତ ଭାବେ

ସବୁ ଘଟଣା ଠାକୁରଙ୍କୁ କହିଲି। ତାହା ସାଙ୍ଗରେ ଆହୁରି କହିଲି ଠାକୁର! ଦେଓଘର, ଜସିଡ଼ି, ମଧୁପୁରରେ ଲୋକ ଏପରି ସବୁ ବ୍ୟବହାର ଓ କଥା କହୁଥିଲେ ଯାହାକି ମୋର ଅନ୍ତରକୁ କ୍ଷତବିକ୍ଷତ କରୁଥିଲା। ତାପରେ ଟ୍ରେନ୍‌ର ଘଟଣା ମୋର ମନକୁ ଆଣିଦେଲା ଶାନ୍ତିର ପ୍ରଲେପ। କିନ୍ତୁ ଦାଶୁଦା' ପାଖରେ ଉପସ୍ଥିତ ହୋଇ ଦେଖିଲି ଯାହା, ତାହା ମୋର ଜୀବନରେ ଏକ ନୂତନ ଦର୍ଶନ।

ଏତେଗୁଡ଼ିଏ ଟଙ୍କା ମନୁଷ୍ୟ ସାନନ୍ଦେ ସ୍ୱାର୍ଥହୀନ ଭାବରେ ପ୍ରାୟ ଅଚହ୍ନା ଅଜଣା ଜଣେ ଲୋକଙ୍କୁ ଇଷ୍ଟାର୍ଥେ ଦାନ କରିପାରେ, ତାହା ମୋର କଳ୍ପନାତୀତ। ସଂସାରରେ ମନୁଷ୍ୟ ବ୍ୟତିବ୍ୟସ୍ତ ଭାବରେ ପିତାମାତା ସ୍ତ୍ରୀ–ପୁତ୍ର, ବୃତ୍ତି–ପ୍ରବୃତ୍ତି ପଛରେ ଛୁଟି ଚାଲିଛନ୍ତି। ଜୀବନର ଯାହା କିଛି ଆହରଣ, ଯାହାକିଛି ସମ୍ପଦ ସବୁକିଛି ବିସର୍ଜନ ଦେଉଛି ଏହାରି ପଛରେ। ଏହାର ଉର୍ଦ୍ଧ୍ୱେ ଆଉ ଗୋଟିଏ ଜଗତ ଅଛି ଏବଂ ସେ ଜଗତରେ ମଧ୍ୟ ଲୋକ ବିଚରଣ କରୁଛନ୍ତି। ନାମ, ଯଶ, ବୃତ୍ତି, ପ୍ରବୃତ୍ତି, କ୍ଷୁଦ୍ରାସ୍ୱାର୍ଥ ଅଥବା କୌଣସି ପ୍ରାପ୍ତିର ଆଶା ସେ ଜଗତରେ ନାହିଁ। ଏକମାତ୍ର ଅନ୍ତରର ସୁଖ ଯଦି ଇଷ୍ଟାର୍ଥେ କିଛି କର୍ମ କରିପାରେ, ଇଷ୍ଟ ପୂଜାରେ ନିଜକୁ ନିୟୋଜିତ କରିପାରେ। ଏସବୁ କଥା ଆପଣଙ୍କ ପାଖରୁ ପୂର୍ବେ ଶୁଣିଥିଲି, କିନ୍ତୁ ଦେଖି ନଥିଲି ଏହାର ବାସ୍ତବରୂପ। ଆଜି ଦେଖି ଧନ୍ୟ ହେଲି, ଆଉ ସର୍ବୋପରି ଏହି ସବୁକିଛି ଭିତରେ ଆପଣ ରହିଛନ୍ତି, ତାହା ମୁଁ ପ୍ରତି ମୁହୂର୍ତ୍ତରେ ଉପଲବ୍ଧି କରୁଥିଲି। ଆପଣ ଯେ ପ୍ରତି ମୁହୂର୍ତ୍ତରେ ହାତ ଧରି ଧରି ଚଲାଇ ନେଇ ଚାଲୁଥିଲେ, ତାହା ମୁଁ ଜାଣିପାରୁ ଥିଲି ଏବଂ ଆପଣଙ୍କ ସ୍ପର୍ଶ ମୁଁ ଅନୁଭବ କରିପାରୁଥିଲି। ଶ୍ରଦ୍ଧେୟ ଦାଶୁଦା' ମଧ୍ୟ ଏହି କଥା ହିଁ କହୁଥିଲେ, ମୁଁ ଦେଉନାହିଁ, ଶ୍ରୀଶ୍ରୀ ଠାକୁର ଯେପରି ମୋ ଭିତରେ ଆସି ମୋ ଦ୍ୱାରା ଦିଆ କରାଉଛନ୍ତି। ବହୁତ ଲୋକ ଉତ୍ସୁକ ସହକାରେ ଏ ଘଟଣା ଶୁଣୁଛନ୍ତି। ଶ୍ରୀ ଶ୍ରୀ ଠାକୁର କହିଲେ, ପରମପିତା ସବୁକିଛି କରନ୍ତି, କିନ୍ତୁ ଯାହା ମାଧ୍ୟମରେ କରନ୍ତି ସେ କିଛି ଉପେକ୍ଷଣୀୟ ନୁହେଁ। ଇଷ୍ଟନିଷ୍ଠା ଓ ତାଙ୍କ ସଂକଳ୍ପରେ ଅତୁଟ ରହିଲେ ସେ ଅସାଧ୍ୟ ସାଧନ କରିପାରେ। ତାଙ୍କ ଦ୍ୱାରା ଏପରି କୌଣସି କର୍ମନଥାଏ ଯାହାକୁ ଅସମ୍ଭବ ବୋଲି କୁହାଯାଏ। ହନୁମାନ ଏହି ଇଷ୍ଟନିଷ୍ଠା ଓ ସଂକଳ୍ପରେ ଅତୁଟ ରହି ଇଷ୍ଟନିଷ୍ଠା ଦ୍ୱାରା ଗଭୀର ସମୁଦ୍ର ଉପରେ ପଥର ପକାଇ ସେତୁ ବାନ୍ଧିଦେଲେ– ଆଉ ସେହି ପଥର ଭାସି ରହିଲା। ଉପସ୍ଥିତ ସମସ୍ତଙ୍କୁ କହିଲେ ମୁଁ ପ୍ରତି ମୁଣ୍ଡପିଛା ଚାଳିଶ

ଟଙ୍କା କରି ସମସ୍ତଙ୍କୁ ମାଗିଥିଲି। ତୁମ୍ଭେମାନେ ମୋର ସେହି କଥାକୁ ପାଳନ କରିବାକୁ ଯାଇ କେହି ଧାର କରିଛ, କେହି ଗହଣା ବିକିଛ, କେହି ବନ୍ଧା ପକେଇଛ। କିନ୍ତୁ ପରମପିତା ଯେତେବେଳେ କାହା ପାଖରେ କିଛି ମାଗନ୍ତି, ସେ କାହାକୁ ଧ୍ୱଂସ କରିବାପାଇଁ ନୁହେଁ, ଋଣଗ୍ରସ୍ତ କରିବା ପାଇଁ ନୁହେଁ, ଗୃହର ସ୍ତ୍ରୀ ଲକ୍ଷ୍ମୀ ସ୍ୱରୂପା, ତାଙ୍କର ଅଳଙ୍କାର ବିକିବା ବା ବନ୍ଧା ପକାଇବା ପାଇଁ ନୁହେଁ, ସେ ଯେତେବେଳେ ଦୟା କରି କିଛି ଚାହାନ୍ତି ଏବଂ ଯାହା ପାଖରୁ ଚାହାନ୍ତି ତାର ମଙ୍ଗଳପାଇଁ, ସେମାନଙ୍କ ଜୀବନରେ ଯାହା କିଛି ଅଭାବ ରହିଛି, ଅପୂରଣୀୟ ରହିଛି, ସେ ଅଭାବକୁ ଦୂର କରି ପରିପୂରଣ କରିବାପାଇଁ। ମନୁଷ୍ୟ ଭିତରେ ରହିଛି ଅନନ୍ତ ଶକ୍ତି, ସେହି ଶକ୍ତିର ବିକାଶ ହୁଏ ଇଷ୍ଟ ନିର୍ଦ୍ଦେଶିତ ପଥରେ ନିଷ୍ଠା ସହକାରେ ଚାଲିଲେ। ନୂତନ ପଥର ସନ୍ଧାନ ପାଆନ୍ତି ସେମାନେ। ଜୀବନର ଗତି ମଧ୍ୟ ହୋଇଉଠେ ସୁନ୍ଦର, ସାବଲୀଳ। କିନ୍ତୁ ଲୋକ ନିଜ ଚିନ୍ତାରେ ଆବଦ୍ଧ ରହନ୍ତି, କୌଣସି ନୂଆ ପଥରେ ଯିବାପାଇଁ ମୋଟେ ରାଜି ନୁହନ୍ତି। ତେଣୁ ସହଜତର ପଥ ମନେ କରି ନିଜର ରହିଥିବା ଯାହା କିଛି ସଂପଦ ଉପରେ କ୍ରମାଗତ ଚାପ ସୃଷ୍ଟି କରି ଜୀବନ–ବର୍ଦ୍ଧନ ଆଡ଼କୁ ଆଗେଇ ନ ଯାଇ ସଙ୍କୁଚିତ ହୋଇ ପଡ଼ନ୍ତି। ଇଷ୍ଟ ପାଖରୁ କୌଣସି ନିର୍ଦ୍ଦେଶ ଆସିଲେ ସେଥିରେ ଝାମ୍ପି ପଡ଼ି ସେହି ସାଧନାରେ ସିଦ୍ଧି ଲାଭ କରିବାପାଇଁ ଆଗେଇ ଯିବାକୁ ହୁଏ ଅକମ୍ପିତ ହୃଦୟରେ, ଡର ଭୟକୁ ଛାଡ଼ି, ନିଷ୍ଠା ସହକାରେ ଇଷ୍ଟଙ୍କୁ ମୁଣ୍ଡରେ ରଖି। ତାହାହେଲେ ଆସିବାକୁ ଆରମ୍ଭ କରେ ସେହି ଅନନ୍ତ ଭଣ୍ଡାରରୁ ବହୁ ସମ୍ପଦ।

ସନ୍ଧ୍ୟା ବିତିଯାଇଛି। ଶ୍ରୀଶ୍ରୀ ଠାକୁର ମୋତେ କହିଲେ, ଯାଅ, ଟିକେ ବିଶ୍ରମା କରି ନିଅ, ଗତ ରାତ୍ରି ଶୋଇନାହିଁ। ଠାକୁରଙ୍କୁ ପ୍ରଣାମ କରି ବାହାରି ଆସି ମୁଁ ଯେଉଁଠି ରହୁଥିଲି ସେହି ଘର ଉଦ୍ଦେଶ୍ୟେ ବାହାରି ପଡ଼ିଲି। ସର୍ବଦା ସର୍ବାବସ୍ଥାରେ ଦେଖୁଛି ଶ୍ରୀଶ୍ରୀ ଠାକୁର ସବୁକିଛି କରି ଚାଲିଛନ୍ତି, କିନ୍ତୁ ନିଜେ ରହୁଛନ୍ତି ପ୍ରଚ୍ଛନ୍ନ ଭାବରେ। କ୍ରମେ କ୍ରମେ ମୋର ମନଭିତରେ ଏ ଧାରଣା ଦୃଢ଼ ହୋଇ ପ୍ରବେଶ କରୁଛି, ଶ୍ରୀଶ୍ରୀ ଠାକୁର ହିଁ ସର୍ବତ୍ର ବ୍ୟାପ୍ତ, ଯେଉଁଠି ଯାହା କରୁଛନ୍ତି ସବୁ ସେ ହିଁ କରୁଛନ୍ତି। ତାଙ୍କର ଦୟା ହେଲେ ପୃଥିବୀରେ ଏପରି କୌଣସି କର୍ମନାହିଁ ଯାହା କି ଅସାଧ୍ୟ। ବୈଷ୍ଣବ ଶାସ୍ତ୍ରରେ ଅଛି, ଦେବତାମାନେ ରୁଷ୍ଟହେଲେ ଇଷ୍ଟ ତାଙ୍କୁ ରକ୍ଷା କରିପାରେ, ମାତ୍ର ଇଷ୍ଟ ରୁଷ୍ଟ ହେଲେ ଦେବତାଦିର ସାଧ୍ୟ ନାହିଁ ଯେ ତାଙ୍କୁ ରକ୍ଷା କରିପାରେ।

କିନ୍ତୁ ଠାକୁରଙ୍କୁ ଦେଖିବାପରେ ମନେ ହେଉଛି, ଇଷ୍ଟ ଯେ ସେ କଦାପି ରୁଷ୍ଟ ହୁଏନାହିଁ। ଇଷ୍ଟ ଇଷ୍ଟ ହିଁ, ମଙ୍ଗଳମୟ ପରମଦୟାଲ, ତାଙ୍କର ଧର୍ମହିଁ ହେଉଛି ପ୍ରତି ଲୋକର ମଙ୍ଗଳ କରିବା, ସମସ୍ତଙ୍କୁ ଆଗେଇ ନେଇଯିବା, ଯେ ଯେଉଁଠି ଅଛି ସେଠାରୁ ଆହୁରି ଆହୁରି କରି ନେଇ ଚାଲିଛନ୍ତି, ସେ କେତେବେଳେ ହେଲେ ରୁଷ୍ଟ ନହେଲେ ମଧ୍ୟ ତାଙ୍କ ପ୍ରଦର୍ଶିତ ପଥରେ ନଚାଲି, ତାଙ୍କ କଥା ନଶୁଣି ମନୁଷ୍ୟ ଯଦି ଚାଲିବାକୁ ଆରମ୍ଭ କରେ କୌଣସି ଦେବତା ତାଙ୍କୁ ସାହାଯ୍ୟ କରେ ନାହିଁ, ଅର୍ଥାତ୍ ଜୀବନ–ଚରିତ୍ର ଭିତରେ କୌଣସି ଦିଗ ଦୀପ୍ତିମାନ ହୋଇ ଉଠେନାହିଁ, ଉଜ୍ଜ୍ୱଳ ହୋଇ ଉଠେନାହିଁ। ଜୀବନବର୍ଦ୍ଧନ ପଥରେ ସାହାଯ୍ୟ କରେ ନାହିଁ। ତାହାରି ପାଇଁ ଲୋକ କହନ୍ତି "ସର୍ବ ଦେବମୟ ଗୁରୁ"। ତାଙ୍କ ନିର୍ଦ୍ଦେଶିତ ପଥରେ ନିଷ୍ଠା ସହକାରେ ଆଗେଇ ଚାଲିଲେ ମନୁଷ୍ୟ ଦେବଚରିତ୍ରରେ ଚରିତ୍ରବାନ୍ ହୋଇ ଉଠେ। ଚିନ୍ତାକରି ଦେଖୁଛି ଏକଥା କେତେ ଖାଣ୍ଟି। କିନ୍ତୁ କଳ୍ପନାବିଳାସୀ ହୋଇ ଯାଉଛୁଁ ଆମ୍ଭେ, କେତେ ଅନୁସରଣ କରୁଛି ତାଙ୍କୁ ମୁଁ? ନିଜର ଖିଆଲ ମାଫିକ୍ ଗୁରୁଙ୍କୁ ସବୁବେଳେ ଭଜନା କରୁଛୁ ପ୍ରବୃତ୍ତିତାଡ଼ିତ ମନ ନେଇ। ଯଦି କେତେବେଳେ କ୍ଷଣିକ ପାଇଁ ମନ ତଦ୍‌ଗତ ହେଉଛି, ତତ୍‌କ୍ଷଣାତ୍ ଠାକୁର ଆସି ଆଲୋକବର୍ତ୍ତିକା ନେଇ ଭିତରର ଅନ୍ଧାକାରକୁ ଦୂର କରି ଟାଣି ନେଇ ଚାଲିଯା'ନ୍ତି ବହୁତ ଉର୍ଦ୍ଧ୍ୱକୁ, ଶାଶ୍ୱତ ପଥ ଆଡ଼କୁ। ଏହି ଭାବରେ ଶ୍ରୀଶ୍ରୀ ଠାକୁର ଆମ୍ଭ ସମସ୍ତଙ୍କ ପଛେ ପଛେ ବୁଲୁଛନ୍ତି ଯାହାକି ହେବାକଥା ସଂପୂର୍ଣ୍ଣ ଓଲଟା–ଆମ୍ଭମାନଙ୍କର ବୁଲିବା କଥା ତାଙ୍କ ପଛେ ପଛେ। ଘରେ ଯାଇ ଶୋଇପଡ଼ି ଠାକୁରଙ୍କ ପାଖରେ ମନେ ମନେ ଗୁହାରି ଜଣାଇଲି, ହେ ଠାକୁର! ତୁମେହିଁ ତ ସର୍ବଜ୍ଞ, ସର୍ବକର୍ମ ପାରଦର୍ଶୀ ଈଶ୍ୱର। ତେଣୁ ମୋର ଦୁର୍ବଳତାକୁ ଦୂର କରି ଆଶ୍ରୟ ଦିଅ ତବ ଶ୍ରୀଚରଣ କମଳରେ।

# ।। ଏକୋଇଶ ।।

ଶ୍ରୀଶ୍ରୀ ଠାକୁରଙ୍କର ତିରୋଧାନ ଦୁଇବର୍ଷ ପୂର୍ବରୁ ବୈଶାଖ ମାସରେ ଏକ ଦ୍ୱିପ୍ରହରେ ଗୋଟାଏ ବେଳେ ଆନନ୍ଦବଜାରରୁ ପ୍ରସାଦ ଖାଇ ମୋର ରହିବା ଘରକୁ ଫେରୁଛି ଯାହାକି ଶ୍ରୀଶ୍ରୀ ଠାକୁରଙ୍କର ଆଶ୍ରମଠାରୁ ପ୍ରାୟ ଅଧମାଇଲ ଦୂରରେ, ଆନନ୍ଦବଜାର ଠାକୁରଙ୍କ ଆଶ୍ରମ ସାଙ୍ଗରେ ଲାଗି ରହିଛି ରାସ୍ତାର ଓଲଟାଦିଗ ପଶ୍ଚିମ ପଟରେ। ସେଠାରୁ ଆହାର ସାରି ଏହି ପ୍ରଚଣ୍ଡ ଖରାରେ ଗୋଟାଏ ହାଫସାର୍ଟ୍ ଓ ଧୋତି ପିନ୍ଧି ମୁଁ ଚାଲିଛି ମୋର ରହିଥିବା ଘର ଉଦ୍ଦେଶ୍ୟରେ। ଶ୍ରୀ ଅରବିନ୍ଦଙ୍କର ମାତାମହ ସ୍ୱର୍ଗୀୟ ରାଜଶେଖର ବସୁ ମହାଶୟଙ୍କର ଘର ପାଖାପାଖି ଆସିଛି। ସେହି ସମୟରେ ଗୋଟିଏ ମଟରଗାଡ଼ି ଆସି ମୋର ସାମ୍ନାରେ ଠିଆ ହେଲା। ଗାଡ଼ି ଡ୍ରାଇଭର୍ ମୋତେ ଦେଖି କହିଲେ– ସୁଶୀଲଦା, ଆମେ ଚାରିଆଡ଼େ ଆପଣଙ୍କୁ ଖୋଜୁଛୁଁ। ଆପଣ କୁଆଡ଼େ ଥିଲେ କି? ଶୀଘ୍ର ଚାଲନ୍ତୁ, ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଡାକୁଛନ୍ତି। ଗାଡ଼ିରେ ଉଠି ଆସନ୍ତୁ। ମୁଁ ଗାଡ଼ିରେ ଉଠିବସି କହିଲି, ମୋତେ ମୋର ରହିଥିବା ବସାକୁ ନେଇ ଚାଲନ୍ତୁ। ମୁଁ ସେଠୁ ମୋର ଏହି ଲୁଗା କାମିଜ୍ ଛାଡ଼ି ଭଲ ଲୁଗା ପିନ୍ଧି ଆସିବି। ମୁଁ ଅବିକା ଆନନ୍ଦବଜାରରୁ ଖାଇ ଆସୁଛି। ତେଣୁ ଏହା ପାଲଟିବା ନିହାତି ପ୍ରୟୋଜନ। ଡ୍ରାଇଭର ଦାଦାଟି କହିଲେ, ନା, ନା, ଆଉ ଡେରି କରି ହେବ ନାହିଁ। ଶ୍ରୀ ଶ୍ରୀ ଠାକୁର ଅପେକ୍ଷାକରି ରହିଛନ୍ତି। ଆମେ ଦୁଇଥର ଫେରିଯାଇ ଖବର ଦେଲୁ ଯେ ଆପଣଙ୍କର ଦେଖା ପାଉନାହୁଁ। ଶ୍ରୀଶ୍ରୀ ଠାକୁର କହିଲେ, ଦେଖ୍, କେଉଁଠି ଅଛି ଖୋଜି ଆଣ। ସେମାନେ କହିଲେ, ନିଶ୍ଚୟ କୌଣସି ବିଶେଷ କାମ ଅଛି ଯାହାକି ଡେରି କରିଲେ ଭଲ ହେବନାହିଁ ବୋଲି ଆମ୍ଭେ ଭାବୁଛୁ। ତେଣୁ ଆଉ ଡେରି ନକରି ଆପଣ ଯେଉଁ ଅବସ୍ଥାରେ ଅଛନ୍ତି ସେହି ଅବସ୍ଥାରେ ଚାଲନ୍ତୁ। ଏହା କହି ଦୁଇ ମିନିଟ ଭିତରେ ଗାଡ଼ିକୁ ଆଣି ଠାକୁର ବାଂଲା ଭିତରେ ଉପସ୍ଥିତ କରାଇଲେ। ମୁଁ ଗାଡ଼ିରୁ ଓହ୍ଲାଇ ଟିକେ ସଙ୍କୁଚିତ ଭାବରେ ଠାକୁର ଘରର ପଛଦରଜା ଦେଇ ଭିତରକୁ ପଶି ଦେଖିଲି ଘର ଅନ୍ଧାର ହୋଇଛି। ଚାରିଦିଗରେ କବାଟ ଝରକା ସବୁ ବନ୍ଦ। ପଙ୍ଖା ଚାଲିଛି। ଦିସ୍ତା ଘରର ଚାଳ ଉପରେ ଫୁଆରା ସାହାଯ୍ୟରେ ପାଣି ଦିଆ ହେଉଛି ଘର ଥଣ୍ଡା ରଖିବାପାଇଁ। ଶ୍ରୀଶ୍ରୀ ଠାକୁର ଚୁପ୍ ହୋଇ ଶୋଇ ରହିଛନ୍ତି। ବଙ୍କିମଦା' ଇତ୍ୟାଦି ଜଣେ ଦୁଇଜଣ ସେଠାରେ ଅଛନ୍ତି।

ମୁଁ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ସେମାନେ କହିଲେ, ଠାକୁର! ଏଇ ତ ସୁଶୀଲଦା' ଆସିଛନ୍ତି। ଠାକୁର ଉପସ୍ଥିତ ସମସ୍ତଙ୍କୁ ସେଠାରୁ ଘୁଞ୍ଚିଯିବାକୁ କହିଲେ। ସମସ୍ତେ ଚାଲିଯିବା ପରେ ଠାକୁର ମୋତେ ପାଖକୁ ଡାକିଲେ। ମୁଁ କିଛି ଦୂରତ୍ୱ ରକ୍ଷା କରି ଠାକୁରଙ୍କ ପାଖକୁ ଯାଇ ଉପସ୍ଥିତ ହେଲି। ଶ୍ରୀଶ୍ରୀ ଠାକୁର କହିଲେ— ଆ, ଆ, ଆହୁରି ପାଖକୁ ଆ। ମୁଁ କହିଲି, ଠାକୁର! ମୁଁ ଏଇ ମାତ୍ର ଆନନ୍ଦବଜାରରୁ ଖାଇ ବସାକୁ ଯାଉଥିଲି। ବାଟରେ ମଟରରେ ଯାଇ ମୋତେ ଧରିଆଣିଛନ୍ତି। ମୁଁ ଲୁଗାପଟା ଛାଡ଼ିନାହିଁ। ତେଣୁ ଆପଣଙ୍କ ପାଖକୁ ଯିବି କିପରି? ଶ୍ରୀଶ୍ରୀ ଠାକୁର କହିଲେ, ସେଥିରେ କ'ଣ ହେଲା? ଆ, ଆ, ପାଖକୁ ଆ।

ତଥାପି ମୁଁ ଠାକୁରଙ୍କୁ କହୁଛି—ଠାକୁର! ଏ ଗରମରେ ମୋର ସମସ୍ତ ଦେହ ଝାଳରେ ଭିଜିଯାଇଛି। ଝାଳ ଗନ୍ଧ ହେଉଛି। ତେଣୁ ମୁଁ ଟିକେ ଦୂରେଇ ରହୁଛି। ଆପଣ ଦୟାକରି କୁହନ୍ତୁ ମୋତେ କ'ଣ ପାଇଁ ସ୍ମରଣ କରିଛନ୍ତି। ଶ୍ରୀଶ୍ରୀ ଠାକୁର କହିଲେ— ତୁ ଏତେ କଥା କହୁଛୁ କାହିଁକି? ଆ, ମୋ ପାଖକୁ ଆ। ଆଉ କିଛି ଚିନ୍ତା ନ କରି ମୁଁ ଠାକୁରଙ୍କ ପାଖକୁ ଯାଇ ତାଙ୍କ ଖଟ ପାଖରେ ଠିଆ ହେଲି। ଠାକୁର ଶୋଇ ରହିଥିଲେ, ଦୁଇ ହାତ ବଢ଼ାଇ ମୋତେ କହିଲେ, ଧର ମୋତେ ଧର। ମୁଁ ଉଠି ବସିବି। ଆଉ କିଛି ଭାବିବାର ମୋର ବେଳ ନାହିଁ। ପତିତପାବନ ସ୍ୱୟଂ ଯେତେବେଳେ ଆଗ୍ରହ କରୁଛନ୍ତି ପତିତକୁ ଛୁଇଁବା ପାଇଁ, ସେତେବେଳେ କି ସାଧ୍ୟ ମୋର ଯେ ତା' ଠାରୁ ଦୂରେଇ ରହିବି? ନଇଁ ପଡ଼ି ଦୁଇ ପାଖ ଦେଇ ହାତ ପୂରାଇ ଦେଲି ଠାକୁରଙ୍କର ପିଠିତଳେ, ଠାକୁର ଦୁଇ ହାତ ଧଣି କୁଣ୍ଢାଇ ଧରିଲେ ମୋର ବେକକୁ। ମୁଁ ଟାଣି ଉଠାଇ ବସାଇ ଦେଲି ଠାକୁରଙ୍କୁ ତାଙ୍କ ବିଛଣା ଉପରେ। ତକିଆ ଇତ୍ୟାଦି ଠିକ୍ କରିଦେଲି। ଠାକୁର ମୋତେ କହିଲେ— ଆଜି ଦେହଟା ମୋର ଭଲ ଲାଗୁନାହିଁ। ନିଦ ଆସୁନାହିଁ। ସେତେବେଳୁ ଦୁଇଥର ତୋ ପାଖକୁ ଲୋକ ପଠାଇଲି। ଭାବିଲି ତୁ ଆସିଲେ ତୋ ସହିତ ବସି ଗଳ୍ପ କରିବି। ମୁଁ ପ୍ରଫୁଲ୍ଲିତ ଅନ୍ତରରେ କହିଲି— ଠାକୁର! ମୋ ସାଙ୍ଗରେ ଆପଣଙ୍କର ଗଳ୍ପ କରିବାର ଦିନତ ବହୁତ ପୂର୍ବରୁ ସରିଛି। ଆଜିଠାରୁ ୧୨ ବର୍ଷ ପୂର୍ବେ ଦିନେ ମୋତେ ଡାକି ନିଭୃତରେ ଆପଣ କହିଥିଲେ, ଏବେ ଠାରୁ ତୋ ସାଙ୍ଗରେ ବସି ମୁଁ ଗଳ୍ପ କରିବାର ବେଳ ପାଇବି ନାହିଁ। ତୁ ସେଥିରେ କିଛି ମନେ କରିବୁ ନାହିଁ। ଅଭିମାନ କରିବୁ ନାହିଁ। କେତେବେଳେ

ହେଲେ ଭାବିବୁ ନାହିଁ ଯେ ଠାକୁର ମୋତେ ଭଲପାଉ ନାହାନ୍ତି। ମୋର ମନ କିନ୍ତୁ ତୋ ପାଖରେ ପଡ଼ି ରହିଲା। ଜଗତର ପ୍ରୟୋଜନରେ ମୁଁ ଏବେ ଅନ୍ୟମାନଙ୍କୁ ନେଇ ବ୍ୟସ୍ତ ରହିବି, ତେଣୁ ଯେତେବେଳେ ସେତେବେଳେ ତୋତେ ଡାକି କଥାବାର୍ତ୍ତା କରିବାର ସୁବିଧା ନ ହୋଇ ପାରେ। ମୁଁ ଆପଣଙ୍କୁ କହିଥିଲି, ଠାକୁର! ଆପଣ ନ ଡାକିଲେ ମଧ୍ୟ ମୁଁ ନିଜେ ଆପଣଙ୍କ ପାଖକୁ ଆସିବି ଏବଂ ମୋର ନିଜର ପ୍ରୟୋଜନୀୟ କଥା କହିବି।

ସେତେବେଳେ ଆପଣ କହିଥିଲେ, ନିଶ୍ଚୟ ଆସିବୁ, ନିଶ୍ଚୟ କହିବୁ। ତୋର ଆସିବା, ମୋ ପାଖରେ ବସିବା ଏବଂ କଥାକହିବାର କିଛି ବାଧା ନାହିଁ। କିନ୍ତୁ ମୁଁ ଯେ ସବୁବେଳେ ଡାକି ଡାକି ଆଣି କଥା କହୁଛି, ପାଖରେ ବସାଉଛି, ଏହା ବର୍ତ୍ତମାନ କିଛି ଦିନପାଇଁ ବନ୍ଦ ରହିବ। ଆପଣଙ୍କର ଏ କଥାକୁ ମୁଁ ସ୍ୱୀକାର କରିନେଇଥିଲି। କିନ୍ତୁ ବିଗତ ବାରବର୍ଷ ମୁଁ ଯେ କି ଅସହ୍ୟଯନ୍ତ୍ରଣା ଭୋଗ କରିଛି ତାହା କହିପାରିବି ନାହିଁ। ମୁଁ ଆପଣଙ୍କ ପାଖରେ ଆସିଲେ ମଧ୍ୟ ଆପଣ ଯେତେବେଳେ ପୂର୍ବଭଳି କଥାବାର୍ତ୍ତା କହୁନଥିଲେ ସେତେବେଳେ ମୋ ଅନ୍ତରଟା କି ଭଳି ହୋଇଯାଉଥିଲା, ସହ୍ୟକରି ପାରୁନଥିଲି। ମୁଁ ଗର୍ବରେ ଆପଣଙ୍କୁ ଯେଉଁ କଥା କହିଥିଲି (ଆପଣ ନଡ଼ାକିଲେ ମଧ୍ୟ ମୁଁ ଆସିବି, କଥା କହିବି) ପରେ ଆଶ୍ଚର୍ଯ୍ୟ ହୋଇ ଦେଖିଲି ମୋର ସେସବୁ କଥା ନିହାତି ବାହ୍ୟାଡମ୍ବର। ଏ ପୃଥିବୀରେ ଆପଣହିଁ ତ ସବୁ, ଆପଣଙ୍କ ଛଡ଼ା ଆମର ଅସ୍ତିତ୍ୱ କାହିଁ? କିବା କ୍ଷମତା ଅଛି ମୋର? ଯେତେବେଳେ ଆପଣଙ୍କ ପାଖରେ ଉଠାବସା କରୁଥିଲି, ଆପଣ ଡାକୁଥିଲେ, ସେତେବେଳେ ମୁଁ ନିଜକୁ ନିଜେ ଖୁବ୍ ବଡ଼ ବୋଲି ମନେ କରୁଥିଲି। ତୋର ପରି ମୋର ଅନ୍ତର ଭିତରେ ଏହି ଅହଂକାର କେତେବେଳେ ବସା ବାନ୍ଧିଥିଲା ମୁଁ ଜାଣି ନଥିଲି। ଆପଣଙ୍କୁ ଛାଡ଼ିଦେଇ ମୋର ଗୋଟିଏ ଅସ୍ତିତ୍ୱ ଅଛି ବୋଲି ମୁଁ ମନେ କରୁଥିଲି।

କିନ୍ତୁ ଏହି ବିଗତ ୧୨ ବର୍ଷରେ ଆପଣ ମୋତେ ଦେଖାଇ ଦେଲେ ଆପଣଙ୍କର ଶକ୍ତିରେ ହିଁ ସମସ୍ତେ ଶକ୍ତିବାନ। ମୋର ଜୀବନ ମଧ୍ୟ ତାହା ବାହାରେ ନହେଁ ଏହି ବାର ବର୍ଷରେ ଆପଣ ବହୁତ ଥର ଡାକିଛନ୍ତି, ବହୁତ କଥା କହିଛନ୍ତି, ବହୁତ କିଛି ନିର୍ଦ୍ଦେଶ ଦେଇଛନ୍ତି। ସେ ଏକ ଅଭିନବ ସଂପର୍କ। ମନେ ହେଉଥାଏ ଆପଣଙ୍କର ସେହି ସବୁ ନିର୍ଦ୍ଦେଶ ଯେପରିହେଉ ପାଳନ କରିବି ନିଶ୍ଚୟ। ସେ ସବୁ କର୍ମରେ ସିଦ୍ଧିଲାଭ କରିବାପାଇଁ ବହୁବାଟ ଖୋଜି

ଖୋଜି ଶେଷ ପର୍ଯ୍ୟନ୍ତ କୃତକାର୍ଯ୍ୟ ହୋଇଛି। କିନ୍ତୁ ମନ ଭିତରେ ଗୋଟିଏ ଅସହାୟ ଭାବବୋଧ କରୁଥିଲି। ଭାବୁଥିଲି– ପୂର୍ବପରି ଠାକୁର ଯଦି ମୋତେ ସବୁକିଛି କହି ବୁଝାଇଦିଅନ୍ତେ ଏବଂ ଦେଖାଇ ଦିଅନ୍ତେ, କେଉଁଠି ଗଲେ କିପରି ବିନା ଶ୍ରମରେ କୃତକାର୍ଯ୍ୟ ହୋଇ ସତ୍ୱର ଫେରିଆସି ପାରିବି, ତାହାହେଲେ ଭଲ ହୁଅନ୍ତା। ଆପଣଙ୍କ ଆଦେଶ ପାଇବା ସାଥେ ସାଥେ ଏସବୁ ଚିନ୍ତା ମନକୁ ଆସିଲେ ମଧ୍ୟ ଶ୍ରୀଘ୍ର ବା ଡେରିରେ ହେଉ ସେ କାର୍ଯ୍ୟ ସମାଧାନ କରି ଫେରି ଆସିଲା ପରେ ଅନ୍ତରଭିତରୁ ଆସୁଥିଲା ଗୋଟିଏ ମହାତୃପ୍ତିର ଭାବ। କିନ୍ତୁ ସବୁ କିଛି ମଧ୍ୟେ ମନ ଭିତରେ ଚିରଜାଗ୍ରତ ହୋଇ ରହୁଥିଲା, ମୋର ବନ୍ଧୁ, ସଖା ଯେଉଁ ସମ୍ପର୍କ କି ଆପଣ ସ୍ଥାପନ କରି ଦେଇଥିଲେ, ସେହି ସଂପର୍କଟି ପୁନଃସ୍ଥାପନ କରି ସେହିରୂପ ଦେଖିବାପାଇଁ। ଆଜକୁ ବାରବର୍ଷ ପରେ ପୁନରାୟ ମୋତେ ଆପଣ ଡାକି ସେହି ପୂର୍ବପରି ସମସ୍ତ ବହିର୍ବେଶକୁ ଛିନ୍ନ କରି ଅନ୍ତର ଦେଇ ମୋତେ କୁଣ୍ଢାଇ ଧରିଲେ। ଆଜି ମୋର ମହାଆନନ୍ଦର ଦିନ। ଶ୍ରୀଶ୍ରୀ ଠାକୁର କହିଲେ, ମୋର ମନ ବି ତୋ ସାଙ୍ଗରେ ବସି ଗଳ୍ପ କରିବା ପାଇଁ ସବୁବେଳେ ଚାହେଁ। କିନ୍ତୁ ଏହି ବିଶ୍ୱଦୁନିଆର ଲୋକ, ତାହା ସହିତ ମୋର ଏହି ଅସୁସ୍ଥ ଦେହଟିକୁ ନେଇ କିଛି କରି ପାରୁନାହିଁ। ମୁଁ ତ ତୋତେ ପୂର୍ବରୁ କହିଥିଲି ମୁଁ ସବୁବେଳେ ତୋ ସାଥେ ସାଥେ ରହିଛି। ତଥାପି ଆଉ ଗୋଟିଏ କଥା ଜାଣିଥା, ବାହାରୁ ଏହି ଯେ ମୋତେ ତୁ ଦେଖୁଛୁ ଏହି 'ମୁଁ' ଭିତରେ ଆହୁରି ଗୋଟିଏ 'ମୁଁ' ଅଛି। ସେ ଯେତ୍ତେବେଳେ ଜାଗ୍ରତ ହୋଇ ଉଠେ, ସେତେବେଳେ ଯେଉଁଠି ଯାହାର ଯାହା କରିଲେ ଶୁଭ ହେବ ତାହା ବ୍ୟତୀତ ମୁଁ ଆଉ କାହାରିର କିଛି କରିପାରେ ନାହିଁ। ମୁଁ ଅନେକ ସମୟରେ ଭାବେ ତୋର ସବୁ ଦୁଃଖକୁ ଦୂର କରିଦେବି। ମୁଁ ଜାଣିଛି ମୋ ବ୍ୟତୀତ ତୋର କିଛି ନାହିଁ। ମୋର ଇଚ୍ଛା ହୁଏ ଟଙ୍କା ପଇସା, ଧନ ଦୌଲତ, ବହୁତ କିଛି ତୋତେ ଦେବାକୁ। କିନ୍ତୁ ଯେଉଁଠି ଗଲେ, ଯେଉଁ ଅବସ୍ଥାରେ ରହିଲେ ଏ ସବୁ କିଛି ଏକ ଲହମାରେ ଦିଆଯାଏ ସେଠାରେ ଯାଇ ଯେତେବେଳେ ତୋତେ ଦେଖୁଛି ସେତେବେଳେ ଆଉ କିଛି ଦେବାର ଇଚ୍ଛା ରହୁନାହିଁ। ସେଠାରୁ ଦେଖୁଛି ତୋତେ ଏ ସବୁ କିଛି ଦେଲେ ତୁ ଯେଉଁ ଅନନ୍ତ ପଥର ଯାତ୍ରୀ, ସେହି ଅନନ୍ତ ପଥକୁ ରୁଦ୍ଧ କରି ଦିଆହେବ। ତେଣୁ ମୁଁ ପାରୁନାହିଁ ତୋର ଜୀବନରେ ଅକଲ୍ୟାଣ କରି ସେହି ବସ୍ତୁ ତୋତେ ଦେବାକୁ।

ପରମପିତା ଦୟାରେ ତୋର ଜୀବନର ବହୁକିଛି ଶୁଭ ମୁଁ ଦେଖୁଛି। କଷ୍ଟ ହେଲେ ମଧ୍ୟ ଆଗେଇ ଚାଲ। ଠାକୁର ସୁନ୍ଦର ଅଙ୍ଗଭଙ୍ଗୀ କରି କହିଲେ— ଦିନ ଆ—ଗତ ଓଇ। ଏହାପରେ ଠାକୁର କହିଲେ, ମୋର ଚିନ୍ତା ହେଉଛି ତୋର ଦେହ ନେଇ। ଦେହଟି ଯଦି ଭଲ ରହନ୍ତା ବହୁତ କିଛି କରିପାରନ୍ତୁ। ଏହାରି ପରେ ଶ୍ରୀଶ୍ରୀ ଠାକୁର କହିଲେ— ତୁ କହୁଥିଲୁ ବାରବର୍ଷ ଅପେକ୍ଷା କରିବାକୁ ବହୁତ କଷ୍ଟ ହୋଇଛି। କିନ୍ତୁ ପ୍ରିୟର ବିରହ ବେଦନା, କ୍ଷଣିକମାତ୍ର ମନେହୁଏ ଯୁଗଯୁଗାନ୍ତର ଧରି। ବାରଟି ବର୍ଷ ତୁ ତିଳ ତିଳ କରି ଦିନ ଗଣିଛୁ। ମୁଁ ଦେଖିଛି, ବୁଝିଛି ସବୁ, କିନ୍ତୁ ମୋର ସେହି ଭିତରର ଠାକୁର ଜାଗ୍ରତ ହୋଇ ଦେଖୁଥିଲା କେଉଁ ପଥରେ କି ଭାବରେ ରହିଲେ ତୋର ଜୀବନରଗତି ସରଳ ହୋଇ ଉଠିବ, ଶୁଭ ହୋଇ ଉଠିବ, ଆଉ ତାହାହିଁ ମୁଁ କରୁଥିଲି। ଇଷ୍ଟରୂପୀ ତୋର ଠାକୁର ସେତେବେଳେ ତୋର ଇଷ୍ଟଛଡ଼ା ଆଉ ଏପରି କୌଣସି କର୍ମକରି ପାରେନା ଯାହାକି ତୋର ଜୀବନରେ ତିଳେ ମାତ୍ର ଅନିଷ୍ଟ ଆଣିବ। ଠାକୁରଙ୍କର କଥାଶୁଣି ଅନ୍ତର ବିଗଳିତ ହୋଇପଡୁଛି, ରୋମାଞ୍ଚିତ ହୋଇ ଉଠୁଛି। ଠାକୁର ଆହୁରି କହିଲେ— ଏହାରି ପାଖରେ ଆଉ ଗୋଟିଏ କଥା ସ୍ମରଣ ରଖ। ଶବରୀର ଅପେକ୍ଷା। ଯୁଗ ଯୁଗ ଧରି ଅପେକ୍ଷା କରି ରହିଛନ୍ତି କେବେ ଆସିବ ତାର ଜୀବନ ଦେବତା, ଯାହାର ସଂସ୍ପର୍ଶରେ ତାର ଜୀବନ ହେବ ଧନ୍ୟ, ମୁକ୍ତ।

ତେଣୁ ପ୍ରିୟ ପରମଙ୍କୁ ପାଇବାପାଇଁ ମୁହୂର୍ତ୍ତକ ଯେପରି ଯୁଗ ଯୁଗ ଜଣାପଡ଼େ ସେହିପରି ଯୁଗ ଯୁଗ ମଧ୍ଯ ମୁହୂର୍ତ୍ତ ହୋଇଯାଏ ଯେତେବେଳେ ଆସେ ସିଦ୍ଧି, ଯୁକ୍ତ ହେବାର ଲଗ୍ନ ଆସେ ପ୍ରିୟପରମଙ୍କ ସାଙ୍ଗରେ। ଆଉ ତାହାରିପାଇଁ ତ ମୁଁ କହିଛି, ସର୍ବାବସ୍ଥାରେ ରାଜିରୁହ। ଏହି ସର୍ବାବସ୍ଥା ଅର୍ଥ— ଜୀବନର ସବୁକ୍ଷେତ୍ରରେ, ସବୁପରିବେଶରେ, ସବୁକିଛି ଅବସ୍ଥା ଭିତରେ। ରାଜିହୁଅ, ମାନିନିଅ ତୁମ୍ଭର ଇଷ୍ଟଙ୍କୁ, ତାର ନିର୍ଦ୍ଦେଶିତ ପଥକୁ ଆଶୀର୍ବାଦମାନି ଝାମ୍ପି ପଡ଼ ଅନନ୍ତ ସମୁଦ୍ରରେ, ଭୟ, ଦ୍ୱନ୍ଦ, ଦ୍ୱିଧା ଲେଶହୀନ ହୋଇ। ଦେଖିବ ତାହାରି ଭିତରେ ତୁମ୍ଭର ପ୍ରିୟପରମ କେତେ ବରଣୀୟ ହୋଇ ଓ ରମଣୀୟ ହୋଇ ତୁମ୍ଭର ଜୀବନକୁ ପ୍ରସ୍ଫୁଟିତ କରି ତୋଳିବ ସୌରଭାନ୍ୱିତ ସହସ୍ର ଦଳ କମଳରେ। ଖୁବ୍ ଭଲ ଲାଗୁଛି ଠାକୁରଙ୍କୁ, ଭୁଲିଯାଇଛି ସବୁ ପରିସ୍ଥିତି, ପରିବେଶ। ଶ୍ରୀଶ୍ରୀ ଠାକୁର ଯେପରି ଚତୁର୍ଦ୍ଦିଗରେ ଗୋଟିଏ ସ୍ୱପ୍ନଜଗତ ସୃଷ୍ଟି କରି ଆଚ୍ଛାଦିତ କରିଦେଇଛନ୍ତି ସେହି ଗୃହ। କୌଣସି ଚିନ୍ତାନାହିଁ, ଏକମାତ୍ର ସେ— ଆଉ ମୁଁ। ଶ୍ରୀଶ୍ରୀ ଠାକୁର କହିଲେ, ଆହୁରି ଆଗରୁ ତୋତେ ଖୋଜୁଥିଲି। ଆସିବାକୁ ଡେରିକଲୁ, ତୋର ଖାଇବା ପିଇବା ଦିଗରେ କିଛି ଲକ୍ଷ୍ୟ ନାହିଁ। ଆଗେ

ଦିନ ୧୦.୩୦ଟା–୧୧ଟା ଭିତରେ ଖାଉଥିଲୁ। ମୁଁ ପ୍ରତିଦିନ ତୋତେ କହି ଖାଇବାକୁ ପଠାଉଥିଲି। ଏବେ ମୁଁ କିଛି କହୁ ନାହିଁ ବୋଲି ତୁ କଣ ମନେ କରିଛୁ ସମୟ ମୁତାବିକ୍ ନ ଖାଇଲେ ମୋର ଭଲ ଲାଗୁଛି? ମୁଁ କିଛି ଜାଣିପାରୁ ନାହିଁ? ତୋର ନିଜର ଦେହ ପ୍ରତି ଏ ଉଦାସୀନତା ମୋତେ ଭଲ ଲାଗୁନାହିଁ। କହ, ସମୟ ମୁତାବିକ୍ ଖାଇବୁ, ଦେହଉପରେ ଲକ୍ଷ୍ୟ ରଖିବୁ।

ମୋର ଆଖିରେ ଜଳ ଆସିଗଲା। କହିଲି– ଠାକୁର! ମୁଁ ଆପଣଙ୍କର ଅଜ୍ଞାନ ସନ୍ତାନ। ୧୪ ବର୍ଷ ପୂର୍ବେ ମୋତେ ଆପଣ ଖାଇବା, ଶୋଇବା, କଥା କହିବା, ଚାଲିବା, ସବୁ କିଛି ନିଜ ହାତରେ ଶିଖାଉଥିଲେ, କରାଉଥିଲେ। ତାପରେ ଧୀରେ ଧୀରେ ଯେପରି ଆପଣ Passive (ନିଷ୍କ୍ରିୟ) ହୋଇଗଲେ। ମୋର ଅନ୍ତର ଭିତରଟା ମଧ୍ୟ ହାହାକାର କରି ଉଠିଲା। ଭାବିଲି– ଏ ପୃଥିବୀରେ ମୋର ତ କେହିନାହିଁ। ତେଣୁ କି ପ୍ରୟୋଜନ ମୋର ଏହି ଦେହର? ଏହାର ସୁସ୍ଥତା, ଅସୁସ୍ଥତା ପାଇଁ କାହାରିର ତ କିଛି ଯାଏ ଆସେ ନାହିଁ। ମୋର ଏହି ଦେହ ପ୍ରତି ଆଉ କୌଣସି ଟାଣ ବା Attachment ବୋଧ କଲି ନାହିଁ। ଏହାକୁ ଉପେକ୍ଷା କରି ଚାଲିବାକୁ ଲାଗିଲି। କିନ୍ତୁ ଆଜି ବୁଝିପାରୁଛି ଆପଣ କ୍ଷଣମାତ୍ର ହେଲେ ମଧ୍ୟ ମୋତେ ଆଖି ବାହାରେ ରଖି ନାହାନ୍ତି। ସବୁକିଛି ଦେଖିଛନ୍ତି ମୋ ସାଙ୍ଗରେ, ସୁଖରେ ସୁଖୀ ହୋଇଛନ୍ତି, ଦୁଃଖରେ ଦୁଃଖୀ ହୋଇଛନ୍ତି। ପୂର୍ବରୁ ଯେପରି ଥିଲେ ଏବେ ମଧ୍ୟ ସେପରି–ସୁଖେ ସୁଖୀ, ଦୁଃଖେ ଦୁଖୀ, ସମଭାବରେ ଅଛନ୍ତି। ଶ୍ରୀଶ୍ରୀ ଠାକୁର କହିଲେ, ପରମପିତା କେବେବେଳେ ହେଲେ କାହାକୁ ଛାଡ଼ି ରହନ୍ତି ନାହିଁ। ତାଙ୍କ ଦୟାରେ ମୁଁ ତୋ ସାଙ୍ଗରେ ସବୁବେଳେ ରହିଛି, ଆଉ ରହିବି ଚିରଦିନ, ତୋର ଜୀବନର ଶେଷଦିନ ପର୍ଯ୍ୟନ୍ତ, ଏହାଜାଣିଥିବୁ, ଭୁଲିବୁନାହିଁ କେବେବେଳେ ହେଲେ। ଠାକୁରଙ୍କ ସାଙ୍ଗରେ ଏହାବ୍ୟତୀତ ଆହୁରି ଅନେକକଥା ହେଲା ଯାହାକି ମୋର ଏକାନ୍ତ, କାହାରି ଆଗରେ କହିବା ତାଙ୍କର ନିଷେଧ। ଇତି ମଧ୍ୟେ ଦିନ ସାଢ଼େ ତିନିଟା ବାଜିଯାଇଛି ଧୀରେ ଧୀରେ ଭକ୍ତମଣ୍ଡଳୀ ଆସିବାହାରେ ଜମାୟିତ ହୋଇଛନ୍ତି। ଶ୍ରୀଶ୍ରୀ ଠାକୁର ମୋତେ– କହିଲେ ଦେଖ, ତୋର ବହୁତ ଭାଇ ଓ ମା'ମାନେ ଆସିଛନ୍ତି, କବାଟ ଫିଟାଇଦେ। ମୁଁ ପରଦା ଘୁଞ୍ଚାଇ ଦେଇ କବାଟ ଫିଟାଇ ଦେଲି। ବହୁଜନବେଷ୍ଟିତ ଠାକୁରଙ୍କ ପାଖରେ ବସିରହି ମୋର ଏକାନ୍ତ ମନର ମଣିଷ ଠାକୁରଙ୍କୁ ଦେଖୁଛି, ଆଉଭାବୁଛି-- କି ଖେଳା ଖେଳୁଛ ପ୍ରାଣର ଠାକୁର ଏ ଧରଣୀର ଧୂଳିରେ।

## ॥ ବାଇଶ ॥

୧୯୬୮ ସାଲ ଆଗତ। ୧୯୬୭ ଡିସେମ୍ବର ୨୯ ତାରିଖରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲି ବାଲେଶ୍ୱରରେ ମୋର ଗୃହରେ ଆସି ଉପସ୍ଥିତ ହେଲି। ଦେଓଘର ଆଶ୍ରମ ଯିବା ପଥରେ ବାଲେଶ୍ୱର ପଡୁଛି। ତେଣୁ ମୋର ଘରର ଲୋକମାନଙ୍କୁ ଦେଖିଯିବା ଉଚିତ ମନେକଲି, କିନ୍ତୁତ ବାଲେଶ୍ୱର ଘରେ ଆସି ନୂଆ ପରିସ୍ଥିତିର ସମ୍ମୁଖୀନ ହେଲି। ଘରୁ ମୋର ସ୍ତ୍ରୀ ଶ୍ରୀଶ୍ରୀ ଠାକୁରଙ୍କର ଦର୍ଶନପାଇଁ ଦେଓଘର ଆଶ୍ରମକୁ ଯିବାପାଇଁ ଚାହିଁଲେ। ମୁଁ ମଧ୍ୟ ତାଙ୍କର ଆକୁଳତା ଦେଖି ମନେ ମନେ ଖୁସି ହେଲି। ମୋ ପାଖରେ ଟଙ୍କା ନଥିବାରୁ (ଯାହାକି ସ୍ୱଭାବତଃ ନଥାଏ) ମୋର ମନର କଥା ଖୋଲି ସ୍ତ୍ରୀଙ୍କୁ କହିଲି– ଟଙ୍କା ନାହିଁ, କିପରି ଯିବି ଛୁଆମାନଙ୍କୁ ନେଇ? ମୋ ସ୍ତ୍ରୀ କହିଲେ, କିଛିଦିନ ହେଲା ଠାକୁର ବାଡ଼ି ଯିବି ବୋଲି ମୁଁ କିଛି ପଇସା ସଂଗ୍ରହ କରି ରଖିଛି। ପଇସା ଥିବା ମାଟି ପାତ୍ର ଭାଙ୍ଗି ଗଣି ଦେଖିଲେ ସେଥିରେ ୫୨ ଟଙ୍କା ଅଛି। ଏତିକି ଟଙ୍କାରେ ଦୁଇଝିଅ ଏବଂ ତାଙ୍କର ମା' କଲିକତା ହୋଇ ଦେଓଘରକୁ ଯିବା ଓ ଆସିବା ସଂଭବ ନୁହେଁ, ତାଛଡ଼ା ମୋର ପ୍ରୋଗ୍ରାମ ଅଛି କଲିକତା ହୋଇ ଆଶ୍ରମ ଯିବି। ଯାହାହେଉ, ମୁଁ ଏମାନଙ୍କୁ କହିଲି, ଏତିକି ଟଙ୍କାରେ କଲିକତା ପର୍ଯ୍ୟନ୍ତ ଯାଇ ହେବ। ତେଣିକି ଶ୍ରୀଶ୍ରୀ ଠାକୁର ଯାହା କରିବେ ତାହାହିଁ ହେବ। ସମସ୍ତେ ବାହାରି ପଡ଼ିଲେ ମୋ ସାଙ୍ଗରେ। କଲିକତାରେ ଯଥା ସମୟରେ ପହଞ୍ଚି ମୋର ଇଷ୍ଟକର୍ମସାରି ୩୧ ତାରିଖ ଡିସେମ୍ବର ସକାଳ ୬ଟାରେ ଯେତେବେଳେ ମୁଁ ଶିଆଲଦାରୁ ଗାଡ଼ିରେ ଚଢୁଛି– ଦେଓଘର ଯିବାପାଇଁ ସେ ପର୍ଯ୍ୟନ୍ତ ସେମାନଙ୍କର ଯିବାପାଇଁ କୌଣସି ଟଙ୍କାର ବ୍ୟବସ୍ଥା ହୋଇନି। ମୋତେ ଗାଡ଼ିରେ ଛାଡ଼ିବାକୁ ଆସିଲେ ମୋର ଦୁଇଝିଅ ଏବଂ ମୋର ସ୍ତ୍ରୀ, ତାଙ୍କ ସହିତ ଆସିଥିଲେ ନିତ୍ୟ ଓ ତାଙ୍କର ସ୍ତ୍ରୀ, ରାଣୀ। ନିତ୍ୟ ହାତରେ ଯେତେବେଳେ ମୋର ଟିକଟ କାଟିବା ପାଇଁ ଟଙ୍କା ଦେଲି, ସେତେବେଳେ ରାଣୀ ପଚାରିଲେ, ଦାଦା, ମା' ଯିବେନି? ମୁଁ କହିଲି, ଯିବେ ବୋଲି ଆସିଥିଲେ, କିନ୍ତୁ ଯିବାପରି କୌଣସି ପରିସ୍ଥିତି ସୃଷ୍ଟି ହୋଇନାହିଁ। ତେଣୁ ଏମାନେ କଲିକତାରେ ରହନ୍ତୁ। ପଛରେ ସୁଯୋଗ ଆସିଲେ ଯିବେ। ରାଣୀ ବୁଦ୍ଧିମତୀ। ବୁଝିନେଲା ମୋ' ପାଖରେ ଟଙ୍କା ନାହିଁ। ସେ ତା ସ୍ୱାମୀ ସହିତ ପରାମର୍ଶ କରି ମୋତେ କହିଲେ, ଦାଦା! ମା'ଙ୍କୁ ସଙ୍ଗରେ ନେଇଯାନ୍ତୁ।

ମା'ଙ୍କ ଯିବା ଆସିବାପାଇଁ ଆମେ ୨୦ ଟଙ୍କା ଦାନ ସ୍ୱରୂପ ଦେଉଛୁଁ। ଭଉଣୀମାନେ କଲିକତାରେ ଥାଆନ୍ତି। ପଛରେ କେତେବେଳେ ହେଲେ ଯିବେ। ଆଉ ସେତେବେଳେ ଚିନ୍ତା କରିବାର ବେଳନାହିଁ। ଗାଡ଼ି ଛାଡ଼ିବା ମୂହୂର୍ତ୍ତ ସନ୍ନିକଟ। ସେମାନେ ଦୌଡ଼ିଯାଇ ଟିକଟ କାଟି ଆଣିଲେ। ଏକ ବସ୍ତ୍ରରେ ମୋର ସ୍ତ୍ରୀ ମୋ ସହିତ ଶ୍ରୀଶ୍ରୀ ଠାକୁରଙ୍କ ଦର୍ଶନ ପାଇଁ ଦେଓଘର ଚାଲି ଆସିଲେ।

ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ଆସି ବେଳ ଚାରିଟାରେ ଉପସ୍ଥିତ ହେଲି। ଆସନ୍ତାକାଲି ଇଂରାଜୀ ନବବର୍ଷ। ଦେଖିବା ସାଙ୍ଗେ ସାଙ୍ଗେ ଠାକୁର ଖୁସିହୋଇ ଉଠିଲେ। ପଚାରିଲେ, ଆଇସିସ୍, ଗୋଟିଏ ମାତ୍ର କଥା। କି ଅପୂର୍ବ ମାଧୁର୍ଯ୍ୟ ସେହି କଥାରେ! ବିଗତ ପନ୍ଦର ବର୍ଷ କେତେଥର ଶୁଣିଛି। କିନ୍ତୁ ଆହୁରି ଶୁଣିବା ପାଇଁ ପ୍ରାଣ ଆକୁଳିତ। କଥାରେ ଯାହାର ମଧୁଝରେ, ଯାହାର ଚାହାଁଣିରେ ପ୍ରାଣ ହରେ– ଏଇ ସେଇ ପ୍ରାଣନାଥ, ମୋର ମନର ମଣିଷ। ଏଇ ମନୁଷ୍ୟଙ୍କୁ ପାଇଲେ ତାଙ୍କର ନିର୍ଦ୍ଦେଶିତ ପଥରେ ଚାଲିଲେ ମନ ପୃଥିବୀର ସବୁକିଛି ଭୁଲିଯାଏ, ମୁହୂର୍ତ୍ତ ଅସଂଯତ ମନ ସଂଯତହୋଇ ଉଠେ। ଏକ କେନ୍ଦ୍ରିକ (Concentrated) ହୋଇଉଠେ, ଏଇଭାବେ ମନୁଷ୍ୟ ସାଧନା ପଥରେ ଆଗେଇ ଚାଲେ, ପ୍ରିୟପରମ ଆଚାର୍ଯ୍ୟ ଗୁରୁଙ୍କୁ ଭଲପାଇ ତାଙ୍କୁ ଖୁସି କରିବା ନିମନ୍ତେ।

ଇଂରାଜୀ ନବବର୍ଷ ୧୯୬୮, ପହିଲା ଜାନୁୟାରୀ, ଦିନସାରା ବିତିଗଲା ଇଷ୍ଟ ସନ୍ନିକଟେ, ମହାନନ୍ଦେ, ତିନିଦିନ ତିନିରାତି ବିତିଯିବାପରେ ଶ୍ରୀଶ୍ରୀ ଠାକୁରଙ୍କୁ କହିଲି'' ଠାକୁର! ଆପଣଙ୍କ ବୋଉମା' ମୋ ସାଙ୍ଗରେ ଆସିଛନ୍ତି– ତାଙ୍କର ବିଛଣା ବା ଲୁଗାପଟା କିଛି ଆଣିନାହାନ୍ତି। ଏଠାରେ ଭୀଷଣ ଶୀତ ପଡ଼ିଛି– ଆଉ ତମୋର ଏକା ବିଛଣାରେ ଶୋଇବା ଅଭ୍ୟାସ ମଧ୍ୟ ନାହିଁ। ତେଣୁ ଏହାଙ୍କୁ କଲିକତାରେ ଛାଡ଼ିଦେଇ ଆସିବିକି?!! ଶ୍ରୀଶ୍ରୀ ଠାକୁର ମୁହୂର୍ତ୍ତେ ମୋର ସ୍ତ୍ରୀ ଆଡ଼କୁ ଅନାଇଲେ ଏବଂ ପଚାରିଲେ, ''ଝିଅ ମାନେ କାହାନ୍ତି? ମୁଁ କହିଲି କଲିକତାରେ ରାଣୀ ପାଖରେ ରଖି ଆସିଛି।'' ଶ୍ରୀଶ୍ରୀ ଠାକୁର କହିଲେ। ତାଙ୍କର କିଛି ଅସୁବିଧା ହେବନି ତ?'' ମୁଁ କହିଲି,''ନା ସେମାନେ ତାଙ୍କୁ ସାବଧାନ ଓ ଯତ୍ନରେ ରଖିବେ ବୋଲି ମୋର ବିଶ୍ୱାସ। କିନ୍ତୁ ସବୁ କଥାତ ଆପଣ ଜାଣନ୍ତି।'' ଶ୍ରୀଶ୍ରୀ ଠାକୁର କହିଲେ, 'ସେମାନେ ଯେତେବେଳେ କଲିକତାରେ ଭଲଭାବରେ ଅଛନ୍ତି, ତେଣୁ ତୁ ଏଠି ରହିଲେ ମୋର ଭଲ ଲାଗୁଛି। କିଛି କଥାବାର୍ତ୍ତା ହୋଉନି, ରହ, କେତେକଥା ଅଛି।'' ଶ୍ରୀଶ୍ରୀ ଠାକୁରଙ୍କର

ଏହି ଅନ୍ତରଙ୍ଗ କଥା ଶୁଣି ଅନ୍ତର ଭିତରଟା ରଙ୍ଗରେ ରଙ୍ଗୀନ ହୋଇ ଉଠିଲା। ତୃପ୍ତ ଅନ୍ତରେ କହିଲି, ''ରହିବି''। ଠାକୁର ହସି ଉଠିଲେ ସେହି ମଧୁର ହସରେ ହସି।

ଜାନୁୟାରୀ ପାଞ୍ଚ ତାରିଖ। ଦିନ ଚାରିଟାବେଳେ ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ଯାଇ ବସି ରହିଛି। ଘର ଭିତରେ ଶ୍ରୀଶ୍ରୀ ଠାକୁରଙ୍କ ସାନ୍ନିଧ୍ୟରେ ମୋ ଛଡ଼ା ଆହୁରି ଅନେକ ଅଛନ୍ତି। ତା' ମଧ୍ୟରେ ପୂଜ୍ୟପାଦ ଛୋଟଦା (ଠାକୁରଙ୍କ ମଝିଆଁ ପୁଅ), ବଙ୍କିମ ଦା, ସତ୍ୟସ୍ୟାନାଲ ଦା, ଗୁରୁକିଙ୍କର ଦା' ଇତ୍ୟାଦି ଅଛନ୍ତି। ପୂଜ୍ୟପାଦ ବଡ଼ଦା' ଆସିଲେ। ସଂଧ୍ୟା ପ୍ରାର୍ଥନା ହେବ। ଠାକୁର ଘରେ ଏବଂ ବାହାରେ ବହୁତ ଲୋକ ସମବେତ ହୋଇଛନ୍ତି। ମା' ମାନେ ମଧ୍ୟ ଆସି ଉପସ୍ଥିତ ହୋଇଛନ୍ତି ପ୍ରାର୍ଥନାରେ ଯୋଗଦାନ ନିମନ୍ତେ। ଠିକ୍ ସେହି ସମୟରେ ଶ୍ରୀଶ୍ରୀ ଠାକୁର କହି ଉଠିଲେ, ଏଇ ମନି! (ଛୋଟଦା'ଙ୍କ ଡାକ ନାମ) ମୋତେ ହଜାରେ ଟଙ୍କା ଦେବୁ? ଛୋଟଦା ସାଙ୍ଗେ ସାଙ୍ଗେ କହି ଉଠିଲେ– ଆଜ୍ଞା ଦେବି। ତାପର ମୁହୂର୍ତ୍ତରେ ଶ୍ରୀଶ୍ରୀ ଠାକୁର ତାଙ୍କର ମଧୁର ଦୃଷ୍ଟି ମୋ ଉପରେ ପକାଇ ହସ ହସ ମୁହଁରେ କହିଲେ, ''ତୁଇ ଦିବି ନାକି ହାଜାରେ ଟାକା?'' ( ତୁ ମୋତେ ହଜାରେ ଟଙ୍କା ଦେବୁକି?) ମୋର ଆଉ କିଛି ଚିନ୍ତା କରିବାର ସମୟ ନାହିଁ। ଠିକ୍ ସେହି ମୁହୂର୍ତ୍ତରେ ପୂଜ୍ୟପାଦ ଛୋଟଦା' ଶ୍ରୀଶ୍ରୀ ଠାକୁରଙ୍କୁ କହିଲେ, ସୁଶୀଲଦା' ଟଙ୍କା କୁଆଡୁ ପାଇବେ। ମୁଁ ଦୁଇ ହଜାର ଟଙ୍କା ଦେବି।

ଶ୍ରୀଶ୍ରୀ ଠାକୁର ଖୁସି ହୋଇ ଉଠିଲେ। କହିଲେ, ଖୁବ୍ ଭଲ, ତୁ ଦୁଇ ହଜାର ଦେବୁ। ପର ମୁହୂର୍ତ୍ତରେ ମୋ ଆଡ଼କୁ ଚାହିଁ କହିଲେ, ତୁ ଦେବୁ ନା ହଜାରେ ଟଙ୍କା? ମୁଁ ସାଙ୍ଗେ ସାଙ୍ଗେ କହିଲି, ଦେବି। ଶ୍ରୀ ଶ୍ରୀ ଠାକୁର ଏକ ତୃପ୍ତିର ହସ ହସି ଉଠିଲେ, କହିଲେ– ଡେରି କରିଲେ ହେବନି କିନ୍ତୁ। ଯିବୁ ଏବଂ ଜଲଦି ନେଇ ଆସିବୁ। ମୁଁ କହିଲି, ଆଜ୍ଞା। ଓଲଟା ଦିଗରେ ବସିଥିବା ମୋର ସ୍ତ୍ରୀ ବିସ୍ମିତ ଦୃଷ୍ଟିରେ ମୋ ଆଡ଼କୁ ଅନାଇ ରହିଛି। ମୁଁ ବୁଝିପାରିଲି ତା ଅନ୍ତରର କଥା। ସେ ସେଇଠି ବସି ଭାବୁଛି, ଯାହାର ଘରେ ମୁଠାଏ ଚାଉଳ ନାହିଁ, ପିନ୍ଧିବାକୁ ଲୁଗାନାହିଁ, ଏମିତି ପଇସା ଅଭାବରେ ମଧ୍ୟ ଝିଅ ଦୁଇଟିଙ୍କୁ କଲିକତାରୁ ଆଣି ହେଲାନାହିଁ, ସେ କିପରି ଜବାବ ଦେଉଛନ୍ତି ଶ୍ରୀଶ୍ରୀ ଠାକୁରଙ୍କ ପାଖରେ ହଜାରେ ଟଙ୍କା ଦେବେ ବୋଲି। ସେ ତ ମିଛ କହିବେ ନାହିଁ, ବିଶେଷ କରି– ଠାକୁରଙ୍କ ପାଖରେ। ମୁଁ

ତାଙ୍କର ମନର କଥା ବୁଝି ପାରିଲି। କିନ୍ତୁ ସେମାନେ ଜାଣିନାହାନ୍ତି ଆଧ୍ୟାତ୍ମିକ ଜୀବନର ଇତିହାସ। ସେମାନେ ଦେଖିନାହାନ୍ତି ଠାକୁରଙ୍କର ଠାକୁରତ୍ୱ। ସେମାନେ ଉପଲବ୍ଧି କରି ନାହାନ୍ତି ସାଧନାଲବ୍ଧ ଫଳ। ଯାହାହେଉ ପ୍ରାର୍ଥନାପରେ ରାତିରେ ଦୟାଲ ଠାକୁର ପୁଣି ଡାକି କହିଲେ, ଯିବୁ କେବେ? ମୁଁ କହିଲି, ଆପଣ ଯେତେବେଳେ କହିବେ। ଶ୍ରୀଶ୍ରୀ ଠାକୁର କହିଲେ, ଯିବାର ଭଡ଼ା ଅଛି ତ? ମୁଁ କହିଲି, ଭଡ଼ା ଯୋଗାଡ଼ କରି ନେବି।

ଶ୍ରୀଶ୍ରୀ ଠାକୁର କହିଲେ, ଯୋଗାଡ଼ କରି ଆଜି ବାହାରି ପଡ଼ିଲେ ଭଲ ହୁଅନ୍ତା। ଠାକୁରଙ୍କର ସେଇ କଥା ମାନି ବାହାରି ଆସି ଜଣେ ଦୁଇଜଣଙ୍କୁ ଭିକ୍ଷା ମାଗିବା ସଙ୍ଗେ ସଙ୍ଗେ ମୋର କଲିକତା ଆସିବାର ଭଡ଼ା ସଂଗ୍ରହ ହୋଇଗଲା। ପୁଣି ଯାଇ ଠାକୁରଙ୍କର ଅନୁମତି ନେଇ ବାହାରି ପଡ଼ିଲି କଲିକତା ଉଦ୍ଦେଶ୍ୟରେ। ଯେଉଁଦିନ ଆଶ୍ରମରୁ ବାହାରିଲି ତାର ତୃତୀୟ ଦିନରେ ମେଦିନପୁର ଜିଲ୍ଲାସ୍ଥିତ ଡାଙ୍ଗରାପାରା ଯିବାର ସ୍ଥିର ହୋଇଥିଲା। ତେଣୁ ମୁଁ କଲିକତା ଆସି ସେଠାରେ ମୋ ସ୍ତ୍ରୀକୁ ଛାଡ଼ି ଦେଇ ନିତ୍ୟଙ୍କୁ କହିଲି ତାଙ୍କୁ ବାଲେଶ୍ୱରରେ ପହଞ୍ଚାଇ ଦେବାପାଇଁ ଏବଂ ଡାଙ୍ଗରାପାରା ଉଦ୍ଦେଶ୍ୟରେ ମେଦିନୀପୁର ବାହାରି ପଡ଼ିଲି। ଡାଙ୍ଗରାପାରାରେ ଶ୍ରଦ୍ଧେୟ ଅମୂଲ୍ୟମାମାଦା' ଖୁବ୍ ଆଗ୍ରହ ସହକାରେ ମୋ ପାଇଁ ଅପେକ୍ଷା କରୁଥିଲେ। ମୋ'ର ଯିବା ଡେରିର କାରଣ ଏବଂ ଶ୍ରୀଶ୍ରୀ ଠାକୁରଙ୍କର ଆଶୀର୍ବାଦ (ହଜାରେ ଟଙ୍କା) କଥା ଶୁଣି ଆନନ୍ଦ ସହକାରେ ନାଚି ଉଠିଲେ। ସେଠାକାର ମିଟିଂପରେ ସମସ୍ତେ ଆସି ଶ୍ରୀଶ୍ରୀ ଠାକୁରଙ୍କର ହଜାରେ ଟଙ୍କା ଆଶୀର୍ବାଦ କଥା ମୋତେ ପଚାରିଲେ। ତାଙ୍କ ପାଖରେ ଅମୂଲ୍ୟ ଦା' ଏକଥା କହିଥିଲେ। ଡାଙ୍ଗରାପାରା ଠାରୁ ୨୨ ମାଇଲ ଦୂର ବାଗୁରାଇ ଗାଁରେ ସେମାନେ ଗୋଟାଏ ମିଟିଂକରି ମୋତେ ନେଇଯିବାପାଇଁ ବ୍ୟସ୍ତ ହୋଇ ଉଠିଲେ, ତାଙ୍କର ଆଗ୍ରହ ଉପେକ୍ଷା କରି ନ ପାରି ୧୨ ଜାନୁୟାରୀରେ ତାଙ୍କ ମିଟିଂରେ ଉପସ୍ଥିତ ହେଲି। ସାଙ୍ଗରେ ରହିଲେ ଅମୂଲ୍ୟମାମାଦା। ବାଗୁରାଇ ଗାଁଠାରୁ ୧ ମାଇଲ ଦୂରରୁ ଖୋଳ କର୍ତ୍ତାଳ ଧରି କୀର୍ତ୍ତନ କରି ମୋତେ ନେଇଗଲେ। ମିଟିଂରେ ମଧ୍ୟ ଅନେକ ଲୋକ ହୋଇଥିଲେ। ଗୋଟିଏ ଜିନିଷ ଲକ୍ଷ୍ୟ କରୁଛି ପ୍ରତି ଜାଗାରୁ ଲୋକମାନେ ମୋତେ ଯାହାର ଯାହା ଇଚ୍ଛା ମୁତାବକ ଆଣି ଦେଉଛନ୍ତି। ବାଗୁରାଇ ଗାଁ ପର୍ଯ୍ୟନ୍ତ ମୋ ପାଖରେ ଆସି ୧୦୦ ଟଙ୍କା ଜମା ହୋଇଛି। ବ୍ୟକ୍ତିଗତ ଭାବରେ କାହାରିକୁ ମୁଁ କିଛି ମାଗୁନାହିଁ। କିନ୍ତୁ ମୁଁ ଭିକ୍ଷାର୍ଥୀ, ଏକଥା ମଧ୍ୟ ଗୋପନ ନାହିଁ।

ବାଗୁରାଭ ମିଟିଂ ପରେ ଦୁଇଜଣ ଭଦ୍ରଲୋକ ଆଉ ଗୋଟିଏ ଗାଁକୁ ଯିବା ପାଇଁ ବ୍ୟଗ୍ରତା ପ୍ରକାଶ କଲେ। ସେଠାରେ ସେମାନେ ଏକ ଧର୍ମ ସଭାର ବ୍ୟବସ୍ଥା କରିଛନ୍ତି। ମୁଁ ଏତେ ବାଟ ଆସିଛି। ତେଣୁ ସେମାନଙ୍କର ଆଗ୍ରହ ମୁଁ ଉପେକ୍ଷା କରି ପାରିଲି ନାହିଁ। ତାଙ୍କର ସ୍ୱନିର୍ବନ୍ଧ ଅନୁରୋଧ ଏଡ଼େଇ ନପାରି ତା'ପର ଦିନ ସେଠାରେ ଯାଇ ଉପସ୍ଥିତ ହେଲି। ଚଜମାନୁରେ ମୁଁ ତିନି ଦିନ ଥିଲି। ତିନିଦିନ ଭିତରେ ବହୁତ ଲୋକ ଆସିଛନ୍ତି ଧର୍ମାଲୋଚନା କରିବା ପାଇଁ, ମିଟିଂ ମଧ୍ୟ ହୋଇଛି। କିନ୍ତୁ ମୁଁ ବିସ୍ମିତ ହେଲି ଯେତେବେଳେ (ନିରଞ୍ଜନ ମାଇତି) ଯାହାଙ୍କ ଘରେ ମୁଁ ଯାଇ ଉଠିଥିଲି, ସେ ଆସି ମୋତେ ୧୦୧ ଟଙ୍କା ଦେଇ ପ୍ରଣାମ ହେଲେ। ଡାକ୍ତର ଅନୀଲଦା ଆସି ରାତିରେ ଇଷ୍ଟ ପ୍ରସଙ୍ଗ ନେଇ ଆଲୋଚନା କଲେ ଏବଂ ତତ୍‌ପରେ ଦିବସ ସକାଳେ ୫୧ ଟଙ୍କା ଆଣି ଜୁହାର ହେଲେ। ବ୍ରଜେନ ମାଇତିଦା ମଧ୍ୟ ୧୦୧ ଟଙ୍କା ଦେଲେ। ସେମାନଙ୍କର ଏହି ସ୍ୱର୍ଗୀୟ ଭାବ ଏବଂ ଦେବାର ଆଗ୍ରହ ତଥା ଠାକୁରଙ୍କ ପ୍ରତି ଶ୍ରଦ୍ଧା ଭକ୍ତି ଦେଖି ମୋର ଅନ୍ତର ଭିତରେ ଆନନ୍ଦର ଲହରୀ ଖେଳିଗଲା। ସମସ୍ତେ ଆସି ବିନୀତ ଭାବରେ କହିଲେ, ଦାଦା ଶ୍ରୀଶ୍ରୀ ଠାକୁର ଆପଣଙ୍କ ଉପରେ ଯେଉଁ ଆଶୀର୍ବାଦ ଦେଇଛନ୍ତି ତାହା ପାଇଁ ଆମର ଏଇ ସାମାନ୍ୟ ଅର୍ଘ୍ୟ ଯଦି ଦୟା କରି ଗ୍ରହଣ କରିବେ, ତାହାହେଲେ ଆମେ ଧନ୍ୟ ହେବୁ। ଖାନାମୋହନ, କେମାନୁ, ଡେବ୍ରା ହୋଇ ଯେତେବେଳେ ମୁଁ ମେଦିନୀପୁର ଫେରି ଆସିଲି ସେତେବେଳେ ବିଭିନ୍ନ ଲୋକ ଦେଇଥିବା ପ୍ରଣାମୀ ଓ ଅର୍ଘ୍ୟ ୫୩୨ ଟଙ୍କା ହେଲା। ମେଦିନୀପୁର ଟାଉନ୍‌ର ବକ୍‌ସି ବଜାରରେ ଦିନେ ସତ୍‌ସଙ୍ଗ କରି ଚାରିଦିନ ରହି ମୁଁ ବାଲେଶ୍ୱର ଫେରି ଆସିଲି। ସେତେବେଳେ ମୋ ପାଖରେ ମେଦିନୀପୁରରୁ ଦେଇଥିବା ସମସ୍ତ ଟଙ୍କା ମିଶି ୭୫୦ ଟଙ୍କା ରହିଛି। ବାଲେଶ୍ୱର ଫେରି ଆସି ଦେଖିଲି ଘରେ ପିଲାମାନେ ଫେରି ଆସିଛନ୍ତି। ଇତିମଧ୍ୟରେ ମୋର ସ୍ତ୍ରୀ ମଧ୍ୟ ମୋର ବିଭିନ୍ନ ଯଜମାନଙ୍କ ପାଖରୁ ଭିକ୍ଷା କରି ୧୦୦ ଟଙ୍କା ସଂଗ୍ରହ କରି ରଖିଛନ୍ତି। ସଙ୍ଗେ ସଙ୍ଗେ ସେହି ଟଙ୍କା ସଙ୍ଗରେ ନେଇ ମୁଁ କଲିକତା ଫେରିଗଲି। କଲିକତାରେ ଯେଉଁମାନେ ଜାଣିଥିଲେ ଯେ ଶ୍ରୀଶ୍ରୀ ଠାକୁର ମୋ ପ୍ରତି ୧୦୦୦ ଟଙ୍କା ଆଶୀର୍ବାଦ କରିଛନ୍ତି, ସେମାନେ ମୋତେ ଟଙ୍କା ଦେବାପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି।

କିନ୍ତୁ ସେତେବେଳକୁ ମୋର ୯୦୦ ଟଙ୍କା ପୂରଣ ହୋଇ ଯାଇଛି। ନିତ୍ୟ ଏବଂ ରାଣୀ ମୋତେ ୧୦୦ ଟଙ୍କା ଦାନ ଦେଲେ। ସେହି ଟଙ୍କା

ନେଇ ୧୦୦୦ ଟଙ୍କା ପୂରିବାରୁ ମୁଁ ଯାଇ ଆଶ୍ରମରେ ଉପସ୍ଥିତ ହେଲି। ତା ୧୪/୨/୬୭–ରିଖରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଠାକୁର ମୋତେ ଦେଖି କହିଲେ, "ଏଇ ଖବର କଣରେ? ମୁଁ କହିଲି, ଭଲ– ଆପଣଙ୍କ ଆଶୀର୍ବାଦ ପରିପୂରଣ ହୋଇଛି। ଏହା ଶୁଣିବା ସଙ୍ଗେ ସଙ୍ଗେ ଠାକୁର ଖୁସି ହୋଇ ଉଠିଲେ ଏବଂ ପାଖରେ ଠିଆ ହୋଇଥିବା ଜଣେ ଲୋକଙ୍କୁ ଦେଖାଇ ମୋତେ କହିଲେ, ଟଙ୍କାଟା ତାଙ୍କୁ ଦେ। ମୁଁ ଉପସ୍ଥିତ ଠିଆ ହୋଇଥିବା ଅଜିତ୍ ଗାଙ୍ଗୁଲୀ ଦା' ହାତରେ ସେହି ଟଙ୍କା ଦେଇ ଠାକୁରଙ୍କୁ ପ୍ରଣାମ ହେଲି। ଶ୍ରୀଶ୍ରୀ ଠାକୁର ଅଜିତ୍‌ଦାଙ୍କୁ କହିଦେଲେ, ଟଙ୍କାଟା କାହାକୁ ଦେବାକୁ ହେବ। ଆଉ ସେତେବେଳେ ମୁଁ ଦେଖିଲି ଠାକୁର ନିଜପାଇଁ ଟଙ୍କା ମାଗୁନାହାନ୍ତି। କୌଣସି ବିପଦଗ୍ରସ୍ତ ବ୍ୟକ୍ତିପାଇଁ ସବୁବେଳେ ଠାକୁର ଏଇ ଭାବରେ ଭିକ୍ଷା ମାଗନ୍ତି ଏବଂ ସେଇ ଭିକ୍ଷା ଯେଉଁମାନଙ୍କୁ ମାଗନ୍ତି ତାଙ୍କ ଭିତରେ ଶ୍ରୀଶ୍ରୀ ଠାକୁରଙ୍କର ସ୍ତ୍ରୀ, ପୁତ୍ରମାନେ ଏବଂ ଶିଷ୍ୟ ନିର୍ବିବାଦେ ସମସ୍ତେ ରହିଛନ୍ତି। ବିଶେଷ ଆଶ୍ଚର୍ଯ୍ୟ ଜିନିଷ ହେଉଛି, ଯେଉଁମାନଙ୍କୁ ଶ୍ରୀଶ୍ରୀ ଠାକୁର ମାଗନ୍ତି, ସେମାନେ ନିଜକୁ ଅତି ସୌଭାଗ୍ୟବାନ ବୋଲି ମନେ କରନ୍ତି ଓ କୃତାର୍ଥ ହୁଅନ୍ତି।

କିଛି ସମୟ ପରେ ଶ୍ରୀଶ୍ରୀ ଠାକୁର ମୋତେ ଡାକି ହସି ହସି କହିଲେ, ତୋ ପାଖରେ ତ ଟଙ୍କା ନଥିଲା, କେମିତି କ'ଣ କଲୁ? ମୁଁ କହିଲି, ମେଦିନୀପୁରରେ ଗୋଟିଏ ଧର୍ମ ସଭା ହୋଇଥିଲା, ସେଇ ସଭାରେ ମୋତେ ବକ୍ତା ରୂପେ ନେଇ ଯାଇଥିଲେ ଏବଂ ମୁଁ ଆପଣଙ୍କର ଅନୁମତି ନେଇ ବାହାରିଥିଲି। ସଭା ପରେ ମୁଁ ସେଠାକାର ଜଣେ ଦୁଇଜଣଙ୍କୁ କହିଲି ଆପଣଙ୍କର ମୋ ଉପରେ ଏହି ଆଶୀର୍ବାଦର କଥା, ତେଣୁ ମୋତେ ଶୀଘ୍ର ଯିବାକୁ ହେବ। ଏଇକଥା ଶୁଣି ସେମାନେ ବ୍ୟସ୍ତ ହୋଇ ଉଠିଲେ। ମୋତେ ତ ଛାଡ଼ିଲେ ନାହିଁ, ଓଲଟା ବିଭିନ୍ନ ଜାଗାରେ ଆହୁରି ମୋତେ ନେଇଯିବାର ବ୍ୟବସ୍ଥା କଲେ ଏବଂ ସବୁ ଜାଗାରେ ଲୋକ ଭକ୍ତି ସହକାରେ ଦିଅଣା, ଚାରିଅଣା ଠାରୁ ଶହ ଶହ ଟଙ୍କା ଆପଣଙ୍କ ପାଇଁ ଦେଇଛନ୍ତି। ମୁଁ ସେଇ ଦିଅଣାଠାରୁ ଉପରେ ଯେତେ ଟଙ୍କା ହେଉନା କାହିଁକି ସବୁ ଆପଣଙ୍କ ଦାନ ହିସାବରେ ମୁଣ୍ଡରେ ଲାଗାଇ ଦିନେ ଦେଖିଲି ୭୫୦ ଟଙ୍କା ହୋଇଯାଇଛି, ବାକି ଟଙ୍କା ବାଲେଶ୍ୱର ଓ କଲିକତାଠାରୁ ଦେଇଛନ୍ତି, ଆହୁରି ମଧ୍ୟ ଦେଉଥିଲେ। କିନ୍ତୁ ମୋର ଆଉ ଦରକାର ନାହିଁ ବୋଲି ନେଇନାହିଁ।

ଶ୍ରୀଶ୍ରୀ ଠାକୁର ସମବେତ ସମସ୍ତଙ୍କୁ କହିଲେ, ଦେଖ ! ନିଷ୍ଠା ଓ ବିଶ୍ୱାସ ଥିଲେ କ'ଣ ନହୁଏ ? ମୁଁ ଯେତିକି ଲୋକଙ୍କ ପାଖେ ମାଗିଥିଲି, ତା' ଭିତରେ ସୁଶୀଲର କିଛି ନାହିଁ। କିନ୍ତୁ ସେ ମନି (ଛୋଟଦା) ର ପରେହିଁ ସର୍ବପ୍ରଥମ ଆଣି ତାର ଅର୍ଘ୍ୟ ମୋତେ ଦେଲା। ପରମପିତାର ଦୟା ଉପଲବ୍ଧି କରାଯାଏ କର୍ମ ଭିତରେ ଲାଗି ପଡ଼ିଲେ''। ମୁଁ ସାଙ୍ଗେ ସାଙ୍ଗେ ଶ୍ରୀଶ୍ରୀ ଠାକୁରଙ୍କୁ କହିଲି, ଠାକୁର ! କାହିଁ ମୁଁ ତ କିଛି କରିନାହିଁ, ସବୁତ ଆପଣ କଲେ, ମୋତେ ମାଗିଲେ ଆପଣ, ଦେଲେ ଆପଣ, ନେଲେ ଆପଣ, ଏଠୁ ନେଇ ଫେର ଆଉଜଣଙ୍କୁ ଆପଣଇ ଦେଲେ। ଏଥିରେ ମୁଁ କାହିଁ? ମୋ ଘରେ ଖାଇବାକୁ ମିଳୁ ନାହିଁ, ଅଥଚ ମୋତେ ୧୦୦୦ ଟଙ୍କାର ଦାତା ସଜାଉଛନ୍ତି। ଯେଉଁଲୋକମାନେ ଏଇ ଟଙ୍କା ସବୁ ଦେଇଛନ୍ତି, ତାଙ୍କ ଭିତରେ ୯୦ ଭାଗ ଲୋକଙ୍କୁ ମୁଁ ଚିହ୍ନିନାହିଁ, ସେମାନେ ମଧ୍ୟ ମୋତେ ଚିହ୍ନି ନାହାନ୍ତି। ଅଥଚ ଖାଲି ମଧ୍ୟ ଏହି ଟଙ୍କା ଦେଇ ନାହାନ୍ତି, ତା ସାଥିରେ ମୋତେ ଦେଇଛନ୍ତି ତାଙ୍କ ଅନ୍ତରର ଶ୍ରଦ୍ଧା, ସ୍ନେହ, ଆଉ କେତେ ଅଗାଧ ବିଶ୍ୱାସ କରିଛନ୍ତି ମୋତେ, ସମସ୍ତେ ଖୋଲି ଦେଇଛନ୍ତି ସେମାନଙ୍କର ଅନ୍ତରର ଦ୍ୱାର। ମୁଁ ନୂଆକରି ନିଜକୁ ଚିହ୍ନିଲି, ମୁଁ ନୂଆକରି ଆପଣଙ୍କୁ ଚିହ୍ନିଲି, ମୁଁ ନୂଆକରି ଏଇ ଚଳିତ ସଂସାର ଭିତରେ ଆହୁରି ଗୋଟାଏ ନୂଆ ସମାଜ, ସଂସାର ଅଛି ତାହାକୁ ଦେଖିଲି। ଅପାର କରୁଣା ଆପଣଙ୍କର। ଏହି ସମାଜ ସଂସାର ପଛରେ ଆହୁରି ଯେ କେତେ ମଧୁଅଛି ତାହା ଦେଖି ନଥିଲି, ଆପଣଙ୍କ ଆଶୀର୍ବାଦ ମୁଣ୍ଡରେ ନେଇଯିବାରୁ ତାହା ଦେଖିବାର ସୌଭାଗ୍ୟ ହେଲା। ଯେଉଁ ଆତ୍ମୀୟତା ସେମାନଙ୍କ ସହିତ ସୃଷ୍ଟି ହୋଇଛି, ସେମାନେ ମୋର ସୁଖ ଦୁଃଖର ସାଥୀ ହୋଇ ଉଠିଛନ୍ତି, ଆପଣଙ୍କ ଏଇ ଦାନ ଲୋକ ଦୃଷ୍ଟିର ବର୍ହିଭୂତ। ତା'ରି ପାଇଁ କଣ ଗୁରୁ ପ୍ରଣାମରେ ଅଛି।

''ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈଶ୍ରୀ ଗୁରବେ ନମଃ।''

ଶ୍ରୀଶ୍ରୀ ଠାକୁର କହିଲେ, ପରମପିତାର ଅପାର କରୁଣା, ମନୁଷ୍ୟ ସେତିକି ବେଳେ ଦେଖିପାରେ ଯେତେବେଳେ ତଦ୍‌ଗତ ହୋଇ ନିବିଷ୍ଟଭାବରେ ତାଙ୍କ ନିର୍ଦ୍ଦେଶିତ କର୍ମରେ ଲାଗିପଡ଼େ। ତୁମେ ଯେତେ କୁହ, ତୁମେ ନିଜେ ନ ଲାଗିଲେ କିଛି ହୋଇ ନଥାନ୍ତା।

## ॥ ତେଇଶ ॥

ସମସ୍ତେ କହନ୍ତି ଶ୍ରୀଶ୍ରୀ ଠାକୁର ଅନ୍ତର୍ଯ୍ୟାମୀ। ମୁଁ ନିଜେ କିନ୍ତୁ ତାଙ୍କୁ ମୋର ମନର ମଣିଷ ହିସାବରେ ସବୁବେଳେ ଦେଖିଆସିଛି। ଭବିଷ୍ୟତ ବା ଏମିତି କିଛି ମୋତେ କେବେ କହିନାହାନ୍ତି ଯାହାଦ୍ୱାରା କି ଠାକୁରଙ୍କୁ ଯାଦୁକର ବା ଭବିଷ୍ୟତବକ୍ତା, ବୋଲି ମୋର ତାଙ୍କୁ ଭଲ ଲାଗୁଥିଲା। ବରଂ ସେମିତି କିଛି କହୁନଥିଲେ ବୋଲି ମୋର ତାଙ୍କୁ ଭଲ ଲାଗୁଥାଏ। ଦିନେ ବୈଶାଖ ମାସ ଶ୍ରୀଶ୍ରୀ ଠାକୁରଙ୍କ ଚରଣ ପ୍ରାନ୍ତେ ଯାଇ ଉପସ୍ଥିତ ହେଲି। ମୋର ଅନ୍ତରରେ ଅତି ଆନନ୍ଦ, କାହିଁକି ନା କିଛିଦିନ ପୂର୍ବେ ଏକ ଶୁଭଦିନେ ଶ୍ରୀଶ୍ରୀ ଠାକୁରଙ୍କର ବାସ୍ତବ ଆଶୀର୍ବାଦ ବର୍ଷିତ ହେଲା ମୋର ଉପରେ। ରାଜଭିକାରୀ ଶ୍ରୀଶ୍ରୀ ଠାକୁର ମୋର ଜୀବନକୁ ଧନ୍ୟକରି ଡାକି କହିଲେ, ''ମୋତେ ତିନିହଜାର ଟଙ୍କା ଦେବୁକି? ତାଙ୍କର ଏଇ ମହାବାଣୀ ଶୁଣି ଆନନ୍ଦେ ଚମକି ଉଠିଲି। ବିଶ୍ୱାସ କରିପାରିଲି ନାହିଁ ନିଜର କାନକୁ, ସେ କିଛି ଭୁଲ ଶୁଣିଲାକି? ଜିଜ୍ଞାସୁ ଦୃଷ୍ଟିରେ ପୁଣି ତାଙ୍କ ଆଡ଼କୁ ଅନାଇବା ସଙ୍ଗେ ସଙ୍ଗେ ଶ୍ରୀଶ୍ରୀ ଠାକୁର କହି ଉଠିଲେ, ଦେବୁନା ମୋତେ ତିନି ହଜାର ଟଙ୍କା? ତାଙ୍କର ଏଇ ମଧୁମଖା ଆଶୀର୍ବାଦ ଶୁଣି ମନମୋର ଅଣ୍ଡାଳି ବୁଲିଲା– ମୋର ଯେଉଁଠି ଯାହାକିଛି ଅଛି ସର୍ବତ୍ର–କାହିଁ? କିଛିତ ମୋ ପାଖରେ ନାହିଁ। ବିଗତ ବାରବର୍ଷ ବିତିଯାଇଛି କପର୍ଦ୍ଦକହୀନ ହିସାବରେ ସବୁବେଳେ ଚାଲିଛି ତାଙ୍କର ଦୟାରେ। ମୋର କ'ଣ ଅଛି ବା ନଅଛି ମୋ ଠାରୁ ବେଶୀ ଜାଣନ୍ତି ମୋର ମନର ମଣିଷ ମୋର ସାମ୍ନାରେ ଯେ ବସିଛନ୍ତି, ସେ, ତଥାପି ସବୁ ଜାଣି ନ ଜାଣିବା ପରି କହୁଛନ୍ତି,'' ତିନିହଜାର ଟଙ୍କା ଦେବୁ କି?'' ଯେପରି ଟଙ୍କା କେଉଁଠି ଥୁଆ ହୋଇଛି। ଖାଲି ମୋର ଇଚ୍ଛା ଉପରେ ନିର୍ଭର କରୁଛି ଦେବା କି ନ ଦେବା। ଆଉ ଚିନ୍ତା କରିବାର ବେଳ ନାହିଁ। ଚିରଦିନ ଯେ ମୋତେ ସବୁବେଳେ ଦେଇ ଆସିଛନ୍ତି, ସେ ଆଜି ଗ୍ରହୀତା ହୋଇ ମୋ ସାମ୍ନାରେ ଉପସ୍ଥିତ, ମୁହୂର୍ତ୍ତେ ମାତ୍ର ଚିନ୍ତା କରିବାର ବେଳ କାହିଁ? କହି ଉଠିଲି, ଠାକୁର! ଆପଣଙ୍କର ଦୟା ହେଲେ ଦେବି– ଆପଣଙ୍କର ଯେତେବେଳେ ଇଚ୍ଛା ହୋଇଛି, ନିଶ୍ଚୟ ଦେଇପାରିବି। ଠାକୁର ସାଙ୍ଗେ ସାଙ୍ଗେ କହି ଉଠିଲେ, ଡେରି କରିଲେ କିନ୍ତୁ ହେବ ନାହିଁ, ହାସପାତାଳ ପାଇଁ ଜିନିଷ ଆସି ପଡ଼ିରହିଛି। ଷୋହଳ ଶ' ଟଙ୍କା ହେଲେ ମାଲଟି ଛଡ଼ାଯିବ। ବାକି

ଟଙ୍କା ଆଉ ଜଣଙ୍କୁ ଦେବା କଥା। ତାର ଡେରି ହେଲେ ମଧ୍ୟ ଚଳିବ। ପୁନର୍ବାର କହି ଉଠିଲେ, ଡେରି କରିବୁ ନାହିଁ, ସତ୍ୱର ଜିନିଷ ଖଲାସ ନ କରିଲେ ହାସପାତାଳରେ ରୋଗୀମାନେ ଅସୁବିଧା ପାଉଛନ୍ତି। ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି, ଯେତେ ଦୂର ସମ୍ଭବ ସତ୍ୱର ମୁଁ ନେଇ ଆସିବି। ବାହାରୁ ଶ୍ରୀଶ୍ରୀ ଠାକୁରଙ୍କୁ ଏହା କହିଲେ ମଧ୍ୟ ଅନ୍ତର ଭିତରୁ କାନ୍ଦି ଠାକୁରଙ୍କୁ ମନେ ମନେ କହିଲି, ହେ ଠାକୁର! ମୋର ତ କିଛି ନାହିଁ, ଅଛ ଏକମାତ୍ର ତୁମ୍ଭେ, ଦେଖାଅ ପଥ, ଯେଉଁ ଲୀଳା ଆରମ୍ଭ କରିଛ ସେହି ଲୀଳାର ସ୍ରଷ୍ଟା ତୁମେ, ତାହା ପୂର୍ଣ୍ଣ ତୁମେ ହିଁ କରିବ, ତାହାରି ସାଥେ ସମ୍ଭବ ହୋଇ ଉଠିବ ମୋର ଇଷ୍ଟନିର୍ଦ୍ଦେଶ ପାଳନ– ସାଧନାର ସିଦ୍ଧି। କେଉଁଠୁ ପାଇବି ମୁଁ ଏ ଟଙ୍କା? କିଏ ମୋତେ ଦେବ? କାହିଁକି ବା ଦେବେ? ଅତି ନିକଟତମ ଆତ୍ମୀୟ ମା' ବାପା, ସ୍ତ୍ରୀ, ପୁତ୍ର ସେମାନେ ମଧ୍ୟ ଏତେ ଟଙ୍କା ନିଃସ୍ୱାର୍ଥରେ ଦିଅନ୍ତି ନାହିଁ। କିନ୍ତୁ ମୋର ତ ସେମିତି ମଧ୍ୟ କେହି ନାହିଁ, ପୃଥିବୀର ମନୁଷ୍ୟଙ୍କୁ ଏମିତି କିଛି ସେବା ଦେଇ ନାହିଁ ଏମିତି କିଛି ସେମାନଙ୍କ ସହିତ ଆତ୍ମୀୟତା ସୃଷ୍ଟି କରିନାହିଁ, ଯେଉଁମାନେ ମାଗିବା ମାତ୍ରେ ମୋତେ ହଜାର ହଜାର ଟଙ୍କା ନିଃସ୍ୱାର୍ଥରେ ଦାନ କରିବା ପାଇଁ ବ୍ୟସ୍ତ ହୋଇ ଉଠିବେ।

ପନ୍ଦର ବର୍ଷ ସାଧନା ପରେ ମୋର ସାଧକ ଜୀବନର ଯୋଗ୍ୟତା ଅର୍ଥାତ୍ କେତେଦୂର ମୁଁ ଲୋକପାଳି ହୋଇ ଉଠିଛି, ଲୋକରଞ୍ଜନୀ ହୋଇ ଉଠିଛି, ତାହା କଷଟି ପଥରରେ ବିଚାର ହେବ। କିନ୍ତୁ ହେ ପ୍ରଭୁ, ପରୀକ୍ଷାରେ ମୁଁ ତ ସବୁବେଳେ ଫେଲ୍ କରି ଆସିଛି, ଉତ୍ତୀର୍ଣ୍ଣ ମୁଁ କଦାପି ହୋଇ ପାରିନାହିଁ। ଯେତେବେଳେ ହାତ ଧରି ଉଠାଇ ନେଇଛ ମୁଁ ଉଠିଛି, ନ ହେଲେ ପଡ଼ି ରହିଛି ପଙ୍କ ପରି ପରିତ୍ୟକ୍ତ ହିସାବରେ। ତୁମେ ଗ୍ରହୀତା ହୋଇ ଆସିଛ ମୋ ପାଖରେ ହେ ଦାତା ପ୍ରଭୁ ମୋର। କେହି ତ ତୁମକୁ କିଛି ଦାନ କରି ପାରେନା। ଗଙ୍ଗା ଜଳରେ ଗଙ୍ଗା ପୂଜା ଯେପରି ହୁଏ, ମୁଁ ମଧ୍ୟ ତୁମରି ପାଖରୁ ନେଇ ହେବି ମୁଁ ଦାତା।'' ଏକଥା ମୁଁ ଚିନ୍ତା କରିବା ସାଙ୍ଗେ ସାଙ୍ଗେ ଶ୍ରୀଶ୍ରୀ ଠାକୁର ମୋ ଆଡ଼କୁ ଅନାଇ ହସି ଉଠିଲେ ନୀରବେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ। ଅଙ୍ଗଭଙ୍ଗୀ ଦ୍ୱାରା ଇସାରା କରି ମୁହଁରେ କହିଲେ, କେତେବେଳେ ଯିବୁ, ମୋର ଯେ ଡେରି ସହେନା। କହିଲି, ଆପଣ ଯେତେବେଳେ କହିବେ ସେତେବେଳେ ଯିବି। ଠାକୁର କହିଲେ, ''ଆଜି ବାହାରିଲେ ଭଲ ହୁଏ, ତେବେ ତୋର ଯଦି ଇଚ୍ଛା ହୁଏ''। ଅନ୍ତର ଭିତରୁ ହସି ଉଠିଲି– ''ଆଗୋ

ଚିର ସୁନ୍ଦର ! ମୋର ଶୁଭଦିନ ଶୁଭଲଗ୍ନ ଧରାଇଦେଇ କାହିଁକି ପୁଣି ବୃଥା ଲୁଚିବାର ଚେଷ୍ଟା କରୁଛ ମୋ ପଛରେ। ଯିବି, ମୁଁ ଆଜି ଯିବି। ମୁହଁରେ କହିଲି, ମୁଁ ଆଜି ରାତିରେ ହିଁ ଯିବି। ଶ୍ରୀଶ୍ରୀ ଠାକୁର ପୁଣି ମଧୁର ହସ ସହକାରେ କହିଲେ, ଯାଅ ଫେରି ଆସିବ, କର୍ମ ସାଧନ କରି ଅତି ସତ୍ୱର। ଭୂଲୁଣ୍ଠିତ ହୋଇ ଠାକୁରଙ୍କୁ ପ୍ରଣାମ କଲି, ତାଙ୍କ ଘରୁ ବାହାରି ଆସିଲି ହରଷିତ ଅନ୍ତରରେ ଚିନ୍ତିତ ମନେ। ତିନି ହଜାର, ଏମିତିକି ଷୋହଳଶ' ଟଙ୍କା ତ ପଛ କଥା, ବର୍ତ୍ତମାନ ଆଶ୍ରମରୁ ବାହାରି କଲିକତା ଯିବା ପାଇଁ ମୋ ପାଖରେ ରେଳଭଡ଼ା ମଧ୍ୟ ନାହିଁ। ରାତି ନଅଟା ବାଜି ଯାଇଛି। ଆଶ୍ରମର ଲୋକ ସଂଖ୍ୟା ମଧ୍ୟ ବିରଳ ହୋଇ ପଡ଼ିଛି। କାହାକୁ ଭିକ୍ଷା ମାଗିବି। କିନ୍ତୁ ମୋତେ ତ ଯିବାକୁ ହେବ। ଓଃ ! କି ଅନ୍ଧକାର।

କୌଣସି ବାଟ ଦିଶୁ ନାହିଁ। କେଉଁଠି ଗଲେ, କାହା ପାଖକୁ ଗଲେ ସବୁକିଛିର ସମାଧାନ ହୋଇ ପାରିବ ଯଦି ଜାଣିପାରିଥାନ୍ତି ତେବେ କେତେ ସହଜ ହୋଇଥାନ୍ତା ଆଜିର ମୋର ଚଲାର ପଥ। ସଙ୍ଗେ ସଙ୍ଗେ ମନେ ପଡ଼ିଲା ମୁଁ ଅଜ୍ଞାନ–ଅନ୍ଧ ହୋଇଥାଏନା କାହିଁକି ମୋର ଗୁରୁ, ମୋର ମନର ମନୁଷ୍ୟ ସେତ ସର୍ବଜ୍ଞ, ଆଜି ପର୍ଯ୍ୟନ୍ତ ବହୁବାର, ବହୁପ୍ରକାରରେ ତାର ପ୍ରମାଣ ପାଇଛି। ସେଇ ଚକ୍ଷୁଷ୍ମାନର ଆଶୀର୍ବାଦ ଦ୍ୱାରା ମୁଁ ସ୍ନାତ, ମୋର ଚକ୍ଷୁତ ସେ ହିଁ, ମୋର ଦର୍ଶନ ତ ସେ ହିଁ, କାହିଁକି ମୁଁ ଚିନ୍ତା କରି ଚାଲିଛି। କିଛି ନ ହେଲେ, ଗାଡ଼ି ଭଡ଼ା ନ ଜୁଟିଲେ ମଧ୍ୟ ମୁଁ ଚାଲି ଚାଲି ଯିବି। ବାହାରି ପଡ଼ି ମନକୁ ପ୍ରସ୍ତୁତ କରି ନେଲି। ଯେଉଁ ପରିସ୍ଥିତି ହେଉନା କାହିଁକି ମୁଁ ମାନ ନେବି ତାହାକୁ, ମୁଁ ଯିବି, ନିଶ୍ଚିତ ଯିବି ଆଜି କାଳ ବିଳମ୍ବ ନ କରି। ମୋର ଆଶ୍ରମରେ ରହିଥିବା ଘର ଉଦ୍ଦେଶ୍ୟରେ ଚାଲିବାକୁ ଆରମ୍ଭ କଲି। କିଛିଦୂର ଆଗେଇବା ପରେ ପଥରେ ତିନି ଚାରି ଜଣଲୋକ ମୋତେ ପ୍ରଣାମ କଲେ, ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି ମୋ ମାଧ୍ୟମରେ ଦୀକ୍ଷିତ ହୋଇଥିବା ମୋର ଯଜମାନ ଶ୍ରୀମାନ ପିତାମ୍ବର ଓ ତାର ସହପାଠୀବନ୍ଧ ଭୁବନେଶ୍ୱରର ବାଣୀବିହାରଠାରୁ ଆସିଛନ୍ତି। ମୋତେ କହିଲେ– ଏହି ମାତ୍ର ଏଠାରେ ଆମେ ଆସିପହଞ୍ଚିଲୁ–କିପରି ଶ୍ରୀଶ୍ରୀ ଠାକୁରଙ୍କର ଦର୍ଶନ ପାଇବୁ–ରାତି ହୋଇ ଗଲାଣି। ଶ୍ରୀଶ୍ରୀ ଠାକୁରଙ୍କୁ ଦର୍ଶନ କରି ଆମ୍ଭର କେତେକ ପ୍ରଶ୍ନ ତାଙ୍କୁ ପଚାରି ଆଜି ଆମେ ଫେରି ଯିବାକୁ ଚାହୁଁ, ଆପଣ ହିଁ ଏକମାତ୍ର ଭରସା, ନ ହେଲେ ଏହା ସମ୍ଭବ ହୋଇ ପାରିବ ନାହିଁ। ସାଢ଼େ ତିରିଶହ

ମାଇଲ ଦୂରରୁ ସେମାନେ ଆସିଛନ୍ତି ତାଙ୍କର ଇଷ୍ଟ ଦର୍ଶନରେ। ଉପେକ୍ଷା କରି ପାରିଲି ନାହିଁ ତାଙ୍କର ଅନ୍ତରର ଆବେଦନ। ଫେରି ଚାଲିଲି ମୁଁ ସେମାନଙ୍କୁ ନେଇ ପୁନର୍ବାର ଠାକୁରଙ୍କ ପାଖକୁ। ସାଥିରେ ମୋର ଗୁରୁଭ୍ରାତା– ଯଜମାନ, ଶ୍ରୀଶ୍ରୀ ଠାକୁରଙ୍କ ପାଖେ ଉପସ୍ଥିତ ହେବା ମାତ୍ରେ ସମସ୍ତଙ୍କୁ ଦେଖି ଠାକୁର କହି ଉଠିଲେ, ଆଇସିସ୍। ମୁଁ କହିଲି, ଠାକୁର ! ଏମାନେ ଆସିଛନ୍ତି ଭୁବନେଶ୍ୱରୁ। ଆପଣଙ୍କ ସାଙ୍ଗରେ କଥା କହି ଏମାନେ ଆଜି ଫେରି ଯିବାକୁ ଚାହାଁନ୍ତି। ଠାକୁର ସ୍ମିତ ହାସ୍ୟରେ କହିଲେ, ''କହ, ତାଙ୍କର କି କଥା ଅଛି ? ଠାକୁର ଜଣ ଜଣ କରି ସମସ୍ତଙ୍କର ପ୍ରଶ୍ନର ଉତ୍ତର ଦେଲେ। ସମସ୍ତେ ଖୁସିରେ ନାଚି ଉଠିଲେ। କଥା ଶେଷ ହେବା ପରେ ଆଗତ ସମସ୍ତେ କହିଲେ, ଠାକୁର ! ଆମ୍ଭେ ଆଜି ଆଉ ଯିବୁ ନାହିଁ, ଆସନ୍ତାକାଲି ଦିନ ଗାଡ଼ିରେ ଯିବୁଁ। ଠାକୁର ଖୁସିରେ କହି ଉଠିଲେ; ''ଖୁବ୍ ଭଲ ଖୁବ୍ ଭଲ।''

ତାପରେ ମୋ ଆଡ଼କୁ ଅନାଇ କହିଲେ, ଏମାନଙ୍କର ଖାଇବାର ବ୍ୟବସ୍ଥା କରିଦେ, ଆଉ ରାତିରେ ତୋ ପାଖରେ ରଖିବୁ। ମୁଁ କହିଲି, ଠାକୁର ! ମୁଁ ତ ଆଜି ରାତିରେ ଚାଲିଯିବି, ଠାକୁର କହିଲେ, କଣ କହୁଛୁ। ଏମାନେ ସବୁ ଆସିଲେ, ଆଉ ତୁ ଚାଲିଯିବୁ। ସାଙ୍ଗେ ସାଙ୍ଗେ କହିଲେ, ତୁ ଆଜି ରହି ଏମାନଙ୍କୁ ତୋ ସାଙ୍ଗରେ ନେଇ କାଲି ଯିବୁ। ସମସ୍ତେ ଆମ୍ଭେ ଶ୍ରୀଶ୍ରୀ ଠାକୁରଙ୍କୁ ପ୍ରଣାମ କରି ବାହାରି ଆସିଲୁଁ। ଠାକୁର ଘରୁ ବାହାରି ଆଗନ୍ତୁକ ସମସ୍ତେ ମୋତେ ଜୁହାର ହେଲେ ଟଙ୍କା ଦେଇ। ସମସ୍ତଙ୍କର ପ୍ରଣାମୀ ଟଙ୍କା ମୁଣ୍ଡରେ ଲଗାଇ ଗଣତିକରି ଦେଖିଲି ୧୨ ଟଙ୍କା ହୋଇଛି। ହସି ଉଠିଲି ମନେ ମନେ। ଅଭିମାନୀ ମନ ଚାଲି ଚାଲି କଲିକତା ଯିବାପାଇଁ ପ୍ରସ୍ତୁତ ହୋଇଥିଲା। ମାନଭଞ୍ଜନ ମାଲିକ ମୋର ଗାଡ଼ି ଭଡ଼ା ଆଣି ଜୁଟାଇଲେ କଲିକତା ଯିବାପାଇଁ। ପହରିଦିନ ଆସି କଲିକତାରେ ଉପସ୍ଥିତ ହେଲି।

ଭାବି ଚାଲିଛି, କେଉଁଠାରେ, କାହା ପାଖରେ ରଖିଛ ତୁମ୍ଭେ ଠାକୁର, ତୁମ୍ଭର ସେହି ଗୁପ୍ତଧନ, ଯାହାକି ପହଞ୍ଚିବ ତୁମରି ପାଖରେ ମୋ ମାଧ୍ୟମରେ, ଏହିପରି ଚିନ୍ତା କରୁ କରୁ ତିନି ଚାରିଦିନ ବିତିଗଲା। ସାମନାରେ କୌଣସି ବାଟ ଦିଶୁନାହିଁ। ଅଗତିର ଗତି ଶ୍ରୀଶ୍ରୀ ଠାକୁରଙ୍କୁ ସର୍ବଦା ସ୍ମରଣ କରି ଚାଲିଛି। ସଙ୍ଗରେ ରହିଛି ନାମ, ଧ୍ୟାନ୍, ଜପ। ବହୁତ ଲୋକ ଆସି ଦେଖା କରୁଛନ୍ତି କଲିକତାରେ, ତାଙ୍କ ସହିତ ଇଷ୍ଟପ୍ରସଙ୍ଗ ଆଲୋଚନାରେ ଦିନ ବିତିଯାଉଛି, ଯେତେ ଦିନ ଯାଉଛି ସେତିକି ମୁଁ ଉଦ୍‌ବେଳିତ ହୋଇ ଉଠୁଛି। ଠାକୁରଙ୍କ

ଆଶୀର୍ବାଦ ପରିପୂରଣର କୌଣସି ପଥ ଦେଖୁନାହିଁ। ଏହିପରି ଦିନେ ହଠାତ୍ ମୋର ଗୁରୁଭ୍ରାତା ଶ୍ରୀଯୁକ୍ତ କିରଣ ଚନ୍ଦ୍ର ମୁଖାର୍ଜୀ (ଋତ୍ୱିକ) ମୋତେ ଟେଲିଫୋନ କରି କହିଲେ, ସୁଶୀଲଦା, ମୁଁ ଶୁଣିପାରିଲି ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଆଶୀର୍ବାଦ କରିଛନ୍ତି। ତିନିହଜାର ଟଙ୍କାପାଇଁ, ଆପଣ ତାର କି ବ୍ୟବସ୍ଥା କଲେ। ମୁଁ କହିଲି, କିଛି ବ୍ୟବସ୍ଥା ହୋଇନାହିଁ। କୌଣସି ପଥ ଦିଶୁ ନାହିଁ। ତେବେ ଏହା ଠିକ୍–ଯେ ଆଦେଶ କରିଛନ୍ତି ସେ ହିଁ ପଥ ଦେଖାଇବେ। ତେଣୁ ଚୁପ୍ ହୋଇ ବସି ମୁଁ ତାଙ୍କରି ନିର୍ଦ୍ଦେଶ ଅପେକ୍ଷାରେ ରହିଲି। କେଉଁ ପଥରେ କି ଭାବରେ କଣ କଲେ ମୋର ଏହି ସାଧନାରେ ସିଦ୍ଧି ଆସିବ? କିରଣଦା କହିଲେ– ଦମ୍ ଦମ୍ ସାଉଥ୍ ସିନ୍ଥୀ ରୋଡ଼ରେ ଗୋଟିଏ ବିରାଟ ମିଟିଂ ହେବାର ଅଛି ଆସନ୍ତା ରବିବାର ଦିନ। ସେଥିରେ ବହୁତ ଗୁରୁଭାଇମାନେ ଆସିବେ ଓ ବାହାର ଲୋକ ମଧ୍ୟ ଆସିବେ। ଆପଣ ଆସନ୍ତୁ ସେହି ମିଟିଂରେ, ଉପସ୍ଥିତ ରୁହନ୍ତୁ। ମୁଁ କହିଲି– ମୋର କିଛି ଭଲ ଲାଗୁନାହିଁ। ମିଟିଂ ବା ଅନ୍ୟାନ୍ୟ କୌଣସି ସମାବେଶରେ ଯିବାପାଇଁ ମନ ଚାହୁଁନି। ଯେତେଦିନ ଯାଏ ଗୁରୁଦେବଙ୍କର ଦେଇଥିବା ଆଦେଶ ପରିପାଳନ କରିନପାରୁଛି, ସେତେଦିନ ଯାଏ ମୋ ପକ୍ଷରେ ସମ୍ଭବ ନୁହେଁ ଆଉ କିଛି କର୍ମ କରିବା। ଶ୍ରଦ୍ଧେୟ କିରଣଦା କହିଲେ– ଆପଣ ସେହି ମିଟିଂରେ ଉପସ୍ଥିତ ହୁଅନ୍ତୁ, ମୋର ମନେ ହେଉଛି ଆପଣ ସେହି ମିଟିଂରେ ଯୋଗଦାନ କଲେ ନିଶ୍ଚୟ ଏହାର କିଛି ସମାଧାନ ହେବ। ଅବଶ୍ୟ କିପରି, କ'ଣ ହେବ ମୁଁ ଜାଣେ ନାହିଁ। କିନ୍ତୁ ଆଜି ସକାଳୁ ଦେଓଘରରୁ ଟେଲିଫୋନ ପାଇ ମୁଁ ଯେତେବେଳେ ଜାଣିଲି ଯେ ଠାକୁର ଆପଣଙ୍କୁ ଆଶୀର୍ବାଦ ଦେଇଛନ୍ତି, ସେତେବେଳୁ ମୋ ମନ ଭିତରେ ବାରମ୍ବାର ଏହି କଥା ହିଁ ଜାଗ୍ରତ ହୋଇ ଉଠୁଛି ଯେ ଆପଣ ଆସନ୍ତୁ, ଏହି ମିଟିଂରେ ଯୋଗଦାନ କରନ୍ତୁ। କିରଣଦା'ର ଏହି ସନିର୍ବନ୍ଧ ଅନୁରୋଧ ଶ୍ରୀଶ୍ରୀ ଠାକୁରଙ୍କର ଆଦେଶ ମନେ କରି ମୁଁ ସେହି ମିଟିଂରେ ଯୋଗଦାନ କଲି। ବିରାଟ ଲୋକ ସମାବେଶ ହୋଇଥିଲା। ମିଟିଂ ପରେ ଶ୍ରଦ୍ଧେୟ କିରଣଦା' କେତେଜଣ ଲୋକ ଆଣି ମୋ ସହିତ ପରିଚୟ କରାଇଦେଲେ। ତାଙ୍କ ଘର ଚବିଶପ୍ରଗଣା ଜିଲ୍ଲାର ସୁନ୍ଦରବନ ଅଞ୍ଚଳର ସୁଲକୁନୀ ଗ୍ରାମରେ। ବାରାସତ୍ ଠାରୁ ଟ୍ରେନ୍ ବଦଳ କରି ହାସନାବାଦ୍ ହୋଇ ମଟର ଲଞ୍ଚରେ ନଦୀ ପାରହୋଇ ସେଠି ଯିବାକୁ ପଡ଼େ। ସେଠାରେ ସେମାନେ ଏକ ଧର୍ମସଭାର ଆୟୋଜନ କରିଛନ୍ତି। ବିଭିନ୍ନ ବକ୍ତାମାନଙ୍କୁ ସେଠାରେ ନେଇ ଯିବାପାଇଁ ସେମାନେ ଚାହୁଁଛନ୍ତି। ସେମାନେ ମୋତେ ସେଠି ନେଇଯିବାକୁ ଚାହିଁଲେ। କିନ୍ତୁ ମୋର

ମନ ଯିବା ପାଇଁ ପ୍ରସ୍ତୁତ ନୁହେଁ। କିରଣଦା' ସେହି ଭାଇମାନଙ୍କ ସାଙ୍ଗରେ ମିଶି ମୋତେ ବାରମ୍ବାର ସେଠି ଯିବା ପାଇଁ ଅନୁରୋଧ କରିବାକୁ ଲାଗିଲେ। ବାଧ୍ୟ ହୋଇ ସେଠାକୁ ଯିବାର ପ୍ରତିଶ୍ରୁତି ଦେଲି। ମୁଁ କେବେ ସେହି ଅଞ୍ଚଳରେ ଯାଇ ନାହିଁ। ସେମାନେ ମୋର ଯିବାପାଇଁ ପାଥେୟ ବାବଦ ୨୦ ଟଙ୍କା ଦେଲେ ଏବଂ ଯିବାର ତାରିଖ ସ୍ଥିର କରିଦେଲେ ଓ କହିଲେ– କଲିକତାରୁ ଟ୍ରେନରେ ହାସ୍‌ନାବାଦ ଯାଇ ପହଞ୍ଚିଲେ ଆମ୍ଭେ ସେଠାରେ ଷ୍ଟେସିନ୍‌ରେ ଅପେକ୍ଷା କରି ରହିବା। ଯଥାଦିନରେ ମୁଁ ଯାଇ ହାସ୍‌ନାବାଦରେ ଉପସ୍ଥିତ ହେଲି। ସେହିଦିନରେ ସେହିଗାଡ଼ିରେ ଆହୁରି ଅନେକ ବକ୍ତାମାନଙ୍କର ଯିବାର ଥିଲା। କିନ୍ତୁ ହାସନାବାଦରେ ଦେଖାଗଲା ମୋ ଛଡ଼ା ଆଉ କେହି ଯାଇ ନାହାନ୍ତି, ବହୁଲୋକ ସମବେତ ହୋଇଥିଲେ ଆମ୍ଭମାନଙ୍କୁ ନେଇଯିବା ପାଇଁ। କିନ୍ତୁ କେହି ନଯିବାରୁ ସମସ୍ତେ ମୋତେ ନେଇ ମଟର ଲଞ୍ଚରେ ନଦୀପାର ହେବା ସାଙ୍ଗେ ସାଙ୍ଗେ ଦେଖିଲି ବହୁ ଲୋକ ସମବେତ ହୋଇଛନ୍ତି ଆମ୍ଭମାନଙ୍କୁ ସ୍ୱାଗତ ଜଣାଇବା ପାଇଁ। ଫୁଲମାଳ, ବ୍ୟାଣ୍ଡପାର୍ଟି ସହକାରେ ମୋତେ ସେମାନେ ପ୍ରସେସନ୍ କରି ଯଥା ସ୍ଥାନରେ (ସୁଲ୍‌କୁନୀରେ) ନେଇଗଲେ। ସେଠାରେ ମଧ୍ୟ ପ୍ରଚୁର ଜନତା ଅପେକ୍ଷମାନ ରହିଛନ୍ତି। ମୁଁ ଆଶ୍ଚର୍ଯ୍ୟ ହୋଇ ଉଠିଲି ମୋ ପରି ଜଣେ ସାଧାରଣ ଲୋକଙ୍କୁ ଶ୍ରୀଶ୍ରୀ ଠାକୁର ଏଠାରେ ଏମିତି ପରିବେଶ ସୃଷ୍ଟି କଲେ ଯଦ୍ୱାରା କି ସମସ୍ତଙ୍କର ଦୃଷ୍ଟି ମୋ ଉପରେ ପତିତ ହେଲା। ଅବଶ୍ୟ ରାତ୍ରିରେ ମିଟିଂ ପୂର୍ବେ ଅନ୍ୟାନ୍ୟ ମୋର ଗୁରୁଭାଇ ବକ୍ତାମାନ ଯାଇ ଉପସ୍ଥିତ ହେଲେ। କିନ୍ତୁ ଶ୍ରୀଶ୍ରୀ ଠାକୁର ମୋ ପାଇଁ ସେଠାରେ ଏମିତି ଗୋଟିଏ ପରିବେଶ ସୃଷ୍ଟି କରି ରଖିଲେ ଯଦ୍ୱାରା ମୋ ଉପରେ ସମସ୍ତଙ୍କର ଦୃଷ୍ଟି ନିବଦ୍ଧ ରହିଲା। ଦୁଇଦିନ ସେଠାରେ ମିଟିଂ ଉତ୍ସବ ହେଲା। ଚାରି–ପାଞ୍ଚ ହଜାର ଲୋକଙ୍କର ସମାବେଶ ହୋଇଥିଲା। ତୃତୀୟ ଦିନ ଆମ୍ଭେମାନେ ସବୁ ସେଠୁଁ ଫେରି ଆସିବା ପାଇଁ ପ୍ରସ୍ତୁତ ହେଲୁଁ। ସ୍ୱହସ୍ତେ ପାକ୍ କରି ଯେତେବେଳେ ଖାଇବାକୁ ବସିଛୁଁ, ସେତିକିବେଳେ କେତେଜଣ ଲୋକ ଆସି କହିଲେ ଯେ ସେମାନେ ଦୀକ୍ଷା ନେବେ। ଆମେ ୨୦/୨୨ ଜଣ ଋତ୍ୱିକ ସେଠାରେ ଉପସ୍ଥିତ। କିନ୍ତୁ ଯେଉଁମାନେ ଦୀକ୍ଷା ନେବାକୁ ଆସିଲେ ସେମାନେ ଚାହିଁଲେ ମୋ ମାଧ୍ୟମରେ ଦୀକ୍ଷା ହେଉ। ମୁଁ ତାଙ୍କୁ ବୁଝାଇଲି ଯେ ମୁଁ ଖାଇ ଉଠି ସଙ୍ଗେ ସଙ୍ଗେ କଲିକତା ଚାଲିଯିବି। ଆପଣମାନେ ଉପସ୍ଥିତ ଅନ୍ୟ କୌଣସି ଋତ୍ୱିକ୍ ମହାଶୟଙ୍କ ପାଖରୁ ଦୀକ୍ଷା ଗ୍ରହଣ କରନ୍ତୁ। କିନ୍ତୁ ସେମାନେ କହିଲେ– ନାଁ, ତା' ହୋଇ ପାରିବ ନାହିଁ। ଆମର ଇଚ୍ଛା ଆପଣହିଁ ଆମ୍ଭଙ୍କୁ ଦୀକ୍ଷା ଦିଅନ୍ତୁ। ସେଠାକାର

ଅନ୍ୟାନ୍ୟ କର୍ମୀ ଓ ଋତ୍ୱିକ ଭାଇମାନେ ମଧ୍ୟ ମୋତେ କହିଲେ– ଆପଣ ଆଜି ରହି ଏମାନଙ୍କୁ ଦୀକ୍ଷା ଦେଇଯାନ୍ତୁ। ସମସ୍ତଙ୍କର ଅନୁରୋଧରେ ମୁଁ ସେଠି ରହିଗଲି। ଅନ୍ୟାନ୍ୟ ମୋର ଋତ୍ୱିକ ଭାଇମାନେ ସମସ୍ତେ ସେଠୁଁ ସେଦିନ ଫେରିଚାଲିଗଲେ। ସଂଧ୍ୟାବେଳେ ଚାରିଜଣଙ୍କର ଦୀକ୍ଷା ହେଲା। ତାପରେ ଆଲୋଚନା ଚକ୍ର ବସିଲା, କ୍ରମେ କ୍ରମେ ବହୁଲୋକ ଆସି ଜମାୟିତ ହେଲେ। ରାତ୍ରି ୧ଟା ବେଳେ ମୁଁ ଯେତେବେଳେ ସେଠୁଁ ଆସୁଛି ମୋର ରହିବା ସ୍ଥାନକୁ, ସେତେବେଳେ ପ୍ରାୟ ଏକଶତ ଲୋକ ମୋ ସାଙ୍ଗରେ ଆସିଲେ ଏବଂ ସେମାନେ ଅନୁରୋଧ କରିବାକୁ ଲାଗିଲେ ଆହୁରି ଦୁଇ ଚାରିଦିନ ସେଠାରେ ରହିବା ପାଇଁ। ମୁଁ ସେମାନଙ୍କୁ ବିନୀତ ଭାବରେ କହିଲି– ମୁଁ ଆସନ୍ତାକାଲି କଲିକତା ଫେରିଯିବି, କାହିଁକିନା ମୋର ମାଲିକ ଶ୍ରୀଶ୍ରୀ ଠାକୁରଙ୍କର ଆଶୀର୍ବାଦ ହୋଇଛି ମୋ ଉପରେ। ତାହା ପାଇଁ ଆଜି ପର୍ଯ୍ୟନ୍ତ କିଛି କରାହୋଇନାହିଁ। ମୋର ମନ ଖୁବ୍ ଚଞ୍ଚଳ। ତେଣୁ ମୁଁ ଏଠି ରହି କାଳକ୍ଷେପ କରିପାରିବି ନାହିଁ। ଉପସ୍ଥିତ ଭାଇମାନଙ୍କ ଭିତରେ କେତେଜଣ ବ୍ୟସ୍ତ ହୋଇ ଜାଣିବାକୁ ଚାହିଁଲେ ଶ୍ରୀଶ୍ରୀ ଠାକୁରଙ୍କର କି ଆଶୀର୍ବାଦ ଅଛି ମୋ ଉପରେ। ମୁଁ କହିଲି– ଠାକୁର ମୋ ଉପରେ ତିନି ହଜାର ଟଙ୍କାର ଦାୟିତ୍ୱ ଦେଇଛନ୍ତି। ମୁଁ ଆଜି ପର୍ଯ୍ୟନ୍ତ ତାର କିଛି କରି ନାହିଁ। ଶ୍ରୀଗୁରୁର ଏହି ଆଶୀର୍ବାଦ ଅବହେଳା କରି ଅନ୍ୟ କୌଣସି କର୍ମରେ ବ୍ୟସ୍ତ ରହିବା ମୋ ପକ୍ଷରେ ଗୁରୁବାକ୍ୟ ଲଙ୍ଘନ ସ୍ୱରୂପ ମନେ ହେଉଛି। ଉପସ୍ଥିତ ଭାଇମାନଙ୍କ ଭିତରେ ନିତାଇ ମଣ୍ଡଳ ଇତ୍ୟାଦି କହି ଉଠିଲେ– ଦାଦା! ଠାକୁରଙ୍କର ଏହି ଆଶୀର୍ବାଦର କିଛି ଭାଗ କ'ଣ ଆମେ ନେଇ ପାରିବା ନାହିଁ? ଆମେ ଏତେ ବଡ଼ ଉତ୍ସବ କଲୁ, ପ୍ରାୟ ପାଞ୍ଚ ଛଅ ହଜାର ଟଙ୍କା ଖର୍ଚ୍ଚ କରି । ଆଉ ଠାକୁର ନିଜ ମୁହଁରେ ଆପଣଙ୍କୁ ଯାହା ମାଗିଛନ୍ତି, ଆପଣ ଏଠାରେ ଆସି ଫେରିଯିବେ, ଆମେ ତାହା ପାଇଁ କିଛି କରିବା ନାହିଁ? ଏହା କଦାପି ହୋଇ ନପାରେ। ଆମର ଏଇ ଗରୀବ ଅଞ୍ଚଳ ସମସ୍ତେ କିଛି କିଛି ଦେଇ ଠାକୁରଙ୍କର ଏହି ଉତ୍ସବ କରିଛୁଁ। କାହାରି ହାତରେ କିଛି ନାହିଁ। ତଥାପି ଆପଣ କହନ୍ତୁ ଠାକୁରଙ୍କର ଏହି ମହାନ ଯଜ୍ଞରେ ଆମେ କେତେ ଦେବା। ମୁଁ କହିଲି– ଆପଣମାନଙ୍କ ଅନୁରୋଧରେ ମୁଁ ଆଉ ଦୁଇଦିନ ରହିବି। ଦୁଇଦିନ ଭିତରେ ଯାହା ଆପଣମାନେ ସଂଗ୍ରହ କରିପାରିବେ। ତାହାହିଁ ମୁଁ ଠାକୁରଙ୍କର ଆଶୀର୍ବାଦ ଜାଣି ନେବି, ତାହା ଯେତେ କମ୍ ବା ଯେତେ ବେଶୀ ହେଉନା କାହିଁକି। ସେମାନେ ବାରମ୍ବାର ମୋତେ କହିବାକୁ ଲାଗିଲେ– ନା, ନା, ଦାଦା, ଦୟାକରି କହନ୍ତୁ,

ଆମେ କେତେ ଦେବା। ଶ୍ରୀଶ୍ରୀ ଠାକୁର ଆପଣଙ୍କୁ ଆଶୀର୍ବାଦ କରିଛନ୍ତି, ଆପଣ ଆମକୁ ଯାହା କହିବେ, ତାହା ଠାକୁରଙ୍କର ଆଦେଶ ବୋଲି ଆମେ ଜାଣିବା। ତାଙ୍କର ବାରମ୍ବାର ଆନ୍ତରିକ ଅନୁରୋଧରେ ମୋର ମନ ଭିତରେ ଯାହା ଆସିଲା, ତାହାହିଁ କହିଲି ଚାରୋଟି ଏକ, ଅର୍ଥାତ୍ ୧୧୧୧ ଟଙ୍କା। ଯଦି ପାର ଭଲ ହେବ। ସେମାନେ ଶୁଣି ଚିନ୍ତିତ ହୋଇ ପଡ଼ିଲେ। ଏତେଗୁଡ଼ିଏ ଟଙ୍କା ଦୁଇଦିନ ଭିତରେ ସଂଗ୍ରହ କରିବା ଏକ ପ୍ରକାର ଅସମ୍ଭବ। ତଥାପି ମୋର ମୁହଁରୁ ବାହାରିଥିବା କଥାକୁ ଶୁଣି ସେମାନେ ଅତି ଉତ୍ସାହ ସହକାରେ ଅର୍ଘ୍ୟ ସଂଗ୍ରହରେ ଲାଗି ପଡ଼ିଲେ। ସକାଳ, ସନ୍ଧ୍ୟା, ରାତ୍ରିରେ ବିଭିନ୍ନ ଜାଗାରେ ମୋତେ ନେଇ ସତ୍‌ସଙ୍ଗ କରିବାକୁ ଲାଗିଲେ। ଯେଉଁଦିନ ରାତ୍ରିରେ ଏକଥା ହେଲା ତହିଁଆରଦିନ ଦିନସାରା ଚାରିଆଡ଼େ ବୁଲି ବୁଲି ମୋର ରହିବା ସ୍ଥାନରେ ଫେରି ରାତ୍ରି ୯ଟା ସମୟରେ ଶୁଣିଲି ସେ ଘରର ବଡ଼ ଝିଅ ଯେକି ଉତ୍ସବ ଉପଲକ୍ଷେ ଶ୍ୱଶୁର ଘରୁ ଏଠାକୁ ଆସିଥିଲେ, ତାହାର ଦିନ ଚାରିଟାବେଳୁ କଲେରା ହୋଇଛି ଏବଂ କିଛିକ୍ଷଣ ପୂର୍ବରୁ ତାଙ୍କର ଚେତନା ହଜି ଯାଇଛି। ସେଲାଇନ ଇନ୍‌ଜେକସନ୍ ଦିଆ ହୋଇଥିଲା, କିନ୍ତୁ କିଛି କାମ ହୋଇନାହିଁ। ଝିଅର ବାପ ମୋତେ ଦେଖି କାନ୍ଦିବାକୁ ଲାଗିଲେ, କହିଲେ—ଦାଦା ! ଆପଣ ମୋର ଝିଅକୁ ବଞ୍ଚାନ୍ତୁ। ଆପଣଙ୍କ ଉପରେ ଶ୍ରୀଶ୍ରୀ ଠାକୁରଙ୍କର ଆଶୀର୍ବାଦ ରହିଛି। ଠାକୁରଙ୍କ ପାଖରୁ ଆପଣ ଆସିଛନ୍ତି।

ମୋର ମନ ଭାରି ବ୍ୟସ୍ତ ହୋଇଉଠିଲା। କହିଲି— ଶ୍ରୀଶ୍ରୀ ଠାକୁର ଯାହା ହେଲେ ଭଲ ହେବ, ତାହାହିଁ କରିବେ। କିନ୍ତୁ ଗୋଟିଏ କଥା ମୋର ମନେ ହେଉଛି ଏ ବିପଦ ଆସିଲା କାହିଁକି? ଏ ବାଡ଼ିର ସମସ୍ତେ ଠାକୁରଙ୍କର ଭକ୍ତ। ତାଙ୍କର ଆଶ୍ରିତ ହେବା ସତ୍ତ୍ୱେ ବିପଦ ଆସିଲା। ନିଶ୍ଚୟ ଏହା ଭିତରେ କିଛି ଅନାଚାର ହୋଇଛି। ଉକ୍ତ ଦାଦା କାନ୍ଦି କହିଲେ— ଦାଦା, ଆପଣ ଠିକ୍ କହିଛନ୍ତି। ଆମ ଘରେ ସମସ୍ତେ ନିରାମିଷାଶୀ, ବିଶେଷ କରି ଆପଣ ଏଠି ଉପସ୍ଥିତ ରହିଛନ୍ତି। ଏ ଘରେ ମାଛ, ମାଂସ, ପିଆଜ, ରସୁଣ କେବେ ଆସେ ନାହିଁ। କିନ୍ତୁ କାଲି ମୋର ଝିଅ ଲୋକଦ୍ୱାରା ପୋଖରୀରୁ ଚିଙ୍ଗୁଡ଼ି ମାଛ ଧରି ରୋଷେଇ କରି ଖାଇଛନ୍ତି ଏବଂ ଆଜି ସକାଳେ ମଧ୍ୟ ଗତ କାଲିର ରୋଷେଇ କରିଥିବା ଚିଙ୍ଗୁଡ଼ି ମାଛ ଆମ୍ଭର ବାରମ୍ବାର ନିଷେଧ ସତ୍ତ୍ୱେ ଖାଇଛନ୍ତି। ତାହାରି କର୍ମଫଳ ସ୍ୱରୂପ ଏ ବିପଦ ଉପସ୍ଥିତ। କିନ୍ତୁ ସେ ଯାହା କରୁନା କାହିଁକି ମୁଁ ବାପ ହୋଇ ମୋର ଝିଅର ବିୟୋଗ ବ୍ୟଥା ସହି ପାରୁନାହିଁ। ମୋର ଭାରି କଷ୍ଟ ହେଉଛି। ମୁଁ ସେମାନଙ୍କୁ କହିଲି— ପୁଣି

ଡାକ୍ତର ଡାକିବା ପାଇଁ । କିନ୍ତୁ ବାରମ୍ଭାର ଡାକ୍ତରଙ୍କୁ ଡାକିବା ସତ୍ତ୍ୱେ ସେ ଆସିଲେ ନାହିଁ। ସେ କହିଲେ– ରୋଗୀର ନାଡ଼ି ଛାଡ଼ିଯାଇଛି, ମୁଁ ଆଉ ଯିବି ନାହିଁ। କୌଣସି ପନ୍ଥା ନଦେଖି ମୁଁ ମନେ ମନେ ଠାକୁରଙ୍କ ପାଖରେ ଜଣାଇଲି– ଠାକୁର! ସମସ୍ତ ଋତ୍ୱିକ୍ ଚାଲିଗଲେ, ମୋତେ ଏଠି ରଖିଲେ, ତୁମର ଉଦ୍ଦେଶ୍ୟ କିଛି ଜାଣିପାରୁ ନାହିଁ। ଆଜିକାର ଏହି ମୃତ୍ୟୁ ଲୋକସମ୍ମୁଖେ ମୋର ତଥା ଆପଣଙ୍କର ନିନ୍ଦା ସୂଚିତ କରିବ। ଅବଶ୍ୟ ଏହା ସତ୍ୟ, ଯାହାହେଲେ ଭଲ ହେବ, ତାହାହିଁ ଆପଣ କରିବେ। ଠାକୁରଙ୍କୁ ମନେ ମନେ ଏହି କଥା ଜଣାଇ ମୁଁ ନାମଧ୍ୟାନରେ ବସିଲି। ତାଙ୍କର ବାପଭାଇମାନଙ୍କୁ କହିଲି ରୋଗୀପାଖରେ ରହିବା ପାଇଁ ଓ ତାଙ୍କ ଦେହରେ ହାତଦେଇ ନାମ କରିବାପାଇଁ। ରାତ୍ରିସାରା କେମିତି ବିତିଗଲା ମୁଁ ଜାଣିନାହିଁ। ଶେଷରାତ୍ରି ଚାରିଟା ବେଳେ ଯେତେବେଳେ ମୋର ଧ୍ୟାନଭଙ୍ଗ ହେଲା ସେତେବେଳେ ଦେଖିଲି ମୋର ଦେହସାରା ଏକ ପ୍ରକାର କଳା ପିମ୍ପୁଡ଼ି (ଯେଉଁମାନେ କି ଗଛରେ ରହନ୍ତି) ଘେରି ରହିଛନ୍ତି। ସେମାନେ ରାତ୍ରିସାରା ମୋତେ କାମୁଡ଼ିଛନ୍ତି। ଦେହ ଫୁଲିଯାଇଛି। ହଜାର ହଜାର ପିମ୍ପୁଡ଼ିରେ ମୋର ଦେହ କଳା ପଡ଼ିଯାଇଛି। ମୁଁ କିନ୍ତୁ କିଛି ଜାଣି ପାରିନାହିଁ। ମୋର ଦେହରୁ ସେଗୁଡ଼ିକୁ ଝାଡ଼ିଦେବା ପରେ ବାଡ଼ି ଭିତରୁ ଝିଅର ବାପ ଏବଂ ଭାଇମାନେ ଦଉଡ଼ି ଆସି ମୋତେ କହିଲେ– ଦାଦା, ରୋଗୀର ଶ୍ୱାସପ୍ରଶ୍ୱାସ ଚାଲୁଛି। ମୁଁ ସାଙ୍ଗେ ସାଙ୍ଗେ ଡାକ୍ତର ଡାକିବାକୁ କହିଲି। ଡାକ୍ତର ଆସି ପୁନର୍ବାର ତାକୁ ସେଲାଇନ୍ ଦେଲେ। ଧୀରେ ଧୀରେ ରୋଗୀ ଭଲ ହୋଇ ଉଠିଲା ଶ୍ରୀଶ୍ରୀ ଠାକୁରଙ୍କର ଅପାର କରୁଣାରେ। ତାଙ୍କ ବାପ ଆସି ମୋତେ ୧୦୧ ଟଙ୍କା ଦେଇ ପ୍ରଣାମ ହେଲେ, ଅତି ଉତ୍ସାହରେ ସମସ୍ତେ ଲାଗିପଡ଼ିଲେ ଠାକୁରଙ୍କର ଆଶୀର୍ବାଦୀ ଅର୍ଘ୍ୟ ସଂଗ୍ରହ କରିବାରେ। ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି ଠାକୁରଙ୍କର ଲୀଳା। ମନେ ପଡ଼ିଗଲା ଭଗବାନର ସେହି କଥା– "କରି କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ କେହି ନାହିଁ।" ଯେତେ ଦେଖୁଛି, ସେତିକି ଆଶ୍ଚର୍ଯ୍ୟ ହୋଇଯାଉଛି। ନୂଆ ନୂଆ ଅନୁଭୂତି, ନୂଆ ଦର୍ଶନ, ମୋର ସାଧନାର ଜୀବନକୁ ଆହୁରି ଉତ୍ସାହିତ କରି ଉଠାଉଛି। ଦିନେ ଠାକୁର କହିଥିଲେ– ତୁ ଯେଉଁଠି ଯେତେବେଳେ ରହିବୁ, ଜାଣିଥିବୁ ମୁଁ ତୋର ସାଙ୍ଗରେ ରହିଛି। ବହୁଥର ଉପଲବ୍ଧି କରିବାପରେ ଆହୁରି ଥରେ ଉପଲବ୍ଧି ହେଲା, ସକାଳୁ ଚାରିଆଡ଼େ ଠାକୁରଙ୍କର ଆଲୋଚନା ଚାଲିଛି, ଦିନରାତି ଏମିତି ବିତିଗଲା। ତହିଁ ଆରଦିନ ମୁଁ କଲିକତା ଫେରି ଆସିବି। ଦିନ ଦୁଇଟାରୁ ମଟରଲଞ୍ଚ। ଦିନ ଗୋଟାଏ ବେଳେ ସମସ୍ତେ ଆସି ମୋ ହାତରେ ଟେକିଦେଲେ ଟ.୧୧୨୪.୫୦ପଇସା।

ସମସ୍ତଙ୍କ ଆଖିରେ ଲୁହ ଗଡୁଛି। ସେମାନେ ମୋତେ ଛାଡ଼ିବାକୁ ଚାହୁଁ ନାହାନ୍ତି। ବାରମ୍ବାର ମୋତେ କହିବାକୁ ଲାଗିଲେ— ଦାଦା! ଠାକୁରଙ୍କର ଏକି ଅପାରଲୀଳା। ପହରିଦିନ ଆପଣ ଯେତେବେଳେ ୧୧୧୧ ଟଙ୍କା କଥା କହିଥିଲେ ଆମେ ଭାବିଥିଲୁଁ— ଏହା ଅସମ୍ଭବ, ହୋଇ ପାରିବନାହିଁ। କିନ୍ତୁ ଦେଖିଲି ଠାକୁର ସବୁ ବ୍ୟବସ୍ଥା କରି ରଖିଛନ୍ତି। ଯେ ଶୁଣିଛି ଏକଥା ସେ ଅତି ଉତ୍ସାହେ ଲାଗିପଡ଼ି ତାଙ୍କର ଭକ୍ତିପ୍ଳୁତ ଅର୍ଘ୍ୟ ଆଣି ଉପସ୍ଥିତ କରିଛନ୍ତି। ଜଣେ ଡାକ୍ତରବାବୁ ଥିଲେ, ଏହି ଦୁଇଦିନ ଯେଉଁଠି ଯେତେ ରୋଗୀ ଦେଖିଛନ୍ତି, ଏବଂ ସେଠୁ ଯାହାକିଛି ପାଇଛନ୍ତି, ସବୁ ଟଙ୍କା ଆଣି ଜଣା ଦେଇଛନ୍ତି ଠାକୁରଙ୍କର ଏହି ମହାଯଜ୍ଞରେ। ମୁଁ ସେମାନଙ୍କର ସେହି ଭକ୍ତି, ଠାକୁରଙ୍କ ଉପରେ ଅଗାଧ ବିଶ୍ୱାସ ଦେଖି ନିଜେ ନୂଆ କରି ବଳ ପାଇଲି ଅନ୍ତର ଭିତରେ, ନବରୂପରେ ଦେଖିଲି ସେହି ଚିରନବୀନଙ୍କୁ। ଫେରି ଆସିଲି କଲିକତା। କଲିକତାରେ ମୋର ଯଜମାନଭିତରେ ଯେଉଁମାନେ ଶୁଣିଥିଲେ ଠାକୁରଙ୍କର ଏହି ଆଶୀର୍ବାଦ କଥା, ସେମାନେ ଅନେକେ ଟଙ୍କା ସଂଗ୍ରହ କରି ରଖିଥିଲେ, ମୁଁ ଫେରିବା ସଙ୍ଗେ ସଙ୍ଗେ ସେମାନେ ସେସବୁ ଟଙ୍କା ଆଣି ମୋତେ ଦେଲେ, ସବୁ ମିଶି ମୋ ପାଖରେ ୧୭୦୦ ଟଙ୍କା ହେଲା। ହାସ୍ପାତାଳର ଜିନିଷ ଛଡ଼ାଇବା ପାଇଁ ଷୋହଳଶ' କେତେଟଙ୍କା ପ୍ରୟୋଜନ। ଶ୍ରୀଶ୍ରୀ ଠାକୁର କହିଥିଲେ ଜଲଦି ଟଙ୍କା ଆଣି ସେହି ଜିନିଷ ଖଲାସ କରିବାପାଇଁ, ଏହି ଟଙ୍କା ନେଇ ଫେରିଗଲି ଠାକୁରଙ୍କ ପାଖକୁ। ଯାଇ ଠାକୁରଙ୍କୁ ପ୍ରଣାମ ହେବା ସଙ୍ଗେ ସଙ୍ଗେ ଠାକୁର କହିଲେ। ''ଆଇସିସ୍''। ମୁଁ ଟଙ୍କା ତଳେ ରଖି ପ୍ରଣାମ ହେଲି। ସାଙ୍ଗେ ସାଙ୍ଗେ ଠାକୁର କାଜଲଦା'ଙ୍କୁ ଡାକିଲେ। ତାଙ୍କୁ କହିଲେ— ଏ ଟଙ୍କା ନେ, ହାସପାତାଳର ଜିନିଷ ଖଲାସ କରି ଆଣ। ସମସ୍ତେ ଚାଲିଯିବା ପରେ ଶ୍ରୀଶ୍ରୀ ଠାକୁର ମୋତେ କହିଲେ— ତୁ ମେଜିକ୍ ପରି ଏମିତି କ'ଣ କଲୁଛୁ? ମୁଁ ବିସ୍ତାରିତ ସବୁ ଘଟଣା ଠାକୁରଙ୍କ ପାଖେ କହିଲି। ଠାକୁର କହିଲେ— ପରମ ପିତାର ଦୟାରେ ତୁ ସେଦିନ ସେଠି ରହିବାରୁ ମା'ଟି ବଞ୍ଚିଗଲା। ତାଣି ପାଇଁ ତ ପ୍ରାର୍ଥନାରେ ଅଛି—

''ସାଧୁସଙ୍ଗ ମୋହି ଦେଓନିତ ପରମ ଗୁରୁଦାତାର।''

'ସାଧୁ' କଥାର ଅର୍ଥ ହିଁ ତ ଏହା ଯେ ଇଷ୍ଟସ୍ୱାର୍ଥୀ। ଇଷ୍ଟସ୍ୱାର୍ଥରକ୍ଷା କରିବାପାଇଁ ସୂଚାରୁ ରୂପରେ ତାର ଜୀବନର ସବୁକିଛିକୁ ନିୟୋଜିତ କରେ ଏବଂ ଏହି ପଥହିଁ ସେହି ପଥ ଯେଉଁଥିରେ କି ନିଜେ ଆଗଭର ଚାଲେ

ଜୀବନବୃଦ୍ଧି ପଥରେ ଏବଂ ଆଗେଇ ନେଇଯାଏ ସମାଜ ଜାତି ସପରିବେଶ ସମସ୍ତଙ୍କୁ। ମୁଁ କହିଲି ଠାକୁର— ଆପଣଙ୍କ ପାଖରେ ଆସି ମୁଁ ଜୀବନ ଦେଇ ଏହା ବୁଝିଛି— ଆପଣ ଇଚ୍ଛା କଲେ ସବୁ କିଛି ହୋଇପାରେ। ନହେଲେ କାହାରି ସାଧ୍ୟ ନାହିଁ କିଛି କରିପାରେ। ଶ୍ରୀଶ୍ରୀ ଠାକୁର କହିଲେ— ପରମପିତାର ମଧ୍ୟ ସାଧ୍ୟ ନାହିଁ କିଛି କରିବାର ଯଦି ତାର ଆଦେଶ ତୁମେ ପାଳନ ନ କରିବ। ତାଙ୍କର ଆଶୀର୍ବାଦ ଆସେ ତାଙ୍କ ନିର୍ଦ୍ଦେଶିତ ପଥରେ ଦ୍ୱିଧାହୀନ ଚିତ୍ତେ ଆଗେଇ ଗଲେ। ମୁଁ କହିଲି— ଠାକୁର ମୋତେ ତିନି ହଜାର ଟଙ୍କା କହିଥିଲେ, ୧୭୦୦ ଟଙ୍କା ଆସିଲା ଆହୁରି ୧୩୦୦ଟଙ୍କା ଦରକାର। ମୁଁ କେବେ ବାହାରିବି? ଠାକୁର କହିଲେ— ତୋର ଆଉ ବାହାରିବାର ଦରକାର ନାହିଁ। ବିଶ୍ରାମ ଦରକାର। ତୋର ଦେହପାଇଁ ମୋର ଚିନ୍ତା ହେଉଛି। ଦେହ ସୁସ୍ଥ ଥିଲେ ବହୁତ କିଛି ହୋଇପାରନ୍ତା। ମୋର ଚିନ୍ତା ତୋର ଶରୀର ନେଇ। ସାବଧାନରେ ରହିବୁ। ଶ୍ରୀଶ୍ରୀ ଠାକୁରଙ୍କୁ ଯେତେବେଳେ ମୁଁ କହିଛି ତାଙ୍କର ଅଲୌକିକ ଶକ୍ତିକଥା— ସେ ହିଁ ଯେ ସର୍ବଶକ୍ତିମାନ, ଇଚ୍ଛା କରିଲେ ସବୁ କିଛି କରିପାରନ୍ତି, ସେତିକିବେଳେ ଦେଖିଛି ଠାକୁର ସେ କଥାକୁ ଏଡ଼ାଇ ଯାଇ ଅନ୍ୟ କଥାରେ ଚାଲି ଆସିଛନ୍ତି। ଅଥଚ ପୃଥିବୀର ମନୁଷ୍ୟ ସାମାନ୍ୟତମ ସୁଯୋଗ ପାଇଲେ ନିଜର ଯଶ, ସୁଖ୍ୟାତି ଓ କ୍ଷମତା କଥା କହିବାକୁ ପଞ୍ଚମୁଖ ହୋଇ ଉଠନ୍ତି। ଏଇଠି ସବୁ ଓଲଟା। ଆଚରଣଶୀଳ ଆଚାର୍ଯ୍ୟ ସେ। ତେଣୁ ନିଜେ ଆଚରଣ କରି ଆମର ସମ୍ମୁଖରେ ଉପସ୍ଥାପିତ କରୁଅଛନ୍ତି କିପରି ଆମ୍ଭଙ୍କୁ ଚାଲିବାକୁ ହେବ। କୌଣସି ଭାଷା ଖୋଜି ପାଉନି ତାଙ୍କୁ ପ୍ରକାଶ କରିବାର।

## ॥ ଚବିଶ ॥

## ପୁରୁଷୋତ୍ତମ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଜାଗତିକ —ପରିଚୟ—

**ସେ** ଉତ୍ତରବଙ୍ଗ ସ୍ଥିତ (ପରେ ପୂର୍ବ ପାକିସ୍ଥାନ ଓ ବର୍ତ୍ତମାନ ବାଂଲାଦେଶ) ପାବନା ଜିଲ୍ଲାର ହିମାଇତପୁର ଗ୍ରାମରେ ମାତୁଳାୟରେ ବଙ୍ଗଳା ସନ ୧୨୯୫ ଇଂ ୧୮୮୮ ସାଲରେ ତିରିଶ ଭାଦ୍ର ତାଳନବମୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ। ପିତା ଶ୍ରୀଯୁକ୍ତ ଶିବଚନ୍ଦ୍ର ଚକ୍ରବର୍ତ୍ତୀ ଓ ମାତା ଶ୍ରୀ ମନମୋହିନୀ ଦେବୀଙ୍କ ଗର୍ଭେ ପ୍ରଥମ ସନ୍ତାନ। ମାତୃଗର୍ଭେ ୧୨ମାସ ଅତିବାହିତ କଲାପରେ ଶୁଭ ଭାଦ୍ର ମାସ ଘ: ୭/୫ ମିନିଟ୍ (ଅନ୍ୟ ମତରେ ଘ: ୭/୧୫ମିନିଟ୍) ରେ ଜନ୍ମଗ୍ରହଣ କରିଥିଲେ। ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ ପିତା ତାଙ୍କର ଶ୍ୱଶୁର ଘରେ ଅର୍ଥାତ୍ ଜନନୀ ମନମୋହିନୀ ଦେବୀଙ୍କ ବାପଘରେ ହିମାଇତପୁରରେ ବିବାହ ପରଠାରୁ ଆସି ରହିଥିଲେ। ଶ୍ରୀଶ୍ରୀ ଠାକୁରଙ୍କ ଜନ୍ମର ବହୁତପୂର୍ବେ ଏପରିକି ଜନନୀ ମନମୋହିନୀ ଦେବୀଙ୍କର ବିବାହ ପୂର୍ବେ କୁଳ ଦେବତା ମନ୍ଦିରରେ ସ୍ୱପ୍ନରେ ତାଙ୍କର ଗୁରୁ ପରମ ସନ୍ଥ ହଜୁରୁ ମହାରାଜ ତାଙ୍କୁ ସତ୍‌ମନ୍ତ୍ର ଦେଇଥିଲେ ଓ ଦର୍ଶାଇଥିଲେ। ପଛରେ ବିବାହ ପରେ ସନ୍ଥଗୁରୁ ହଜୁରୁ ମହାରାଜ ସଶରୀରରେ ଆସି ମାତା ମନମୋହିନୀଙ୍କୁ ଦୀକ୍ଷା ଦେଇ କହିଲେ— ତୁମରି ଗର୍ଭରେ ଆସିବେ ଦୟାଲ ପୁରୁଷ ଯେ କି ବିଶ୍ୱ ନିୟନ୍ତା ଏବଂ ଏହି ସତ୍‌ମନ୍ତ୍ରର ସ୍ରଷ୍ଟା। ତେଣୁ ସାବଧାନରେ ରହିବି। ଗୁରୁଙ୍କର ସେ ଆଦେଶ ଶିରୋଧାର୍ଯ୍ୟ କରି ମାତା ମନମୋହିନୀ ସାତ୍ତ୍ୱିକ ଆଧ୍ୟାତ୍ମ ଜୀବନଯାପନ କରିବାକୁ ଲାଗିଲେ। ସନ୍ତାନ ଗର୍ଭକୁ ଆସିଲା। ଗୋଟି ଗୋଟି କରି ଦଶମାସ ବିତିଗଲା। ପ୍ରଥମ ଗର୍ଭ, ଅନଭିଜ୍ଞା ଜନନୀ କିଛି ଜାଣି ପାରୁ ନାହିଁ, ବୁଝିପାରୁ ନାହିଁ। ପ୍ରତିବେଶୀ ସମସ୍ତେ ଚିନ୍ତିତ ହୋଇ ପଡ଼ିଲେ। କାହିଁ ମନମୋହିନୀର କୌଣସି ସନ୍ତାନ ହେଉ ନାହିଁ ତ? ଦେଖୁ ଦେଖୁ ୧୧ ମାସ ବିତିଗଲା। ବାର ମାସ ଆସିଗଲା। ସମସ୍ତ ଚିନ୍ତାର ଅବସାନ କରି ତାଳନବମୀ ତିଥିରେ ଶୁଭପ୍ରଭାତେ ଜନ୍ମ ନେଲେ. ଏକ ଶିଶୁ ଯାହାରକି ମୁଣ୍ଡିତ ମସ୍ତକ, ମୁଣ୍ଡରେ ବାଳ ନାହିଁ। ଜନ୍ମନେବା ପରେ ପ୍ରଥମେ ସମସ୍ତ ଶିଶୁ କାନ୍ଦେ, ମାତ୍ର ଏହି ଶିଶୁ କାନ୍ଦିବା ପରିବର୍ତ୍ତେ ହସିବାକୁ ଆରମ୍ଭ କଲେ। ସମସ୍ତେ ଚମକିତ ସେ ଶିଶୁର ହସ ଦେଖି।

କି ଅପୂର୍ବ ସେ ହସ! ଯେପରିକି ସବୁ କିଛି ଜାଣିଛି ଅଥଚ କିଛି ବୁଝି ନାହିଁ। ଯେଉଁମାନେ ପ୍ରସୂତୀ ଘରେ ପ୍ରସୂତୀକୁ ସାହାଯ୍ୟ କରିବା ନିମିତ୍ତ ଉପସ୍ଥିତ ଥିଲେ ସେମାନଙ୍କର କୌଣସି ସାହାଯ୍ୟର ପ୍ରୟୋଜନ ହୋଇନାହିଁ। ଶିଶୁ କେଉଁ ମୁହୂର୍ତ୍ତରେ ଜନ୍ମ ନେଇଛି ସେକଥା ଉପସ୍ଥିତ କେହି ଜାଣିପାରି ନାହାନ୍ତି। ପ୍ରଭାତ ସୂର୍ଯ୍ୟ ହଠାତ୍ ବିଚ୍ଛୁରିତ ହୋଇ ସେହି କୁଟାଚ୍ଛାଦିତ ଘର ଭିତରେ ତାର ତୀବ୍ର କିରଣାଲୋକରେ ଉଦ୍‌ଭାସିତ କରି ଉଠାଇଥିଲା। ଏତେ ତୀବ୍ର ତାହାର ରୂପ ଉପସ୍ଥିତ ସମସ୍ତଙ୍କର ଆଖି ଝଲସି ଉଠିଲା। କିନ୍ତୁ ତାହା ମୁହୂର୍ତ୍ତକ ପାଇଁ। ସେହି ଆଲୋକରଶ୍ମି ତିରୋହିତ ହେବା ସଙ୍ଗେ ସଙ୍ଗେ ଦେଖାଗଲା ମୁଣ୍ଡିତ ମସ୍ତକ ଶିଶୁଟି ଅପୂର୍ବ ହସରେ ହସି ଚାଲିଛନ୍ତି। ମାତା ତାର ପ୍ରସବବେଦନା ଅନୁଭବ କରିନାହାନ୍ତି। ଯେଉଁମାନେ ତାଙ୍କୁ ସାହାଯ୍ୟ କରିବାପାଇଁ ଉପସ୍ଥିତ ଥିଲେ କାହାରିର କୌଣସି ସାହାଯ୍ୟ ପ୍ରୟୋଜନ ହେଲା ନାହିଁ। ଧରଣୀ ବକ୍ଷେ ଆବିର୍ଭୂତ ହେଲେ ସମସ୍ତଙ୍କର ବିପଦତ୍ରାତା, ସର୍ବନିୟନ୍ତା, ସର୍ବପୂରଣକାରୀ, ବ୍ୟଥାହାରୀ ସ୍ୱୟଂ ବିଭୁ। ଯେଉଁ ମୁହୂର୍ତ୍ତରେ ସେ ପୃଥିବୀରେ ଜନ୍ମଗ୍ରହଣ କଲେ ତାହା ଗୋଟିଏ ସନ୍ଧିକ୍ଷଣ, ଧନୁରାଶି କିନ୍ତୁ ମୂଳା ନକ୍ଷତ୍ର ଗତେ ପୂର୍ବାସାରା ଆଗମନେ, ଏହି ସନ୍ଧିକ୍ଷଣରେ ଜନ୍ମନେଲେ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର। କାହା ମତରେ ମୂଳା ନକ୍ଷତ୍ର ଦେବାରୀଗଣ, କାହା ମତରେ ପର୍ବାସାରା ନକ୍ଷତ୍ର ନରଗଣ। ପିତା ଶିବଚନ୍ଦ୍ର ଚକ୍ରବର୍ତ୍ତୀ, ଏହି ଚକ୍ରବର୍ତ୍ତୀ ଉପାଧି ମୁସଲମାନ ବାଦଶାହ ଦ୍ୱାରା ତାଙ୍କ ପୂର୍ବପୁରୁଷଙ୍କୁ ପ୍ରଦତ୍ତ ହୋଇଥିଲା, ଅସଲରେ ତାଙ୍କ ବଂଶ ପରିଚୟ ହେଲା ଲାହିଡ଼ୀ ବଂଶ, ବାରେନ୍ଦ୍ର ଶ୍ରେଣୀ ବିପ୍ର। ପୂର୍ବପୁରୁଷ କନୌଜ ବା କାନ୍ୟକୁବ୍‌ଜରୁ ବଙ୍ଗ ଦେଶରେ ଆସିଥିଲେ। ଶାଣ୍ଡିଲ୍ୟ ଗୋତ୍ରଧାରୀ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ବିପ୍ର ବଂଶରେ ଜନ୍ମନେଲେ ମଧ୍ୟ ଜନ୍ମଠାରୁ ହିଁ ସେ ଥିଲେ ବ୍ରହ୍ମତ୍ୱର ଅଧିକାରୀ। ଏହି ବିପ୍ରବଂଶ ଜାତ ବ୍ରାହ୍ମଣ ଜୀବନରେ କେବେହେଲେ ମିଥ୍ୟା, ଅନ୍ୟାୟର ଆଶ୍ରୟ ନେଇ ନାହାନ୍ତି, କାହାର ହିତଛଡ଼ା ଅହିତ କରି ନାହାନ୍ତି। ପ୍ରତି ପ୍ରତ୍ୟେକଙ୍କୁ ମଙ୍ଗଳ ଆଡ଼କୁ ଟାଣି ନେଇଛନ୍ତି ଜାତି–ଧର୍ମ ବର୍ଣ୍ଣ ନିର୍ବିଶେଷେ, ମନୁଷ୍ୟ ଜାତି ଭିତରେ କୌଣସି ପ୍ରକାର ବିଭେଦର ପ୍ରଶ୍ରୟ ଦେଇନାହାନ୍ତି, ଅବଶ୍ୟ କର୍ମଯୋଗ୍ୟତା ଦ୍ୱାରା ଯେ ଯେତିକି ଯୋଗ୍ୟ ବା ଅଯୋଗ୍ୟ ଅବସ୍ଥାରେ ରହିଛନ୍ତି ସେମାନଙ୍କୁ ଯଥାଯଥ ଚିହ୍ନିତ କରି ବିହିତ ବ୍ୟବସ୍ଥା କରିବାକୁ ମଧ୍ୟ କଦାପି ବିରତ ହୋଇନାହାନ୍ତି। ମନୁଷ୍ୟ ଦେହର ପ୍ରତିଟି ଅଙ୍ଗ ଯେପରି କେହି କାହାଠାରୁ ଭିନ୍ନ ବା ଅଲଗା ନୁହେଁ,

ନିକୃଷ୍ଟ ବା ଉତ୍କୃଷ୍ଟର ବିଚାର ଶରୀରର ବିଭିନ୍ନ ଅଂଶର ବ୍ୟବହାର ଓ ପ୍ରୟୋଜନୀୟତା ଅନୁଯାୟୀ ହୋଇଛି ।

ସେହିପରି ମନୁଷ୍ୟ ସମାଜ ମଧ୍ୟ କେହି କାହାଠାରୁ ବିଭକ୍ତ ବା ଅଲଗା ନୁହେଁ, କିନ୍ତୁ ସମାଜର ଲୋକ ଯାହା ପାଖରୁ ବେଶୀ ଉପକୃତ ତାହାଙ୍କୁ ହିଁ ଉତ୍କୃଷ୍ଟ ବା ଶ୍ରେଷ୍ଠର ଆସନ ଦେଇଛନ୍ତି ଏବଂ ଯାହା ପାଖରୁ ତୁଳନାମୂଳକ କମ୍ ଉପକୃତ ସେମାନଙ୍କୁ ତୁଳନାମୂଳକ ନିକୃଷ୍ଟ କହିଛନ୍ତି । ଏହି ଉତ୍କୃଷ୍ଟ ଏବଂ ନିକୃଷ୍ଟର ସଂମିଶ୍ରଣ ଦ୍ୱାରା ଯାହାକିଛି ସୁ ଓ ଶୁଭଫଳଦାୟକ ତାହାକୁ ହିଁ କହିଛନ୍ତି ଅନୁଲୋମ, ଆଉ ଯେଉଁ ସମ୍ମିଶ୍ରଣକୁ ଏବଂ ଖରାପ ଫଳଦାୟକ ହୋଇଉଠେ ମୂଳକଥା, ଧ୍ୱଂସ ଆଣେ, ତାହାହିଁ ପ୍ରତିଲୋମ । ଏହାକୁ ହିଁ ''ଗୀତା'' ରେ କହିଛନ୍ତି ବର୍ଣ୍ଣାଶ୍ରମ । ଆଜି ଏହି Materialistic world ବା ପଦାର୍ଥବାଦୀ ଜଗତ ପଦାର୍ଥବିଜ୍ଞାନ ଭିତରେ ବିଭିନ୍ନ ସଂମିଶ୍ରଣ ଦ୍ୱାରା କିପରି ଭଲ କିଛି ଉତ୍ପାଦନ କରାଯାଏ ତାର ପରୀକ୍ଷା ନିରୀକ୍ଷା କରି ଚାଲିଛି । ଯାହାର ସଂମିଶ୍ରଣରେ ଖରାପ କିଛି ଉତ୍ପାଦନ ହୁଏ ତାକୁ ପରିତ୍ୟାଗ କରୁଛନ୍ତି । ଏହି ଯେ ସଂମିଶ୍ରଣ ତାକୁ ମନୁଷ୍ୟ ଜୀବନ ଉପରେ ପରୀକ୍ଷାନିରୀକ୍ଷା କରି ଭଗବାନ ଆଖ୍ୟା ଦେଲେ ବର୍ଣ୍ଣଶଙ୍କର । ବର୍ଣ୍ଣଶଙ୍କର ଅନୁଲୋମ ହେଲେ ତାହା ଜାତି ତଥା ସମାଜର ମଙ୍ଗଳ ଟାଣିଆଣେ, ବର୍ଣ୍ଣଶଙ୍କର ପ୍ରତିଲୋମ ହେଲେ ସବୁ କିଛିର ଧ୍ୱଂସ ଟାଣିଆଣେ । ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଶୁଭଯାହା, ମଙ୍ଗଳପ୍ରଦ ଯାହା ତାହାକୁ ପୃଥିବୀ ସମ୍ମୁଖରେ ପ୍ରତିଷ୍ଠା କଲେ, ସହସ୍ର ସହସ୍ର ବାଧାବନ୍ଧନ ତାଙ୍କୁ ପ୍ରତିହତ କରିପାରି ନାହିଁ । ଧର୍ମନାମରେ ସଂସାରରେ କୁସଂସ୍କାରଚ୍ଛନ୍ନ ମନୁଷ୍ୟମାନେ ଯାହା କହୁଥିଲେ ବା କରୁଥିଲେ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ତାର ମୂର୍ତ୍ତ ପ୍ରତିବାଦ । ନିଜର ଜୀବନ ଉପରେ ସବୁ କିଛି ପକାଇ ଦେଖାଇ ଯାଇଛନ୍ତି ସତ୍ୟ କ'ଣ, ଉଦାହରଣ ରଖିଛନ୍ତି ସର୍ବସ୍ତରର ମନୁଷ୍ୟ ଆଗରେ । ତାହାର କିଞ୍ଚିତ ଆଭାସ ମୁଁ ଏହି ପୁସ୍ତକ ମାଧ୍ୟମରେ ଦେବାର ଚେଷ୍ଟା କଲି । ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଜାତକର ଛକ ଏଠାରେ ରଖିଲି । ସୁଧୀବୃନ୍ଦ ବିଚାର କରି ଦେଖିବେ କାହିଁକି ତାଙ୍କର ଇଚ୍ଛାମୃତ୍ୟୁ ଥିଲା, କାହିଁକି ତାଙ୍କୁ କୁହାଯାଉଥିଲା ସର୍ବନିୟନ୍ତା । ଏପରି କିଛି ଦୁଃଖ ନାହିଁ, ଯାହା ତାଙ୍କୁ ସ୍ପର୍ଶ କରି ନାହିଁ ଆଉ ପୃଥିବୀରେ ଏପରି କିଛି ସୁଖ ନାହିଁ ଯାହା ତାଙ୍କ ପାଖରେ ନଥିଲା । କିନ୍ତୁ ସୁଖ ଦୁଃଖରେ ବିଗତ ସେହି ମହାମାନବ ସର୍ବ ଊର୍ଦ୍ଧ୍ୱେ ରହି ପ୍ରତିଟି ମନୁଷ୍ୟକୁ ଆନନ୍ଦର ଅଧିକାରୀ କରି ତୋଳୁଥିଲେ ନିଜର ଜୀବନର ଉଦାହରଣ ସମ୍ମୁଖରେ ରଖି ।




ବଙ୍ଗଳା ୧୨୯୫, ଓଡ଼ିଆ ୧୨୯୬, ୩୦ ଭାଦ୍ର ତାଳ. ନବମୀ ତିଥି ସକାଳ ଘ. ୭/୫ମିନିଟି (ମତାନ୍ତରେ ଘ୭/୧୫ମ:) ମୂଳାନକ୍ଷତ୍ରେ ବା ପୂର୍ବାସାରା ନକ୍ଷତ୍ରେ, ଦେବାରିଗଣେ ଅଥବା ଅନ୍ୟମତରେ ନରଗଣେ ଶୁକ୍ରବାର ଉତ୍ତର ବଙ୍ଗସ୍ଥିତ ପାବନା ଜିଲ୍ଲାର ପଦ୍ମାକୂଳସ୍ଥିତ ହିମାଇପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ।

ଏଠାରେ ମନେ ରଖିବାକୁ ହେବ ଭଗବାନ ଶ୍ରୀକୃଷ୍ଣଙ୍କର ନରଗଣ ଥିଲା । ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର ଯେଉଁ ଗ୍ରାମର ଜନ୍ମଗ୍ରହଣ କଲେ ତାହା ସେତେବେଳେ ଖୁବ୍ ଅତ୍ୟାଚାରୀ ଗ୍ରାମ ହିସାବରେ ବିଖ୍ୟାତ ଥିଲା । ମୁସଲମାନ ଜନସଂଖ୍ୟା ବହୁଳ ସେହି ଗାଁ, ଯେତିକି ହିନ୍ଦୁ ଥିଲେ ସେମାନେ ଅନେକେ ସଂପଦଶାଳୀ ଥିଲେ ମଧ୍ୟ ଅତ୍ୟାଚରୀ ଓ ଭ୍ରଷ୍ଟାଚାରୀରୂପେ ବିଖ୍ୟାତ ଥିଲା । ହିନ୍ଦୁ–ମୁସଲମାନ ବିବାଦ ସବୁବେଳେ ଲାଗି ରହିଥାଏ । କାହାରି ମନରେ ଶାନ୍ତି ନଥାଏ । ଠାକୁରଙ୍କର ଜନ୍ମପରେ ମଧ୍ୟ ଠାକୁର ଏବଂ ତାଙ୍କର ପ୍ରତିଷ୍ଠିତ ଆଶ୍ରମ ବହୁ ଲୋକ ଦ୍ୱାରା ଅତ୍ୟାଚାରିତ ଓ ଲାଞ୍ଛିତ ହୋଇଛି । ଶ୍ରୀଶ୍ରୀ ଠାକୁରଙ୍କ ଆଖିରେ ସବୁ ମନୁଷ୍ୟ ସମାନ, ହିନ୍ଦୁ ମୁସଲମାନଙ୍କୁ ସେ କେବେ ଅଲଗା ବୋଲି ଦେଖିନାହାନ୍ତି, ଯାହାଦ୍ୱାରା କି ବହୁ ଲୋକ ଆକର୍ଷିତ ହେବା ସତ୍ତ୍ୱେ ହିନ୍ଦୁ, ବିଶେଷ କରି ବିପ୍ରମାନେ ଦଳବାନ୍ଧି ଶ୍ରୀଶ୍ରୀ ଠାକୁରଙ୍କ ଉପରେ ଅତ୍ୟାଚାର କରିବାରୁ ଲାଗିଲେ । ଏପରିକି ଆଶ୍ରମରେ ଯାଉଥିବା ଲୋକମାନଙ୍କୁ ବାଧାଦେବାକୁ ଆରମ୍ଭ କଲେ । ସ୍ତ୍ରୀଲୋକମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ ।

ଶ୍ରୀଶ୍ରୀ ଠାକୁରଙ୍କୁ ଚରିତ୍ରହୀନ ଓ ଭ୍ରଷ୍ଟାଚାରୀ ବୋଲି ଆଖ୍ୟାୟିତ କରିବାକୁ ଲାଗିଲେ। ସବୁ କିଛି ବାଧା ସତ୍ତ୍ୱେ ଶ୍ରୀଶ୍ରୀ ଠାକୁର ଶତ୍ରୁ–ମିତ୍ର ସମସ୍ତଙ୍କୁ ସମଆଖିରେ ଦେଖି ଦୃଢ଼ ପଦକ୍ଷେପରେ ଆଗେଇ ଚାଲିଲେ। ଧୀରେ ଧୀରେ ସର୍ବଜାତି ସର୍ବସ୍ତରର ମନୁଷ୍ୟଙ୍କର ସେ ପ୍ରାଣକେନ୍ଦ୍ର ହୋଇ ଉଠିବାକୁ ଲାଗିଲେ। ସ୍ୱାଭାବିକ ଭାବରେ ଗ୍ରାମର ହିନ୍ଦୁ ମୁସଲମାନ ବିଭେଦ ଦୂର ହେବାକୁ ଲାଗିଲା କତିପୟ ଅର୍ଥବାନ୍ ପ୍ରତାପଶାଳୀ ବ୍ୟକ୍ତି କ୍ରମାଗତ ଠାକୁରଙ୍କର ବିରୁଦ୍ଧାଚରଣ କରି ଚାଲିଲେ। ମୌଲାନା ଆକ୍ରାମ ଖାଁ ଇତ୍ୟାଦି ବହୁ ଧାର୍ମିକ, ଜ୍ଞାନବାନ, ବୁଦ୍ଧିମାନ, ଦରିଦ୍ରଚାଷୀ, ମୂଲିଆ ହିନ୍ଦୁ–ମୁସଲମାନ ନିର୍ବିଶେଷରେ ଆସି ଶ୍ରୀଶ୍ରୀ ଠାକୁରଙ୍କ ଚରଣରେ ନିଜକୁ ସମର୍ପଣ କଲେ। ଶ୍ରୀଶ୍ରୀ ଠାକୁର ସମସ୍ତଙ୍କୁ ସତ୍‌ମନ୍ତ୍ରରେ ଦୀକ୍ଷିତ କଲେ। କାହାକୁ ଧର୍ମାନ୍ତର କରାଇଲେ ନାହିଁ। ଶ୍ରୀଶ୍ରୀ ଠାକୁର କହିଲେ–ଜଣେ ଖାଣ୍ଟି ଖ୍ରୀଷ୍ଟିୟାନ୍, ଖାଣ୍ଟିହିନ୍ଦୁ, ଖାଣ୍ଟି ମୁସଲମାନ ଏମାନଙ୍କ ଭିତରେ କୌଣସି ଭେଦ ଥାଇପାରେନା। ଏସବୁ ବିଭିନ୍ନ ମତ, କିନ୍ତୁ ଧର୍ମ ଏକ, ମୂଳକୁ ଜାଣିବାହିଁ ଧର୍ମ, ମୂଳରେ ସେହି ଏକହିଁ ଈଶ୍ୱର, ଏକ ହିଁ ଭଗବାନ। ବହୁ ଭାଷାରେ ଭାଷିତ ହୋଇ ବିଭୂଷିତ ହେଲେ ମଧ୍ୟ ତାହାର ମୂଳନାମ ବା ଆଦିନାମ ଏକହିଁ। ତେଣୁ ସେହି ମୂଳରେ ପହଞ୍ଚିଲେ ଦେଖାଯିବ ସେଠାରେ କୌଣସି ବିଭେଦ ନାହିଁ, ତେଣୁ ମନୁଷ୍ୟ ଯେ ଯେଉଁ କୃଷ୍ଟିରେ ଜନ୍ମ ଲାଭ କରି ଜୀବନଧାରଣ କରୁନା କାହିଁକି ସତ୍‌ନାମ ପାଇବାର ଅଧିକାରୀ ସମସ୍ତେ। ଏହା ଧର୍ମାନ୍ତର–ଗ୍ରହଣ ନୁହେଁ। ଶ୍ରୀଶ୍ରୀ ଠାକୁରଙ୍କର କହିଥିବା ଏହି ସତ୍ୟ ତାଙ୍କର ନିଜର ଜୀବନ ଉପରେ ପ୍ରତିଷ୍ଠିତ ଦେଖି ସେଠାକାର ମୌଲାନା ମୌଲଭି ସହିତ ବହୁତ ସଂଖ୍ୟାରେ ମୁସଲମାନ ଆସି ସତ୍‌ମନ୍ତ୍ରେ ଦୀକ୍ଷିତ ହୋଇ ଯେ ଯାହା ନିଜର କୃଷ୍ଟିରେ ଜାତି ବୈଶିଷ୍ଟ୍ୟରେ ଆହୁରି ଉଚ୍ଚତର ଜୀବନଯାପନ କରିବାକୁ ଲାଗିଲେ। ସେହିପରି ହିନ୍ଦୁମାନେ ଧର୍ମ ନାମରେ ଯେଉଁ ଗୋଡ଼ାମି, ଆଚାର ନାମରେ ଯେଉଁ ଆଚାରଭ୍ରଷ୍ଟତା, ଦେବତା ନାମରେ ଯେଉଁ ସମାଜ ଉପରେ ଅତ୍ୟାଚାର କରୁଥିଲେ, ମନୁଷ୍ୟଙ୍କୁ ଛୋଟ ବଡ଼ କରି ଦୂରେଇ ରଖୁଥିଲେ, ସେମାନେ ମଧ୍ୟ ଧୀରେ ଧୀରେ ଠାକୁରଙ୍କର ସତ୍ୟ ଜିନିଷକୁ ଉପଲବ୍ଧି କରି ଆଗେଇ ଆସିବାକୁ ଆରମ୍ଭ କଲେ।

ଏହିପରି ବହୁତ ଖ୍ରୀଷ୍ଟିୟାନ ମଧ୍ୟ ଆସି ସତ୍‌ମନ୍ତ୍ରରେ ଦୀକ୍ଷିତ ହୋଇ ଠାକୁରଙ୍କର ଆଶ୍ରୟ ଗ୍ରହଣ କଲେ। ସତ୍ୟ ଦିନେ ତପନ–ଦ୍ୟୁତି ସମ ଉଦ୍‌ଭାସିତ ହୋଇ ଉଠିଲା ସମାଜ, ଜାତି ତଥା ପୃଥିବୀ ଆଗରେ। ଯେଉଁ କ୍ଷୁଦ୍ର ଗ୍ରାମଟି

ତାଙ୍କ ପିଲାଦିନରୁ ପ୍ରତି ପଦକ୍ଷେପରେ ପ୍ରତିବନ୍ଧକ ଦେଇଆସୁଥିଲା, ସତ୍ୟ ରୂପୀ ପ୍ଲାବନ ମୁଖରେ ପଡ଼ି ସେ କୁଆଡ଼େ ଭାସିଗଲା। କୋଟି କୋଟି ଟଙ୍କାର ସମ୍ପତ୍ତି ବାଡ଼ି ଘରଦ୍ୱାର, ସ୍କୁଲ, କଲେଜ, ବ୍ୟାଙ୍କ, ସହସ୍ର ସହସ୍ର ଏକର ଚାଷ ଜମି, ମାନ ସମ୍ମାନ, ପ୍ରତିଟି ମନୁଷ୍ୟ ଯେତେବେଳେ ଚାହୁଁଥିଲେ ତାହାଙ୍କୁ ସେଠାରେ ରଖିବାପାଇଁ, ସେତେବେଳେ ତୃଣବତ୍ ସବୁ କିଛି ପରିତ୍ୟାଗ କରିଦେଇ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ର କହିବାକୁ ଗଲେ ଏକ ବସ୍ତ୍ରରେ ଭାରତ ଖଣ୍ଡିତ ହୋଇ ପାକିସ୍ଥାନ ହେବାର ବର୍ଷକ ପୂର୍ବେ ହିମାଇତପୁର ଛାଡ଼ି ବିହାରର ବୈଦ୍ୟନାଥଧାମରେ ଆସି ଉପସ୍ଥିତ ହେଲେ। ଶ୍ରୀଶ୍ରୀ ଠାକୁରଙ୍କ ଅନୁପସ୍ଥିତି ବ୍ୟଥା ସହି ନପାରି ପ୍ରାୟ ହଜାର ଠାରୁ ଦେଢ଼ହଜାର ଲୋକ ତାଙ୍କ ସାଙ୍ଗରେ ଆସି ଉପସ୍ଥିତ ହେଲେ ଦେଓଘରରେ। ସମସ୍ତଙ୍କୁ ନ ଖୁଆଇ ଠାକୁର ଖାଆନ୍ତି ନାହିଁ, ତେଣୁ ରାଜଭିକାରୀ ବିଶ୍ୱନିୟନ୍ତା ମାଲିକ ପୁନରାୟ ଭିକାରୀ ହୋଇ ଭିକ୍ଷା କରି ସମସ୍ତ ଆଶ୍ରିତଙ୍କୁ ଖୁଆଇବାକୁ ଲାଗିଲେ ଆନନ୍ଦବଜାର ମାଧ୍ୟମରେ। ଇତି ମଧ୍ୟେ ଭାରତବର୍ଷ ଦ୍ୱିଖଣ୍ଡିତ ହେବାର ପ୍ରଶ୍ନ ଉଠିଲା।

ଅନେକ ଲୋକ ଓ ଭକ୍ତମାନେ ଠାକୁରଙ୍କ ପାଖରେ ପ୍ରସ୍ତାବ ଦେଲେ, ହିମାଇତପୁର ପାବନାର ସମସ୍ତ ସମ୍ପତ୍ତି ବିକ୍ରୀ କରି ଟଙ୍କା ଏଠାରେ ନେଇ ଆସିଲେ ଆମ୍ଭର ଅନେକ ଆର୍ଥିକ ସୁବିଧା ହୁଅନ୍ତା। କିନ୍ତୁ ଶ୍ରୀଶ୍ରୀ ଠାକୁର କହିଲେ– 'ଆମ୍ଭର' କହିବାକୁ ଯାଇ ତୁମ୍ଭେମାନେ କ'ଣ ବୁଝୁଛ ମୁଁ ବୁଝିପାରୁ ନାହିଁ। ମୁଁ ବୁଝୁଛି "ମୁଁ" ଅର୍ଥ ବିଶ୍ୱଦୁନିଆରେ ଯେଉଁଠାରେ ଯାହା କିଛି ଅଛି ସବୁ 'ମୁଁ'ର ସମଷ୍ଟି। ପାବନାରେ ଯାହା ଗଢ଼ି ଉଠିଛି ତାହା ସେତେବେଳକାର ପ୍ରୟୋଜନରେ ଗଢ଼ି ଉଠିଥିଲା। ସେଠାରେ ଏବେ ପର୍ଯ୍ୟନ୍ତ ମନୁଷ୍ୟ ଅଛନ୍ତି, ଯାହାକିଛି ଗଢ଼ି ଉଠିଥିଲା ତାର ପ୍ରୟୋଜନ ଶେଷ ହୋଇନାହିଁ। ଆଉ ପ୍ରୟୋଜନ ଯେତେବେଳେ ସରିନାହିଁ, ତାହା ବିକ୍ରୀ କରିଦେବାର ପ୍ରଶ୍ନ ଉଠୁଛି କାହିଁ? ଆଉ ହସ୍ତ ତ ଜଣଙ୍କର। ତାକୁ ହସ୍ତାନ୍ତରିତ କରିବି କେଉଁଠି? କୋଟି କୋଟି ଟଙ୍କାର ସମ୍ପଦ ପଡ଼ିରହିଲା ପାବନା ଜିଲ୍ଲାରେ, ନୂଆ ନୂଆ ଲୋକ ଆସି ତାକୁ ଭୋଗ କରିବାରେ ଲାଗିଲେ। ଠାକୁରଙ୍କ ଅନ୍ତରରେ ତିଳେମାତ୍ର ଦୁଃଖନାହିଁ ତାହା ପାଇଁ। ଦେହତ୍ୟାଗର ଶେଷ ନିଃଶ୍ୱାସ ପଡ଼ିବାଦିନ ପର୍ଯ୍ୟନ୍ତ ତାଙ୍କୁ ଦେଖିଛି ଭିକ୍ଷା କରି ଚାଲିଛନ୍ତି ପ୍ରତିଟି ମନୁଷ୍ୟର ମଙ୍ଗଳ ପାଇଁ, ସେମାନଙ୍କୁ ଦୁଇଟା ଖାଇବାକୁ ପିଇବାକୁ ଦେଇ ଆଧ୍ୟାତ୍ମ ପଥକୁ ନେଇଯିବା ପାଇଁ, କେବେହେଲେ କହିନାହାନ୍ତି– ମୋର ଏତେ ସଂପଦ ଥିଲା, ତାହା ଥିଲେ

ଆଜି ଭ୍ରାମରେ ଲାଗନ୍ତା, ବରଂ ତାହାର ବିପରୀତ ଭାବଟି ଦେଖିଛି— କିଛି ତ ଯାଇନାହିଁ, ସବୁ ଅଛି। ସୁଧୁ ଅଛି ନୁହେଁ, ଅଛି ତାହା ଯଥାଯଥ ସ୍ଥାନରେ ପ୍ରତିଟି ସନ୍ତାନର ବ୍ୟବହାର ପାଇଁ।

ମହାପ୍ରଭୁ ସ୍ୱୟଂ ନହେଲେ ଏହି ଭାବରେ ଶତ୍ରୁ ମିତ୍ର, ନିର୍ବିଶେଷରେ ନିଜର ବୋଲି ଆଉ କିଏ ଭାବିପାରେ? ଏହି ଯେଉଁ ପ୍ରତିଟି ମନୁଷ୍ୟକୁ ସତ୍ ବା ଅସ୍ତିତ୍ୱ ଆଡ଼କୁ ଆଗେଇ ନେଇ ଚାଲିବାର ବ୍ୟକ୍ତି, ତାଙ୍କର ସଙ୍ଗ କଲେ ପ୍ରତିଟି ମନୁଷ୍ୟର ଗତି ନିଶ୍ଚିତ ଭାବରେ ତାଙ୍କ ପରି ଉର୍ଦ୍ଧ୍ୱ ଆଡ଼କୁ ଆଗେଇ ଚାଲିବ ଆଉ, ଏହି ଉର୍ଦ୍ଧ୍ୱ ଆଡ଼କୁ ଆଗେଇ ଚାଲିବାର ଗତି ତାହାକୁ ହିଁ କହନ୍ତି ସତ୍ସଙ୍ଗ। ପ୍ରତି ପ୍ରତ୍ୟେକ ମନୁଷ୍ୟ ଏହାର ସଦସ୍ୟ, ଅର୍ଥାତ୍ ସମସ୍ତେ ହିଁ ଚାହାଁନ୍ତି "ଜୀବନବୃଦ୍ଧି"। ଆଉ ପରମପୁରୁଷ ଶ୍ରୀଶ୍ରୀ ଠାକୁର ଥିଲେ ଏହି ଜୀବନବୃଦ୍ଧିର ମୂର୍ତ୍ତ ଆଦର୍ଶ ବା ପ୍ରତୀକ। ତାହାରି ପାଇଁ ଶ୍ରୀଶ୍ରୀ ଠାକୁର କହିଛନ୍ତି:-

ସତ୍ତା ସଚ୍ଚିଦାନନ୍ଦମୟ
ସଚ୍ଚିଦାନନ୍ଦର ପରିପୋଷକ ଯାହା—ତାହାହିଁ ଧର୍ମ
ଧର୍ମ ମୂର୍ତ୍ତ ହୁଏ ଆଦର୍ଶେ
ଆଦର୍ଶେ ଦୀକ୍ଷା ଆଣେ ଅନୁରାଗ
ଅନୁରାଗ ଆଣେ ବୃତ୍ତି ନିୟନ୍ତ୍ରଣ,
ବୃତ୍ତି ନିୟନ୍ତ୍ରଣ ଆଣେ ଧୃତି।
ଧୃତି ଆଣେ ସହାନୁଭୂତି
ସହାନୁଭୂତି ଆଣେ ସଂହତି
ସଂହତି ଆଣେ ଶକ୍ତି
ଶକ୍ତି ଆଣେ ସମ୍ବର୍ଦ୍ଧନା,
ଆଉ ଏହି ଧୃତି ଆଣେ ପ୍ରଣିଧାନ
ପ୍ରଣିଧାନଠାରୁ ହିଁ ଆସେ ସମାଧି,
ପୁଣି ସମାଧି ଠାରୁହିଁ ଆସେ କୈବଲ୍ୟ—
ଦ୍ରଷ୍ଟାର ଏକାନ୍ତ ନିର୍ବାଣ—
ମହାଚେତନ ସମୁତ୍ଥାନ !

# ପୁରୁଷୋତ୍ତମ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଶ୍ରୀହସ୍ତଲିଖିତ ବାଣୀ–

ଅର୍ଥ, ମାନ, ଯଶ ଇତ୍ୟାଦି ପାଇବା ଆଶାରେ ମୋତେ ଠାକୁର ସଜାଇ ଭକ୍ତ ହୁଅ ନାହିଁ। ସାବଧାନ ହୁଅ– ଠକିଯିବ, ତୁମ ଭିତରେ ଠାକୁରତ୍ୱ ଜାଗ୍ରତ ନହେଲେ କେହି ତୁମର କେନ୍ଦ୍ର ନୁହଁନ୍ତି, ଠାକୁର ବି ନୁହଁନ୍ତି– ଫାଙ୍କି ଦେଲେ ତାହାହିଁ ପାଇବ।

ସର୍ବପ୍ରଥମ ଆତ୍ମମାନଙ୍କୁ ଦୁର୍ବଳତା ବିରୁଦ୍ଧରେ ଯୁଦ୍ଧ କରିବାକୁ ହେବ। ସାହସୀ ହେବାକୁ ହେବ, ବୀର ହେବାକୁ ହେବ। ପାପର ଜ୍ୱଳନ୍ତ ପ୍ରତିମୂର୍ତ୍ତି ଏହି ଦୁର୍ବଳତା। ତତ୍, ଯେତେଶୀଘ୍ର ପାର, ଏହି ରକ୍ତଶୋଷଣକାରୀ ଅବସାଦ ଉତ୍ପାଦକ Vampire କୁ। ସ୍ମରଣ କର ତୁମେ ସାହସୀ ସ୍ମରଣକର ତୁମେ ଶକ୍ତିର ତନୟ, ସ୍ମରଣ କର ତୁମେ ପରମପିତାର ସନ୍ତାନ। ଆଗେ ସାହସୀ ହୁଅ, ଅକପଟ ହୁଅ, ତେବେ ଜଣାଯିବ, ତୁମର ଧର୍ମରାଜ୍ୟରେ ପଶିବାର ଅଧିକାର ଜନ୍ମିଛି।

ସ୍ୱାର୍ଥବୁଦ୍ଧିର ଆତ୍ମତୁଷ୍ଟି ଅଭିପ୍ରାୟହିଁ ଲୋଭ, ଆଉ ଏହି ଲୋଭ ହିଁ ଆସକ୍ତି। ଯେ ନିର୍ଲୋଭ ସେହିଁ ଅନାସକ୍ତ।

ତୁମେ ଯଦି ଏପରି ଶକ୍ତି ଲାଭ କରିଥାଅ ଯାହାଦ୍ୱାରା ଚନ୍ଦ୍ରସୂର୍ଯ୍ୟ କକ୍ଷଚ୍ୟୁତ କରିପାର, ପୃଥିବୀ ଭାଙ୍ଗି ଟୁକୁରା ଟୁକୁରା କରିପାର କିନ୍ତୁ ହୃଦୟରେ ଯଦି ପ୍ରେମ ନ ଥାଏ ତେବେ ତୁମର କିଛି ବି ହୋଇନାହିଁ।

କୌଣସି ପ୍ରକାର ସଂସ୍କାରରେ ଆବଦ୍ଧ ରୁହନାହିଁ, ଏକମାତ୍ର ପରମପୁରୁଷଙ୍କର ସଂସ୍କାର ବ୍ୟତୀତ ଆଉ ଯାହା କିଛି ସବୁହିଁ ବନ୍ଧନ।

ଯାହାକୁ ଭିତ୍ତିକରି ସବୁ କିଛି ତିଷ୍ଠି ରହିଛି ତାହାହିଁ ଧର୍ମ, ଆଉ ସେହିଁ ପରମପୁରୁଷ।

ଜଗତରେ ମଣିଷ ଯେତେ ଯାହା ଦୁଃଖପାଏ, ତାହାର ଅଧିକାଂଶ ଭାଗ କାମିନୀ କାଞ୍ଚନ ପ୍ରତି ଆସକ୍ତିରୁ ଆସେ, ସେ ଦୁଇଟା ପାଖରୁ ଯେତେ ଦୂରେଇ ରହିବ ସେତେ ମଙ୍ଗଳ।

ସରଳ ସାଧୁତାପରି ଚତୁରତା ଆଉ ନାହିଁ। ଯେ ଯେପରି ହେଉନା କାହିଁକି, ଏ ଫାନ୍ଦରେ ଧରା ପଡ଼ିବହିଁ ପଡ଼ିବ।

ଯଦି ରକ୍ଷା ପାଇବାକୁ ଚାହଁ, ଭୟ ଓ ଦୁର୍ବଳତା ବୋଲି କିଛି ରଖ ନାହିଁ, ସତ୍ ଚିନ୍ତା ଓ ସତ୍ କର୍ମରେ ବୁଡ଼ି ରହିଥାଅ।

ଅପରର ମଙ୍ଗଳ କାମନାହିଁ ନିଜ ମଙ୍ଗଳର ପ୍ରସୂତି।

ସାଧୁମାନେ ଯାଦୁକର ନୁହେଁ, ବରଂ ତ୍ୟାଗୀ, ପ୍ରେମୀ।

ଗୁରୁହିଁ ଭଗବାନଙ୍କର ସାକାର ମୂର୍ତ୍ତି, ଆଉ ସେହି Absolute, ସବୁସମୟରେ ତାଙ୍କୁ ଅନୁସରଣ କରିବାକୁ ଚେଷ୍ଟାକର, ସେ ଯାହା କହନ୍ତି ଯତ୍ନର ସହିତ ତାହା ରକ୍ଷା କରି ଅଭ୍ୟାସରେ ଚରିତ୍ରଗତ କରିବାକୁ ନିୟତ ଚେଷ୍ଟାକର, ଆଉ ତାହାହିଁ ସାଧନା।

ଭୁଲରେ ବି ନିଜକୁ ପ୍ରଚାର କରିବାକୁ ଯାଅ ନାହିଁ ବା ନିଜକୁ ପ୍ରଚାର କରିବାକୁ କାହାରିକୁ ଅନୁରୋଧ କରନାହିଁ– ତାହାହେଲେ ସମସ୍ତେ ତୁମକୁ ଘୃଣା କରିବେ, ଆଉ ତୁମଠାରୁ ଦୂରେଇ ଯିବେ।

ଯଦି ତୁମର ଆଦର୍ଶର କଥା କହିଲେ ଆନନ୍ଦ, ଶୁଣିଲେ ଆନନ୍ଦ, ତାଙ୍କର ଚିନ୍ତାରେ ଆନନ୍ଦ, ତାଙ୍କର ହୁକୁମ ପାଇଲେ ଆନନ୍ଦ, ତାଙ୍କ ଆଦରରେ ଆନନ୍ଦ, ଅନାଦରରେ ମଧ୍ୟ ଆନନ୍ଦ ହୁଏ, ତାଙ୍କ ନାମରେ ହୃଦୟ ଉଛୁଳି ଉଠେ– ମୁଁ ନିଶ୍ଚୟ କରି କହୁଛି, ତୁମର ଉନ୍ନୟନ ପାଇଁ ଆଉ ଚିନ୍ତା କରନାହିଁ।

ପ୍ରକୃତି ସେହିମାନଙ୍କୁ ହିଁ ଧିକ୍କାର କରେ, ଯେଉଁମାନେ ପ୍ରତ୍ୟକ୍ଷକୁ ଅବଜ୍ଞା ବା ଅଗ୍ରାହ୍ୟ କରି ପରୋକ୍ଷକୁ ଆଲିଙ୍ଗନ କରନ୍ତି।

ପରମପିତାହିଁ ତୁମର ଅହଂକାରର ବିଷୟ ହୁଅନ୍ତୁ, ଆଉ ତୁମେ ତାଙ୍କୁହିଁ ନେଇ ଆନନ୍ଦ ଉପଭୋଗ କର।

କଥାରେ ଅଛି, ''ବୀରଭୋଗ୍ୟା ବସୁନ୍ଧରା''। ତା' ଠିକ୍, ବିଶ୍ୱାସ, ନିର୍ଭରତା ଆଉ ଆତ୍ମତ୍ୟାଗ ଏହି ତିନୋଟି ହିଁ ବୀରତ୍ୱର ଲକ୍ଷଣ।

ଯାହା ବୃଦ୍ଧିପ୍ରାପ୍ତ ହୋଇ ଯାହା କିଛି ହୋଇ ମଧ୍ୟ ତାହାହିଁ ରହିଛି– ତାହାହିଁ ବ୍ରହ୍ମ।

ଜଗତର ସମସ୍ତ ଐଶ୍ୱର୍ଯ୍ୟ— ଜାଣିବା, ଭଲ ପାଇବା ଓ କର୍ମ—ଯାହାଙ୍କ ଭିତରେ ସହଜ ଉତ୍ସାରିତ, ଆଉ ଯାହାଙ୍କ ପ୍ରତି ଆସକ୍ତିରେ ମଣିଷର ବିଚ୍ଛିନ୍ନ ଜୀବନ ଓ ଜଗତର ସମସ୍ତ ବିରୋଧର ଚରମ ସମାଧାନ ଲାଭ ହୁଏ— ସେ ହିଁ ମଣିଷର ଭଗବାନ।

ଯାହାଙ୍କର କୌଣସି ମୂର୍ତ୍ତ ଆଦର୍ଶରେ କର୍ମମୟ ଅଟୁଟ ଆସକ୍ତି—ସମୟ ବା ସୀମାକୁ ଅତିକ୍ରମ କରି ତାହାଙ୍କୁ ସହଜ ଭାବରେ ଭଗବାନ କରି ତୋଳିଛି,— ଯାହାଙ୍କ କାବ୍ୟ, ଦର୍ଶନତ ଓ ବିଜ୍ଞାନ ମନର ଭଲମନ୍ଦ ବିଚ୍ଛିନ୍ନ ସଂସ୍କାର ଗୁଡ଼ିକୁ ଭେଦକରି ସେହି ଆଦର୍ଶରେହିଁ ସାର୍ଥକ ହୋଇ ଉଠିଛି— ସେ ହିଁ ସଦ୍‌ଗୁରୁ।

ଯାହାଙ୍କ ମନ ସତ୍‌ବା ଏକାସକ୍ତିରେ ପୂର୍ଣ୍ଣ ସେ ହିଁ ସତ୍ ବା ସତୀ। ଆଦର୍ଶରେ ମନ ସମ୍ୟକ୍ ପ୍ରକାରେ ନ୍ୟସ୍ତକରିବାର ନାମ ସନ୍ୟାସ। କୌଣସି ବିଷୟରେ ମନ ସମ୍ୟକ୍— ଭାବରେ ଲାଗିରହିବାର ନାମ ସମାଧି। ନାମ ମଣିଷକୁ ତୀକ୍ଷ୍ଣ କରେ ଆଉ ଧ୍ୟାନ ମଣିଷକୁ ସ୍ଥିର ଓ ଗ୍ରହଣକ୍ଷମ କରେ।

ବିରକ୍ତ ହେବା ମାନେ ହିଁ ବିକ୍ଷିପ୍ତ ହେବା।
ତୀକ୍ଷ୍ଣ ହୁଅ, କିନ୍ତୁ ସ୍ଥିର ହୁଅ— ସମସ୍ତ ଅନୁଭବ କରିପାରିବ।
କୌଣସି କିଛିରେ ଯୁକ୍ତ ହେବା ବା ଏକମୁଖୀ ଆସକ୍ତିର ନାମ ହିଁ ଯୋଗ।
ମନର ସକଳ ପ୍ରକାର ଗ୍ରନ୍ଥିର ସମାଧାନ ବା ମୋଚନ ହୋଇ
ଏକରେ ସାର୍ଥକ ହେବାହିଁ—ମୁକ୍ତି।
ଯେଉଁଠାକୁ ଗମନ କଲେ ମନର ଗ୍ରନ୍ଥିର ମୋଚନ ହୁଏ ତାହାହିଁ ତୀର୍ଥ।
ଯାହା କରିଲେ ଅସ୍ତିତ୍ୱକୁ ରକ୍ଷାକରି ହୁଏ— ହାହାହିଁ ପୁଣ୍ୟ।
ଯାହ କରିଲେ ରକ୍ଷା ପାଇବାରୁ ପତିତ ହୁଏ— ତାହାହିଁ ପାପ।
ଯାହାର ଅସ୍ତିତ୍ୱ ଅଛି ଏବଂ ତାହାର ବିକାଶ ଅଛି— ତାହାହିଁ ସତ୍ୟ (Real)।
ଯାହା ଧାରଣା କଲେ ମନର ନିଜତ୍ୱ ଅକ୍ଷୁର୍ଣ୍ଣ ରହେ— ତାହାହିଁ ସସୀମ।
ଯାହା ଧାରଣା କରିବାକୁ ଯାଇ ମନ ନିଜକୁ ହରାଇ ବସେ ତାହାହିଁ ଅନନ୍ତ ବା ଅସୀମ।

ଶାନ୍ତି! ଶାନ୍ତି! ଶାନ୍ତି!

(ସତ୍ୟାନୁସରଣରୁ ଗୃହୀତ)

# ଲେଖକଙ୍କର ସଂକ୍ଷିପ୍ତ ପରିଚୟ–

ଶ୍ରୀଯୁକ୍ତ ସୁଶୀଲ ରଞ୍ଜନ ଦାସ ପୂର୍ବ ଜୀବନରେ ସରକାରଙ୍କ ତରଫରୁ ଓଡ଼ିଶାର କଟକରେ ରହି ଇଲେକ୍ଟ୍ରିକ୍ କଣ୍ଟ୍ରାକ୍ଟରୀ କର୍ମ କରୁଥିଲେ। ସେ ଓଡ଼ିଶାର କତିପୟ ପ୍ରଥମ ଶ୍ରେଣୀ ଇଲେକ୍ଟ୍ରିକ୍ କଣ୍ଟ୍ରାକ୍ଟରମାନଙ୍କ ମଧ୍ୟରୁ ଜଣେ ଥିଲେ। ପରବର୍ତ୍ତୀ ସମୟରେ କଟକ, ପୁରୀ, ବାଲେଶ୍ୱରରେ ତାଙ୍କର ବ୍ୟବସାୟର ପରିସର ବିସ୍ତୃତ ହୋଇଥିଲା। ଏତଦ୍‌ଭିନ୍ନ ସେ ସରକାରୀ ବିଲଡ଼ିଂ ଓ ରୋଡ୍ କଣ୍ଟ୍ରାକ୍ଟର୍ ମଧ୍ୟ ଥିଲେ। ଏପରି ଅବସ୍ଥାରେ ଲେଖକ ବିଭିନ୍ନ ସାଧୁ ସନ୍ୟାସୀ ସଂଘ ସାଙ୍ଗରେ ବୁଲି ସତ୍ୟର ଅନୁସନ୍ଧାନ କରୁଥାନ୍ତି। ଶେଷରେ ୩୨ ବର୍ଷ ବୟସରେ ଏକ ଶୁଭ ଆଷାଢ଼ ମାସର ଦ୍ୱିତୀୟ ଦିବସରେ ଭଗବାନ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କୁ ଗୁରୁ ରୂପେ ଜୀବନରେ ଲାଭ କରି ତାଙ୍କର ସ୍ତ୍ରୀ, କନ୍ୟା, ମା, ପରିବାର ବର୍ଗ ଏକ କଥାରେ ଘର ଓ ବ୍ୟବସାୟ ବାଣିଜ୍ୟ ଇତ୍ୟାଦି ଇଷ୍ଟ ନିର୍ଦ୍ଦେଶରେ ଛାଡ଼ି ଶ୍ରୀଗୁରୁ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ ଇଚ୍ଛାନୁସାରେ ତାଙ୍କରି ପାଖେ ସାଧନ ଭଜନ ପାଇଁ ରହିଗଲେ। ଇତି ମଧ୍ୟରେ ତାଙ୍କର ଘରଦ୍ୱାର, ବ୍ୟବସାୟ ବାଣିଜ୍ୟ ଇତ୍ୟାଦି ନିଲାମ ହୋଇଗଲା। ପ୍ରଥମେ ପ୍ରଥମେ ଦୁଇ ତିନି ବର୍ଷ ଶ୍ରୀଶ୍ରୀ ଠାକୁର ମଝିରେ ମଝିରେ ତାଙ୍କୁ ଦୁଇ ଚାରିଦିନ ପାଇଁ ଘରକୁ ଆସିବାକୁ ଦେଉଥିଲେ। ଏହାପରେ ଶ୍ରୀଶ୍ରୀ ଠାକୁର ସର୍ବକ୍ଷଣ ପାଇଁ ଲେଖକଙ୍କୁ ନିଜ ପାଖରେ ରଖିଲେ। କେତେ କେତେବେଳେ ସାଧନ ଭଜନ ପାଇଁ ଦରକାର ହେଲେ ବିଭିନ୍ନ ସ୍ଥାନରେ ପଠାଉଥିଲେ ଅଳ୍ପ ଦିନ ପାଇଁ। ଏହିପରି ପାଖେ ପାଖେ ରଖି ଦୀର୍ଘ ୧୮ ବର୍ଷ ସାଧନ ଭଜନ କରାଇଥିଲେ ଓ ଚରିତ୍ର ଗଠନ, ଆତ୍ମବିଶ୍ୱାସ ଏବଂ ଇଷ୍ଟନିଷ୍ଠାରେ ବଳୀୟାନ କରି ଉଠାଇଥିଲେ। ପରବର୍ତ୍ତୀ ଜୀବନରେ ଯେତେବେଳେ ଲେଖକଙ୍କୁ ଶ୍ରୀଶ୍ରୀ ଠାକୁର ପୂର୍ବ ଭାରତର ବିଭିନ୍ନ ସ୍ଥାନରେ ତାଙ୍କର ସାଧନାଲବ୍ଧ ଜୀବନ ନେଇ ଲୋକ ସମ୍ମୁଖେ ପଠାଇଲେ ସେତେବେଳେ ଲେଖକଙ୍କୁ ପ୍ରତିଜ୍ଞା କରାଇ ଦେଇଥିଲେ– ଇଷ୍ଟ ଛଡ଼ା କାହାରିକୁ ମୁଣ୍ଡରେ ରଖିବ ନାହିଁ। ଇଷ୍ଟ ହିଁ ଏକ ଏବଂ ଅଦ୍ୱିତୀୟ। ନିର୍ଭୁଲ ଆଚରଣଶୀଳ ଆଚାର୍ଯ୍ୟ ରୂପେ ପୁରୁଷୋତ୍ତମ ରୂପୀ ଇଷ୍ଟ ହିଁ ଜୀବନର ଏକମାତ୍ର ଆରାଧ୍ୟ। (ପୁରୁଷୋତ୍ତମଙ୍କୁ ବାଦ୍ ଦେଇ ସାଧାରଣ

ଅନେକ ଆଚାର୍ଯ୍ୟ ଅଛନ୍ତି, ମାତ୍ର ସେମାନେ ଅନୁସରଣୀୟ ନୁହଁନ୍ତି)। ସେହିଦିନ ଠାରୁ ଅଚ୍ଛେଦ୍ୟ ଭାବରେ ଲେଖକ ଆପ୍ରାଣ ଚେଷ୍ଟା କରି ଚାଲିଛନ୍ତି ତାଙ୍କର ଇଷ୍ଟ ନିର୍ଦ୍ଦେଶିତ ପଥରେ ଚାଲିବା ପାଇଁ। ଶ୍ରୀଶ୍ରୀ ଠାକୁରଙ୍କର ଆହୁରି ନିର୍ଦ୍ଦେଶ ଥିଲା– ନିଜର ଆହାର, ବିହାର, ପରିଧାନ ଇତ୍ୟାଦି ପାଇଁ କାହାରି ପାଖରୁ କିଛି ଅର୍ଥ ସଂପଦ ମାଗିବ ନାହିଁ, ଆପଣା ଛାଏଁ ଯିଏ ଯାହା ଦେବ ତାହା ହିଁ ଇଷ୍ଟଙ୍କର ଦାନ ଏବଂ ତାଙ୍କର ଆଶୀର୍ବାଦ ମନେକରି ଆନନ୍ଦ ସହକାରେ ଗ୍ରହଣ କରିବ, ସେ ବସ୍ତୁ ଯେତେ ଛୋଟ ବା ବଡ଼ ହେଉନା କାହିଁକି। ଏହିପରି ଆକାଶମାର୍ଗୀ ବ୍ରତ ପାଳନ କରିବାର ନିର୍ଦ୍ଦେଶ ଆସିଲା ଶ୍ରୀଗୁରୁ ପରମ ଦୟାଲ ଶ୍ରୀଶ୍ରୀ ଠାକୁରଙ୍କଠାରୁ ଲେଖକଙ୍କ ପ୍ରତି। ବର୍ତ୍ତମାନ ଏହି ପୁସ୍ତକ ପ୍ରକାଶିତ ହେବାଦିନ ପର୍ଯ୍ୟନ୍ତ ଲେଖକ ବିଗତ ଦୁଇ ବର୍ଷ ଶଯ୍ୟାଶୟୀ, ପ୍ରାୟାନ୍ଧ (ଆଖିରେ ଭଲ ଦେଖାଯାଉ ନାହିଁ।) ହୋଇ ରହିଛନ୍ତି। ଇଷ୍ଟକଥିତ ପୂର୍ବୋକ୍ତ ଜୀବନ ସେ ପାଳନ କରି ଚାଲିଛନ୍ତି। ବର୍ତ୍ତମାନ ଶର୍ଯ୍ୟାଶାୟୀ ଓ ପ୍ରାୟାନ୍ଧ ଭିତରେ ଏହିପରି ଜୀବନ ପାଳନ କରିବା କିପରି ସମ୍ଭବ ତାହା ତାଙ୍କୁ ନ ଦେଖିଲେ କଳ୍ପନା କରି ହୁଏ ନାହିଁ। ଆମ୍ଭେ ବିଭିନ୍ନ ଭକ୍ତମାନଙ୍କ ପାଖରେ ଆବେଦନ ଜଣାଉଛୁ ଯେ ତାଙ୍କର ଏହି ଅମୂଲ୍ୟ ଜୀବନ ରକ୍ଷା କରିବା ପାଇଁ ଯାହାର ଯାହା ସାଧ୍ୟ ସହଯୋଗ କଲେ କୃତଜ୍ଞ ରହିବୁ। ଜଣେ ଭକ୍ତ କିଛି ସ୍ଥାନ ଦେଇଛନ୍ତି, ସେଥିରେ ଧୀରେ ଧୀରେ ଶ୍ରୀଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କର ଭାବଧାରା ଉପରେ ଭିତ୍ତି କରି ଆଶ୍ରମ ପରି ଗଢ଼ି ଉଠୁଛି ଏବଂ ସେହି ଆଶ୍ରମରେ ପ୍ରତିଦିନ ଲେଖକଙ୍କ ପାଖରେ ଲୋକ ସମାଗମ ହେଉଛି, ଶ୍ରୀଶ୍ରୀ ଠାକୁର ତଥା ଧର୍ମ ସମ୍ବନ୍ଧରେ ଜାଣିବା ପାଇଁ। ଏହି ଧର୍ମପିପାସୁ ଲୋକମାନେ ଅସୁସ୍ଥ ଲେଖକଙ୍କୁ କୌଣସି ପ୍ରଶ୍ନ କରିବାରେ ବିରତ ରହୁ ନାହାନ୍ତି। କେତେବେଳେ ଶୋଇ ବା କେତେବେଳେ ବସି ପ୍ରତି ପ୍ରତ୍ୟେକଙ୍କର ପ୍ରଶ୍ନର ଜବାବ ସେ ଦେଇ ଚାଲିଛନ୍ତି। ଅନ୍ୟ ଦିଗରେ ଉକ୍ତ ଭକ୍ତମାନଙ୍କୁ ଯଥା–ସମ୍ଭବ ସେବା ଦେଇ ତାଙ୍କର ପ୍ରଥମାସ୍ତ୍ରୀ ବା ସହଧର୍ମିଣୀ, ଆମ୍ଭର ମାତୃଦେବୀ (ଯାହାଙ୍କର ବୟସ ପ୍ରାୟ ଷାଠିଏ ପାଖାପାଖି) ସମସ୍ତଙ୍କର ଆହାର ବିହାର ଓ କ୍ଷୁଦ୍ର ଆଶ୍ରମରେ ରହିବାର ସର୍ବପ୍ରକାର ସୁବ୍ୟବସ୍ଥା କରି ଚାଲିଛନ୍ତି। ଆମ୍ଭେ ଜାଣିନୁ, କେତେଦିନ ଏପରି ଅବସ୍ଥାରେ ଆଶ୍ରମ ଚାଲିବ ବା ଶ୍ରୀଶ୍ରୀ ଠାକୁରଙ୍କର ଅନ୍ତରଙ୍ଗ ଭକ୍ତ ସ୍ୱୟଂ ଲେଖକ ବଞ୍ଚିଥିବେ। ପ୍ରତି ପ୍ରତ୍ୟେକଙ୍କ ନିକଟରେ ଆମ୍ଭର

ଅନୁରୋଧ, ଆପଣମାନେ ଭଗବାନ ଶ୍ରୀଶ୍ରୀ ଠାକୁରଙ୍କ ନିକଟରେ ପ୍ରାର୍ଥନା କରନ୍ତୁ, ଲେଖକ ଯେପରି ଦୀର୍ଘଦିନ ବଞ୍ଚିଥାନ୍ତୁ, ଆଶ୍ରମ ମଧ୍ୟ ଯଥାରୀତି ଚଲୁଥାଉ ଏବଂ ଶ୍ରୀଶ୍ରୀ ଠାକୁରଙ୍କ ଅମୂଲ୍ୟ ଜୀବନଲୀଳା କାହାଣୀ ଆହୁରି ଆହୁରି ପୁସ୍ତକ ଆକାରରେ ଆମ୍ଭ ସାମ୍ନାରେ ବାହାରି ଆସୁ ।

॥ ଇତି ॥

ନିବେଦକ

ଶ୍ରୀଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କର କତିପୟ ଶିଷ୍ୟ ସନ୍ତାନ ବୃନ୍ଦ ।

-୦-

"ଜୟଗୁରୁ"